# ମୋ କଥା

ବାଞ୍ଛାନିଧି ପଟ୍ଟନାୟକ

ପୂଜ୍ୟପୂଜା, ଓଡ଼ିଶା
ପୁରୁଣା ବସ୍‌ଷ୍ଟାଣ୍ଡ ପାଖ, ଭୁବନେଶ୍ୱର-୭୫୧୦୦୯

ମୋ କଥା
(ଆତ୍ମ ଜୀବନୀ)

ଲେଖକ : ବାଞ୍ଛାନିଧି ପଟ୍ଟନାୟକ

ପ୍ରକାଶକ :
ପୂଜ୍ୟପୂଜା, ଓଡ଼ିଶା
ପୁରୁଣା ବସ୍‌ଷ୍ଟାଣ୍ଡ ସାମନା
ଭୁବନେଶ୍ୱର-୭୫୧୦୦୯

ଅକ୍ଷର : ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ : ପଦ୍ମା କମର୍ସିଆଲ୍ ସେଣ୍ଟର, ଭୁବନେଶ୍ୱର

ପ୍ରଚ୍ଛଦ : ବିଜୟ କୁମାର ପ୍ରଧାନ

ପରିବର୍ଦ୍ଧିତ ସଂସ୍କରଣ : ୨୦୦୩

ମୂଲ୍ୟ : ୧୦୦.୦୦

MOO KATHA
(Autobiography)

Author
Banchhanidhi Pattanaik

Published By :
Pujya Puja, Orissa, Near old Bus stand
Bhubaneswar-9

Laser Typeset :
Sarala Graphics, Bhubaneswar

Printed at :
Padma Commercial Centre, Bhubaneswar

Cover Designed By :
Bijaya Kumar Pradhan

Enlarged Edition : 2003

Price : Rs.100.00



ଓଡ଼ିଶାର ଖ୍ୟାତନାମା ଚିତ୍ରଶିଳ୍ପୀ ୰**ମୁରଲୀଧର ଟାଲୀଙ୍କ** ଦ୍ୱାରା ଅଙ୍କିତ
**ବାଞ୍ଛାନିଧି ପଟ୍ଟନାୟକଙ୍କ** ତୈଳଚିତ୍ରର ଫଟୋଚିତ୍ର



ତା ୨୮.୨.୧୯୬୦ରେ କଟକରେ ପ୍ରଫୁଲ୍ଲ ଓ ପ୍ରମୋଦଙ୍କ ବାହାଘର ସମୟରେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଓ ତାଙ୍କ ଧର୍ମପତ୍ନୀ, ଶ୍ରୀ ହରିଶଙ୍କର ବର୍କି, ଶ୍ରୀ ହରିହର ପଟ୍ଟନାୟକ, ପଣ୍ଡିତ ଗୋଦାବରୀଶ ଦାଶ ଓ ଶ୍ରୀ ପର୍ଶୁରାମ ମହାନ୍ତି ଓ ପରିବାରରେ ଅନ୍ୟମାନଙ୍କ ସହ ବାଞ୍ଛାନିଧି ପଟ୍ଟନାୟକ ।

# ଉତ୍ସର୍ଗ

## ଦେବ ଦେବ ଜଗନ୍ନାଥଙ୍କ ପଦ କମଳରେ

''ଯତ୍ କରୋଷି ଯଦଶ୍ନାଶି
ଯତ୍ ଜୁହୋଷି ଦଦାସି ଯତ୍,
ଯତ୍ ତପସ୍ୟସି କୌନ୍ତେୟ,
ତତ୍ କୁରୁଷ୍ୱ ମଦର୍ପଣମ୍'' (ଗୀତା)

କୁନ୍ଦେନ୍ଦୁ-ନୀହାର-ହାର ଅମଳ ଧବଳ,
ବଡ଼ ଠାକୁର ସେ ବଳଦେବ ମହାବଳ ।
କନକ କମଳ ପୀତ ଅନଳ ବରଣା,
ମହାଶକ୍ତି ମହାମାୟା ଭଦ୍ରା ସୁଶୋଭନା ।
କଳାକଞ୍ଜ ଦଳାଞ୍ଜନ ଇନ୍ଦ୍ର ନୀଳମଣି,
ଘନକୃଷ୍ଣ-ନିଭ ନୀଳଗିରି ଚୂଡ଼ାମଣି ।
ଅଖଣ୍ଡ ମଣ୍ଡଳାକାର ଅନାଦି ଅନନ୍ତ,
ସୁ-ଦର୍ଶନ ସୁଦର୍ଶନ ମହାଦୀପ୍ତିବନ୍ତ ।
ମହୋଦଧି ତୀରେ ବଡ଼ ଦାଣ୍ଡର ମଝିରେ,
ବିରାଜିତ ଚତୁର୍ମୂର୍ତ୍ତି ବଡ଼ ଦେଉଳରେ ।
ବଡ଼ ଠାକୁର ମହାମାୟା ସ୍ୱରୂପିଣୀ,
ମହା ପରସାଦ ବଡ଼ ସିଂହାର ଦାୟିନୀ ।
ସବୁ ବଡ଼ ବଡ଼ ଏଥି ନାହିଁ କିଛି ସାନ,
ପରଂବ୍ରହ୍ମ ଦାରୁରୂପେ ଯହିଁ ବିଦ୍ୟମାନ ।
ଡାକୁଛନ୍ତି ସଦା ବଡ଼ ବଡ଼ ବାହୁ ତୋଳି,
ଆଲିଙ୍ଗନ କରିବାକୁ ସାଦରେ ସାଙ୍ଖୋଳି ।
ଦେବ ଦେବ ଜଗନ୍ନାଥ ଦେଇଛ ଜୀବନ,
ଲେଖାଇଛ ଆତ୍ମକଥା ସବୁ ତବ ଦାନ,
ବଡ଼ ପଣେ ନ ଧରିବ ଦୋଷ ଅବଗୁଣ,
ତମରି ପଦାର୍ଥ କରେ ପଦେ ସମର୍ପଣ ।

# ନିଜକଥା

## "ନ ମନ୍ଦୋଽପି ପ୍ରବର୍ତ୍ତତେ"

(ପ୍ରୟୋଜନ ନ ଥାଇ କୌଣସି କାମରେ ବୁଦ୍ଧିହୀନ ଲୋକମଧ ପ୍ରବୃତ୍ତ ହୁଏନାହିଁ ।)

ଆମ୍ଭେମାନେ ପିତୃଶ୍ରାଦ୍ଧ କଲାବେଳେ କୁଳ ପୁରୋହିତଙ୍କ ଠାରୁ ପିତାମହାଦିଙ୍କ ନାମ ପଚାରିବାକୁ ପଡ଼େ । ପୁରୋହିତମାନେ ତିନି ପୁରୁଷଙ୍କ ନାମ ଲେଖି ରଖିଥାନ୍ତି । କାରଣ ତିନିପୁରୁଷକୁ କେବଳ ଶ୍ରାଦ୍ଧ କାଳରେ ପିଣ୍ଡ ଦେବାକୁ ପଡ଼ିଥାଏ । ଅନେକ ସ୍ଥଳରେ ପିତାମହ, ପ୍ରପିତାମହଙ୍କ ନାମ ପୁରୋହିତଙ୍କ ଠାରୁ ଶୁଣିବାକୁ ମିଳେ । ପୁରୋହିତ ଖେଦାରେ (ତାଳପତ୍ର) ଯଦି ଦୈବାତ୍ କାହା ନାମ ନଥାଏ ଜଗନ୍ନାଥ, କୃଷ୍ଣ ପ୍ରଭୃତି ନାମ ଯୋଗାଇ ଦେବାକୁ ପଡ଼ିଥାଏ । ତେଣୁ ଜୀବନୀ ବିଶେଷତଃ ଆତ୍ମ ଜୀବନୀ ଲେଖିବା ଭାରତୀୟ ପରମ୍ପରାର ଅନୁବର୍ତ୍ତୀ । ମୁଁ ଦୈବାତ୍ ହାଇସ୍କୁଲରେ ପଢ଼ିବା ବେଳେ ଦୈନିକ ଡାଏରୀ ଲେଖିବାକୁ ପ୍ରବର୍ତ୍ତିତ ହୋଇଥିଲି । ବିଶେଷ ଉଲ୍ଲେଖନୀୟ ବିଷୟ ତ ନଥାଏ, କେତେବେଳେ ଉଠିଲି, ସ୍କୁଲକୁ ଗଲି, ଖେଳିଲି ଏହିପରି ଲେଖି ଦୈନନ୍ଦିନୀ ପୂର୍ଣ୍ଣ କରାଯାଇଥାଏ । ସେ ଯାହାହେଉ ତଦ୍ୱାରା ଜୀବନର ଗତି ନିୟନ୍ତ୍ରିତ ହୋଇ ଉପକାର ହୋଇଥାଏ । ମଧ୍ୟେ ମଧ୍ୟେ କେତେଗୁଡ଼ିଏ ସଂକଳ୍ପ କରି ଜୀବନ ପରିଚାଳିତ କରିବାକୁ ସୁଯୋଗ ମିଳିଥାଏ । ଦୈନନ୍ଦିନୀ ଲେଖା ୰କୃଷ୍ଣଚନ୍ଦ୍ର ସେନଙ୍କ 'ବ୍ରହ୍ମଚର୍ଯ୍ୟ' ପୁସ୍ତକରୁ ହାଇସ୍କୁଲରେ ଷଷ୍ଠଶ୍ରେଣୀରେ ପଢ଼ିବାଠାରୁ ୧୯୧୫ରୁ ଆରମ୍ଭ ହୋଇ ଅଭ୍ୟାସରେ ପଡ଼ିଯାଇଥିଲା । ପରବର୍ତ୍ତୀ କାଳରେ ସ୍ୱାମୀ ଶିବାନନ୍ଦଙ୍କ ଆଧାତ୍ମିକ ଦୈନନ୍ଦିନୀ ଲେଖି ପ୍ରତି ୧୫ ଦିନରେ ତାର ନକଲ ତାଙ୍କଠାକୁ ପଠାଇବା ଏବଂ ତା ଉପରେ ତାଙ୍କର ମନ୍ତବ୍ୟ ପଢ଼ି ସଂଶୋଧିତ ହେବାର ସୁଯୋଗ ମିଳିଥିଲା ।

ଯେତେବେଳେ ପାଠ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାକୁ ପଡ଼ିଲା, ଏବଂ ଆଧାତ୍ମିକ ଜୀବନ ଅତିବାହିତ କରାଗଲା, ଡାଏରୀ ଲେଖିବାକୁ ଉତ୍ତରୋତ୍ତର ଅଧିକ ପ୍ରବୃତ୍ତି ଜାତ ହୋଇଥିଲା ।

ଏ ଡାଏରୀ ଲେଖା ମୋର 'ମୋ କଥା' ଲେଖିବାରେ ସହାୟକ ହୋଇଅଛି ।

ଡାଏରୀ ଲେଖାଦ୍ୱାରା ଥରକୁ ଥର କେତେ ସଂକଳ୍ପ କରିବାକୁ ପଡ଼େ ଏବଂ ସେ ସବୁ ନିୟମିତ ପାଳନ କରିବାପାଇଁ ପ୍ରବୃତ୍ତି ଜାତ ହୋଇଥାଏ । ମହାତ୍ମାଗାନ୍ଧୀ କହନ୍ତି, ସଂକଳ୍ପ ବିହୀନ ଜୀବନ ଦୃଢ଼ଭିତ୍ତି ହୀନ ଗୃହର କାନ୍ଥ କିମ୍ବା ଲଙ୍ଗର ବିହୀନ ପୋତ ସଦୃଶ ଅଟେ । ମୁଁ ପିଲାଦିନୁ କେତେଗୁଡ଼ିଏ ସଂକଳ୍ପ କରି ତଦନୁଯାୟୀ ଚଳିଥାଏ, ଯଥା ପ୍ରତିଦିନ ଯଥା ସମୟରେ ଶଯ୍ୟାତ୍ୟାଗ, ଶୌଚ କର୍ମାଦି ସମାପନ କରି ବିଦ୍ୟାଭ୍ୟାସ, ପରବର୍ତ୍ତୀ କାଳରେ ନିୟତ କର୍ମ ସାଧନ, ଯଥା ସମୟରେ ଭୋଜନ, କିପରି ଭାବରେ କଣ ଭୋଜନ କରିବାକୁ ହେବ ଇତ୍ୟାଦି ପ୍ରତି ତୀବ୍ର ଦୃଷ୍ଟି ରଖି ଚଳି ଆସିଥିବା ହେତୁ ଏ ଅତି ବୃଦ୍ଧ ଓ ବାରମ୍ବାର ରୋଗାକ୍ରାନ୍ତ ଅବସ୍ଥାରେ ମଧ ଜୀବନର ଗତି ଚାଳନ କରିପାରୁଛି ।

ଏବେ କ୍ରିକେଟ ଖେଳ ଦେଖିବା, ସିନେମା ଦେଖିବା ଯୁଗରେ କିଏ କାହିଁକି ଇମିତି ସଂକଳ୍ପବଦ୍ଧ ଜୀବନ ଅବଲମ୍ବନ କରିବ !

ତଥାପି କାହାର ଏହି ଜୀବନୀ ପଢ଼ି କିଛି ପ୍ରେରଣା ଜାତ ହୋଇପାରେ ଏହି ଆଶାରେ ଲେଖି ପକାଇଛି ।

ମୋର ଭାଇ ୰ପୁରୁଷୋତ୍ତମ ତାର ପରିଣତ ବୟସରେ ରୁଗ୍ଣ ଅବସ୍ଥାରେ ଏହି ଆତ୍ମ ଜୀବନୀର ପାଣ୍ଡୁଲିପିକୁ ତାର ସୁନ୍ଦର ଅକ୍ଷରରେ ଉତାରି ଦେଇଥିଲା । ବହି ପ୍ରକାଶ ପାଇବା ପୂର୍ବରୁ ସେ ଦେହତ୍ୟାଗ କରି ଚାଲିଗଲା । ତାର ଦିବଂଗତ ଆତ୍ମା ଉଦ୍ଦେଶ୍ୟରେ ମୋର କୃତଜ୍ଞତା ଓ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଶ୍ରୀକ୍ଷେତ୍ର, ଫେବୃୟାରୀ, ୧୯୮୮ ବାଞ୍ଛାନିଧି ପଟ୍ଟନାୟକ

# କୃତଜ୍ଞତା ଜ୍ଞାପନ

ଲେଖକଙ୍କ ରଚିତ 'ସନ୍ଧ୍ୟା' ଓ 'ମୋ କଥା' ବହୁଦିନ ଧରି ଲେଖା ହୋଇ ପଡ଼ିଥିଲା । ସେ ନିଜେ ଯତ୍ନନେଇ ଏହା ମୁଦ୍ରଣ କରିବାକୁ ଇଚ୍ଛା କରୁନଥିଲେ । ଗତବର୍ଷ ତାଙ୍କର ଅସୁସ୍ଥତା ସମୟରେ ମୋର ପୁତ୍ରମାନେ ଅନୁଗୁଳ ଆସିଥିବା ବେଳେ ଦୁଇଟିଯାକ ବହିର ପାଣ୍ଡୁଲିପି ନେଇ ଛପାଇବା ପାଇଁ ବ୍ୟବସ୍ଥା କଲେ । ପ୍ରଥମେ 'ସନ୍ଧ୍ୟା' ବହି ପ୍ରକାଶିତ ହେଲା ।

'ମୋ କଥା'ର ପାଣ୍ଡୁଲିପିକୁ ମୋର ଦେବର ୰ ପୁରୁଷୋତ୍ତମ ବହୁ ଶ୍ରମ ସ୍ୱୀକାର କରି ତାଙ୍କ ସୁନ୍ଦର ଅକ୍ଷରରେ ଉତାରି ଦେଇଥିଲେ । କିନ୍ତୁ ବହି ପ୍ରକାଶ ପାଇବା ପର୍ଯ୍ୟନ୍ତ ସେ ରହିଲେ ନାହିଁ । ସେ ଗତ ଜାନୁୟାରୀ ୧୯୮୮ରେ ବ୍ରହ୍ମପୁରଠାରେ ଇହଧାମ ତ୍ୟାଗ କଲେ । ତାଙ୍କର ଦିବଂଗତ ଆତ୍ମାର ସଦ୍‌ଗତି ପ୍ରାର୍ଥନା କରି ମୁଁ ଗଭୀର କୃତଜ୍ଞତା ଜଣାଉଛି ।

ପୁରୀର ରୟାଲ ପ୍ରିଣ୍ଟିଙ୍ଗସ୍ ଛାପାଖାନାର ତତ୍ତ୍ୱାବଧାରକ ଶ୍ରୀ ବିବୁଧରଞ୍ଜନ ମହାପାତ୍ର ଓ ଅନ୍ୟାନ୍ୟ କର୍ମଚାରୀମାନେ ଅକ୍ଳାନ୍ତ ପରିଶ୍ରମ କରି ନିଷ୍ଠାର ସହିତ ଏହି ଆତ୍ମ ଜୀବନୀର ଛାପା କାର୍ଯ୍ୟ ସଂପନ୍ନ କରିଥିବାରୁ ମୁଁ ସେଥିପାଇଁ ସେମାନଙ୍କ ନିକଟରେ କୃତଜ୍ଞ ।

ମୋର ଜ୍ୟେଷ୍ଠପୁତ୍ର ଶ୍ରୀମାନ ପ୍ରଫୁଲ୍ଲ (ବର୍ତ୍ତମାନ ଦୈନିକ 'ସମ୍ବାଦ'ର ସହଯୋଗୀ ସଂପାଦକ) ପ୍ରଚ୍ଛଦପଟ ଛପାଇବାର ଦାୟିତ୍ୱ ନେଇଥିଲେ । ତାଙ୍କ ଅନୁରୋଧରେ କଳାକାର ଶ୍ରୀ ରଂଜିତ ପରିଜା ଏକ ସୁନ୍ଦର ପ୍ରଚ୍ଛଦପଟ ଚିତ୍ର ଆଙ୍କି ଦେଇଥିବାରୁ ମୁଁ ଶ୍ରୀ ପରିଜାଙ୍କୁ କୃତଜ୍ଞତା ଜ୍ଞାପନ କରୁଛି ।

ଜ୍ୟେଷ୍ଠପୁତ୍ର ଶ୍ରୀମାନ୍ ପ୍ରଫୁଲ୍ଲ ଓ ଅନ୍ୟ ସମସ୍ତ ପୁତ୍ର କନ୍ୟାମାନେ ଏହି ବହି ପ୍ରକାଶନ ପାଇଁ ସାହାଯ୍ୟ କରିଥିବାରୁ ମୁଁ ସମସ୍ତଙ୍କୁ ମୋର ଆଶୀର୍ବାଦ ପ୍ରଦାନ କରୁଛି ।

ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ କରୁଣାରୁ ଏହି ପୁସ୍ତକ ପ୍ରକାଶନ କାର୍ଯ୍ୟସମ୍ପନ୍ନ ହୋଇଥିବାରୁ ତାଙ୍କରିଠାରେ ଗଭୀର ଭକ୍ତି ଓ ପ୍ରଣତି ନିବେଦନ କରୁଅଛି ।

ଅନୁଗୁଳ — ଶ୍ରୀମତୀ କୁନ୍ଦଲତା

ଫେବୃୟାରୀ, ୧୯୮୮ — ପ୍ରକାଶିକା

# ଦ୍ୱିତୀୟ ସଂସ୍କରଣର ଭୂମିକା

'ମୋ କଥା'ର ପ୍ରଥମ ସଂସ୍କରଣ ୧୯୮୮ ଫେବୃୟାରୀ ମାସରେ ପ୍ରକାଶ ପାଇଥିଲା । ସେତେବେଳେ 'ମୋ କଥା'ର ଲେଖକ, ଆମ୍ଭମାନଙ୍କ ପୂଜ୍ୟପିତା ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ ଜୀବିତ ଥିଲେ । ଆମ୍ଭମାନଙ୍କ ପୂଜ୍ୟାମାତା ଶ୍ରୀମତୀ କୁନ୍ଦଲତା ଦେବୀ 'ମୋକଥା' ପ୍ରକାଶନର ଦାୟିତ୍ୱ ନେଇଥିଲେ । କିନ୍ତୁ ଆମ୍ଭମାନଙ୍କ ଦୁର୍ଭାଗ୍ୟ ଯେ ସେହି ବର୍ଷ (୧୯୮୮) ଅଗଷ୍ଟ ମାସରେ ପୂଜ୍ୟପିତାଙ୍କ ତିରୋଧାନ ଘଟିଲା ଏବଂ ତାହାର ଦୁଇବର୍ଷ ପରେ ୧୯୯୦ ନଭେମ୍ବର ମାସରେ ପୂଜ୍ୟାମାତା ସ୍ୱର୍ଗାରୋହଣ କଲେ ।

ଏହାପରେ ୧୨ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ପିତାଙ୍କ ଜନ୍ମଶତବାର୍ଷିକୀ ଗତ ୨୦୦୧ ମସିହା ଅକ୍ଟୋବର ୧୯ ତାରିଖ ଦିନ ଭୁବନେଶ୍ୱରରେ ସୂଚନାଭବନ ଠାରେ ଏକ ରାଜ୍ୟସ୍ତରୀୟ ଉତ୍ସବ ଭାବରେ ପାଳିତ ହୋଇଛି । ସେହି ଅବସରରେ, ତାହା ପୂର୍ବରୁ ଓ ପରେ ମଧ ଅନେକ ସହୃଦୟ ବ୍ୟକ୍ତି 'ମୋ କଥା' ପଢ଼ିବା ପାଇଁ ଲୋଡ଼ିଥିଲେ । କିନ୍ତୁ ୧୯୮୮ ରେ ପ୍ରକାଶିତ ପ୍ରଥମ ସଂସ୍କରଣ ସେତେବେଳକୁ ସରିଯାଇଥିଲା ।

'ମୋ କଥା'ର ପ୍ରଥମ ସଂସ୍କରଣ ଛପାହେଲା ବେଳେ ଲେଖକଙ୍କ କିଛି ପୂର୍ବ ଲିଖିତ ପାଣ୍ଡୁଲିପି ହଜିଯାଇଥିଲା । ତାହା ପରେ ମିଳିଲା । ତାଙ୍କର ସେହି ଅପ୍ରକାଶିତ ଲେଖାକୁ ଯୋଗ କରି ବର୍ତ୍ତମାନ ଦ୍ୱିତୀୟ ସଂସ୍କରଣ ପ୍ରସ୍ତୁତ କରାଯାଇଛି । ଏଥର ପରିଶିଷ୍ଟରେ ତାଙ୍କ ଜୀବନରେ ମୁଖ୍ୟ ଘଟଣାବଳିର ତାଲିକା ସହିତ ବହିଭିତରେ କେତୋଟି ଅଧିକ ଫଟୋ ସଂଯୋଜନ କରାଯାଇଛି । ସ୍ୱାଧୀନତା ସଂଗ୍ରାମୀ ଗୋଦାବରୀଶ ଦାଶ ଓ ବାସୁଦେବ ତ୍ରିପାଠୀଙ୍କ ଫଟୋ ସେମାନଙ୍କ ସୁପୁତ୍ର ଯଥାକ୍ରମେ ଶ୍ରୀ ଅଭେଦାନନ୍ଦ ଦାଶ ଓ ଶ୍ରୀ ନରସିଂହ ତ୍ରିପାଠୀ ଉଦ୍ଧାର କରି ପ୍ରକାଶ ପାଇଁ ଦେଇଥିବାରୁ ଆମ୍ଭେମାନେ ସେମାନଙ୍କ ନିକଟରେ କୃତଜ୍ଞ । ଭୁବନେଶ୍ୱର 'ଓଁକାର ଆଡ୍‌ଭର୍ଟାଇଜିଙ୍ଗ ସଂସ୍ଥା'ର ଶ୍ରୀ ସୁଜାତ ପଟ୍ଟନାୟକ ଏହି ସଂସ୍କରଣରେ ସନ୍ନିବେଶିତ

ସମସ୍ତ ଫଟୋଗୁଡ଼ିକୁ ପ୍ରକାଶଯୋଗ୍ୟ କରିବା ଦାୟିତ୍ୱ ନେଇଥିବାରୁ ଆମ୍ଭେ ତାଙ୍କ ନିକଟରେ କୃତଜ୍ଞ ।

ବିଶିଷ୍ଟ ଗବେଷକ ଓ ସଂସ୍କୃତ ପଣ୍ଡିତ ଶ୍ରୀ ଦୁଃଖୀଶ୍ୟାମ ପଟ୍ଟନାୟକ 'ମୋ କଥା'ରେ ସନ୍ନିବେଶିତ ଥିବା ସଂସ୍କୃତ ଉକ୍ତିଗୁଡ଼ିକୁ ସଂଶୋଧନ କରିଥିବାରୁ ଆମ୍ଭେ ତାଙ୍କୁ କୃତଜ୍ଞତା ଜଣାଉଛୁ ।

ଭୁବନେଶ୍ୱର 'ଶାରଳା ଗ୍ରାଫିକ୍ସ'ର ଶ୍ରୀ ପ୍ରଭୁଦତ୍ତ ମହାନ୍ତି ବହୁ ପରିଶ୍ରମ କରି ଏହି ବହିର ଡି.ଟି.ପି ନକଲ ପ୍ରସ୍ତୁତ କରିଛନ୍ତି । ସେମାନଙ୍କୁ ଆମ୍ଭେ କୃତଜ୍ଞତା ଜଣାଉଛୁ ।

ଦ୍ୱିତୀୟ ସଂସ୍କରଣର ପ୍ରକାଶ ଭାର ଭୁବନେଶ୍ୱରର 'ପୂଜ୍ୟପୂଜା, ଓଡ଼ିଶା' ସଂସ୍ଥା ନେଇଥିବାରୁ ଆମ୍ଭେ ଉକ୍ତ ସଂସ୍ଥାର ଶ୍ରୀ ରମାକାନ୍ତ ମିଶ୍ରଙ୍କ ନିକଟରେ କୃତଜ୍ଞ ।

ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ

କଟକ — ସଭାପତି

ତା ୫.୩.୨୦୦୩ — ବାଞ୍ଛାନିଧି ସ୍ମୃତି ପ୍ରତିଷ୍ଠାନ

# ମୋ କଥା

''ଅତୀତକୁ ଉଦ୍‌ବୋଧଇ ବୃଥା ଭାଳି ଭାଳି''

-ଭକ୍ତକବି ମଧୁସୂଦନ

## ପୂର୍ବାଭାସ

ଦଦା କହନ୍ତି ଆମ ପୂର୍ବ ପୁରୁଷ କୁଆଡ଼େ ବଡ଼-ଖେମଣ୍ଡିରୁ ଘୁମୁସର ଚାଲିଆସିଥିଲେ । ଆମ ଘରେ ଗୋଟିଏ ଶୁଆ ଥାଏ । ଗୀତଗୋବିନ୍ଦ ଓ ସଂସ୍କୃତ ଶ୍ଳୋକ ଭଲ ପଢ଼େ । ଖଚୁଆ ଓ କାନକୁହାଙ୍କ କଥାରେ ରାଜା ଶୁଆଟି ପ୍ରତି ଲୋଭ କଲେ । ପଟ୍ଟନାୟକଙ୍କୁ ଡକାଇ ଶୁଆଟିକୁ ନଅରକୁ ପଠାଇ ଦେବାକୁ କହିଲେ । ପଟ୍ଟନାୟକେ ଘରକୁ ଫେରି ଭାଇମାନଙ୍କୁ ଡାକି କହିଲେ, ''ଏ ରାଇଜରେ ରହିବା ଉଚିତ୍ ନୁହେଁ । ଆମର ସାମାନ୍ୟ ଶୁଆଟି ପ୍ରତି ରାଜାଙ୍କ ଦୃଷ୍ଟି ପଡ଼ିଲାଣି; ଚାଲ ଏ ରାଜ୍ୟ ଛାଡ଼ି ଚାଲିଯିବା ।'' ଭାଇମାନେ ସମ୍ମତ ହେଲେ । ରାତାରାତି ରାଜ୍ୟ ଛାଡ଼ି ଘୁମୁସରର ଗୋବରା ଗାଁରେ ଆଶ୍ରୟ ନେଲେ । ସେଠା ରାଜାଙ୍କ ଅନୁଗ୍ରହରୁ କେତେଖଣ୍ଡ ଗ୍ରାମର କରଣ କାମ ପାଇଲେ ।

## ଜନ୍ମସ୍ଥଳ

ଗୋବରା ଗ୍ରାମର ଉତ୍ତରକୁ ଅନତି ଦୂରରେ ଘୁମୁସର ରାଜାମାନଙ୍କ ପାଟଣା ବସତି । କାଳକ୍ରମେ ଘୁମୁସର ଗଡ଼ରୁ ରାଜବଂଶ କୁଲାଡ଼ ଗଡ଼କୁ ଚାଲିଗଲେ । କ୍ରମଶଃ ପାଟଣା ବସତି ଭାଙ୍ଗିଗଲା । ସେଠାର ଅଧିବାସୀମାନେ ଗୋବରା, ଡେଙ୍ଗାପଦର, ବିରିପୁର ପ୍ରଭୃତି ଆଖପାଖ ଗ୍ରାମମାନଙ୍କରେ ବାସ କଲେ । ପରେ ସେହି ପାଟଣା ଚାଷ ଜମିରେ ପରିଣତ ହୋଇ ପାଟଣା ଚକଡ଼ା ନାମରେ ପରିଚିତ ହେଲା ।

ସେତେବେଳକୁ ଘୁମୁସର ରାଜ୍ୟ ବଡ଼ ପ୍ରଭାବଶାଳୀ ଥିଲା । ପାଇକ ବୀରମାନେ ଓ କନ୍ଧମାଳର କନ୍ଧମାନେ ବ୍ରିଟିଶ୍ ସରକାର ବିରୁଦ୍ଧରେ ଯୁଦ୍ଧକରି ବିଶେଷ ପରାକ୍ରମ ଦେଖାଇ ଥିଲେ । ବ୍ରିଟିଶ୍ ସୈନ୍ୟମାନେ ବାରମ୍ବାର ପରାସ୍ତ ହୋଇ ପଛଘୁଞ୍ଚା ଦେଇଥିଲେ । ସେନାପତି ଦୋରା ଓ ଚକ୍ରବିଷୋୟୀଙ୍କ ପରାକ୍ରମ ଇତିହାସ ପ୍ରସିଦ୍ଧ ।

ଏହି ପାଇକ ଓ କନ୍ଧବୀରମାନେ ଭାରତର ପ୍ରଥମ ସ୍ୱାଧୀନତା ସମର ସମୟରେ ଖୋର୍ଦ୍ଧାର ଉତ୍କଳୀୟ ମହାରାଜାଙ୍କ ସୈନ୍ୟମାନଙ୍କୁ ସାହାଯ୍ୟ କରିବାକୁ ଯାଇ ଅତୁଳ ବୀରତ୍ୱ ପ୍ରଦର୍ଶନ କରିଥିଲେ । ଏହି ପାଇକ ବଂଶର କେତେକ ପରିବାର ଗୋବରାରେ ଅବସ୍ଥାନ କରୁଥିଲେ । ସେମାନଙ୍କର ବଂଶଧରମାନେ ଏବେ ମଧ୍ୟ ଅତି ସାମାନ୍ୟ କଥାରେ ଦୁର୍ଦ୍ଧର୍ଷ ପଣିଆ ଦେଖାଇ ଥାଆନ୍ତି । ସେମାନଙ୍କ ଘରେ ନଳୀ, ଖଣ୍ଡା, ବର୍ଚ୍ଛା, ଧନୁ ଇତ୍ୟାଦି ଯୁଦ୍ଧ ସରଞ୍ଜାମ ଥିଲା । ଦଶହରା ବେଳେ ସେ ସବୁ ପୂଜା ହୁଏ ମାତ୍ର । ପିଲାଦିନେ ସେହି ବଂଶର କାଳିଦାସ ବୁଢ଼ାକୁ ଦେଖିଛି । ବଡ଼ ଟାଣୁଆ ଲୋକ । ଆମ ହାତ ଧରି ପକାଇଲେ ସତେ ଯେପରି ଲୁହା ଶଣ୍ଢୁଆସିରେ ଚିପିଦେଲା ପରି ଲାଗେ । ବୁଢ଼ା ବାଟୁଳୀ ବିଦ୍ୟାରେ ବଡ଼ ପାରଙ୍ଗମ । ପ୍ରତିଦିନ ଧନୁ ବାଟୁଳୀଖଡ଼ା ଧରି ତୋଟାରେ ଏବଂ ତାଙ୍କର ବିଲମାନଙ୍କରେ ହନୁମାଙ୍କଡ଼ ଘଉଡ଼ିବାକୁ ଯାଆନ୍ତି । ମୁହଁରେ ସବୁବେଳେ ହସ । ପିଲାମାନଙ୍କୁ ଦେଖିଲେ ହାସ୍ୟ କଉତୁକ କରନ୍ତି । ଗାଁ ଯାକର ପିଲାଙ୍କୁ ନାନା କଉତୁକିଆ ନାମରେ ଡାକନ୍ତି । ମୋ ନାଁ ଦେଇଥାନ୍ତି 'ପେଁ ପେଁ' ।

ଘୁମୁସର ଗୋଟିଏ ବଡ଼ ରାଜ୍ୟ । ଚତୁର୍ଦ୍ଦିଗରେ ବ୍ୟାଘ୍ର, ଭଲ୍ଲୁକ, ବିଷଧର ସର୍ପାଦି ସଂକୁଳ ଶ୍ୟାମଳ ଘନ ଅରଣ୍ୟାନୀ ମଣ୍ଡିତ ପର୍ବତମାଳା । ଯେ କୌଣସି ସ୍ଥାନରେ ଠିଆ ହୋଇ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲେ ମଣ୍ଡଳାକାରରେ ପର୍ବତମାଳା ଥିବା ଦେଖାଯାଏ । ପଶ୍ଚିମ ଦିଗରେ କ୍ରୋଶ କ୍ରୋଶ ବ୍ୟାପି କାଳୀଅମ୍ବା ପର୍ବତମାଳା, ମଧ୍ୟ ଦେଶରେ ଇତିହାସ ପ୍ରସିଦ୍ଧ ଏବଂ ନାନାଧର୍ମ ସଂକେତ ପରିପୂରିତ କୁମାରସୁଣୀ (କୁମାରସ୍ୱାମିନୀ) ଏବଂ ବୌଦ୍ଧକୀର୍ତ୍ତି ବୁଦ୍ଧଖୋଲ, କଳାଧାର ଓ ମାଳତୀ ପର୍ବତ ପ୍ରଭୃତି ପ୍ରାକୃତିକ ଶୋଭାବର୍ଦ୍ଧନ କରିଛନ୍ତି । ମାଳତୀ ପର୍ବତର ଏକ ସରୋବରରେ ଶତଦଳ ପଦ୍ମ ଫୁଟୁଥିବା ଓ ବର୍ଷା କାଳରେ ବହୁତ ମାଳତୀ ଫୁଲ ଫୁଟୁଥିବାରୁ ଅତ୍ୟନ୍ତ ସୁନ୍ଦର ଦେଖାଯାଏ । ବୁଦ୍ଧଖୋଲ ଅଶୋକ ପୁଷ୍ପ ଓ ଜଳପ୍ରପାତ ହେତୁ ପ୍ରସିଦ୍ଧ । ବୁଦ୍ଧଖୋଲ ଏବଂ କୁମାରଶୁଣୀଶିଖରରେ ସୂର୍ଯ୍ୟୋଦୟ ଏବଂ କାଳୀଅମ୍ବା ପୃଷ୍ଠ ଦେଶରେ ସୂର୍ଯ୍ୟାସ୍ତ ସମୟର କୋମଳ ରକ୍ତାଭ କିରଣମାଳା ସୁଶ୍ୟାମଳା ନିଘଞ୍ଚ ବୃକ୍ଷମାନଙ୍କ ଉପରେ ପଡ଼ି ପ୍ରକୃତି ରାଣୀକୁ ରକ୍ତ ପଟବସ୍ତ୍ର ପରିଧାନ କରାଇଥାଏ । ଘୁମୁସରର ବକ୍ଷ ଦେଶରେ ବଡ଼ ନଦୀ, ବୁଢ଼ା ନଦୀ ଓ ଲୋହରାଖଣ୍ଡୀ ନଦୀମାନ ଦୂରରୁ ପ୍ରବାହିତ ହୋଇଆସି ମଧ୍ୟସ୍ଥଳରେ ମାଧବରିଡ଼ାଠାରେ ମିଳିତ ହୋଇ ସେଠାରୁ ବଡ଼ନଦୀ ନାମରେ ଦକ୍ଷିଣ ଦିଗକୁ ପ୍ରବାହିତ ହୋଇ କୂଳବର୍ତ୍ତୀ ଶସ୍ୟକ୍ଷେତ୍ରମାନଙ୍କୁ ଜଳସେଚିତ ଓ ଉର୍ବର କରୁଥିବା ଯୋଗୁଁ ଘୁମୁସରରେ ଧାନ, ମୁଗ, ବିରି ପ୍ରଭୃତି ଶସ୍ୟ ପ୍ରଚୁର ପରିମାଣରେ ଉତ୍ପନ୍ନ ହୋଇଥାଏ । ବ୍ରିଟିଶ୍ ଐତିହାସିକମାନେ ଏହି ଘୁମୁସରକୁ ଗଞ୍ଜାମ ଜିଲ୍ଲାର ଶସ୍ୟ ଭଣ୍ଡାର ନାମରେ ଅଭିହିତ କରିଥିଲେ । ପୂର୍ବ ଦିଗରେ ବୁଦ୍ଧଖୋଲ ପର୍ବତ ପାଦଦେଶରେ ବାଘୁଆ ନାମକ ଏକ ଖରସ୍ରୋତା ନଦୀ ପ୍ରବାହିତ ।

|| ୩ ||

ଘୁମୁସରର ଉତ୍ତର ଦିଗରେ ବ୍ରିଟିଶ୍ ଅମଳରେ ନିର୍ମିତ ଏକ ବିଶାଳ ବନ୍ଧରେ ଗଚ୍ଛିତ ଜଳ ଲୋହରାଖଣ୍ଡୀ ନଦୀରେ ପକାଇ ମାଧବରିଡ଼ା ଯାଏ ଅଣାଯାଏ ଏବଂ ସେଥିରୁ କେନାଲ ସାହାଯ୍ୟରେ ବ୍ରହ୍ମପୁର, ଛତ୍ରପୁର, ଇଚ୍ଛାପୁର ଯାଏ ଜଳସେଚନ କରାଯାଏ । ଉପର୍ଯୁକ୍ତ ତିନି ନଦୀର ସଙ୍ଗମସ୍ଥଳ ମାଧବରିଡ଼ାଠାରେ ଏକ ବାରୁଣୀସ୍ନାନ ଯୋଗ ଅନୁଷ୍ଠିତ ହୁଏ । ତିନି ନଦୀର ମିଶ୍ରଣରେ ଯେଉଁ ବଡ଼ନଦୀ ପ୍ରବାହିତ ହୁଏ ତାହା ଆସିକାର ପୂର୍ବଦିଗରେ ଅନତି ଦୂରରେ ପୁରାଣ ପ୍ରସିଦ୍ଧ ଋଷିକୁଲ୍ୟା ନଦୀରେ ମିଳିତ ହୁଏ । ଏହି ସଙ୍ଗମ ସ୍ଥଳରେ ମଧ ପ୍ରତିବର୍ଷ ଏକ ବାରୁଣୀସ୍ନାନ ଯୋଗ ଅନୁଷ୍ଠିତ ହୋଇଥାଏ ।

ପ୍ରାକୃତିକ ସୌନ୍ଦର୍ଯ୍ୟ ମଣ୍ଡିତ ଘୁମୁସରର ସମୃଦ୍ଧି ଶାଳୀ ରାଜବଂଶରେ କବି ଧନଞ୍ଜୟ ଭଞ୍ଜ, ରଘୁନାଥ ଭଞ୍ଜ ଓ ମହାକବି ଉପେନ୍ଦ୍ର ଭଞ୍ଜ ଜନ୍ମଲାଭ କରି ଉତ୍କଳ ଭାରତୀଙ୍କ ବକ୍ଷ ଅଳଂକୃତ କରିଥିଲେ । ଭକ୍ତ କବି ସୂର୍ଯ୍ୟମଣି ଚ୍ୟାଉ ପଟନାୟକ ସରଳ ସୁନ୍ଦର ସାହିତ୍ୟିକ ଛଟାପୂର୍ଣ୍ଣ କବିତାବଳୀରେ ଅଧ୍ୟାତ୍ମ ରାମାୟଣ ରଚନା କରି ଯାଇଛନ୍ତି । ସଙ୍ଗୀତ ରସିକ କବିଚନ୍ଦ୍ର ଆନନ୍ଦଚନ୍ଦ୍ର, ପଣ୍ଡିତ ବାସୁଦେବ ମହାପାତ୍ର, ହରିହର ଦାଶ, ଚନ୍ଦ୍ରଶେଖର ବ୍ରହ୍ମା, ବ୍ରଜବନ୍ଧୁ ତ୍ରିପାଠୀ, ରଘୁନାଥ ଶାସ୍ତ୍ରୀ ପ୍ରଭୃତି ବହୁ ବିଶିଷ୍ଟ ପଣ୍ଡିତ ଜ୍ୟୋତିର୍ବିଦ ତଥା କାଷ୍ଠ ଓ ପ୍ରସ୍ତର ଶିଳ୍ପୀଙ୍କ ଦ୍ୱାରା ଏ ରାଜ୍ୟ ଗୌରାବାନ୍ୱିତ ହୋଇଥିଲା ।

ଏହି ଘୁମୁସରର ମଧ ଭାଗରେ ପୁରୁଣା ଘୁମୁସରଗଡ଼ର ଅତି ନିକଟରେ ଗୋବରା ଗ୍ରାମ ଅବସ୍ଥିତ । କବି ଶେଖର ଚିନ୍ତାମଣି ମହାନ୍ତି ତାଙ୍କର ବିଖ୍ୟାତକୃତି 'ଘୁମୁସର' କାବ୍ୟରେ ଲେଖିଛନ୍ତି-

''ପଥପ୍ରାନ୍ତେ ରାଜେ ଗୋବରା ବସତି,
ସାହିତ୍ୟ ସେବାରେ ଆଗ୍ରହିତା ଅତି ।।
କାଳୀ ଆମ୍ବା ଗିରିମାଳା ଗରଭ ନିସୃତା,
କାଳୀଅମ୍ବା ତଟିନୀ ତଟେ ବିରାଜିତା ।।
ରସାଳ ନାରିକେଳ ପାଦପ ଶୋଭିତା,
ଉର୍ବର ଶ୍ୟାମଳ ଧାନ୍ୟ କେଦାରବେଷ୍ଟିତା ।
ସ୍ୱର୍ଣ୍ଣ, ବସ୍ତ୍ର-ତୈଳକାର, କୁମ୍ଭକାର ତଥା,
ବର୍ଦ୍ଧକୀ, ନାପିତ, ରଜକାଦି ସୁସେବିତା ।।
ନାନାଦି ପଣ୍ୟ ବାଣିଜ୍ୟ କର୍ମକୁଶଳତା,
ଗୁଣେ ପାରଗ କଳିଙ୍ଗ ବୈଶ୍ୟ ବିମଣ୍ଡିତା ।।
ନାଟ, ନାଟକାଦି ବାଦ୍ୟ ଗୀତ ମୁଖରିତା,
ଦେବାଳୟେ ଘଣ୍ଟା ସ୍ୱନେ ସଦା ନିନାଦିତା ।।

ସ୍ୱାଧୀନତା ଲାଭପଥେ ସର୍ବାଗ୍ରେ ଧାବିତା,
ମହାତ୍ମାଗାନ୍ଧୀ ପାବନ ପଦରଜ ପୂତା ॥
ଜ୍ୟୋତିର୍ବିଦ ପୁରୋହିତ ବୈଦ୍ୟ ସମନ୍ୱିତା,
ବାସୁଦେବପୁର ଦ୍ୱିଜପୁରୀ ସନ୍ନିହିତା ॥
ଗୋବରା ଗୋଣ୍ଡ୍ରେଷା ନାମେ ସଦା ସୁବିଦିତା,
ଉତ୍କଳ ମଣ୍ଡଳେ ଅଟେ ଚିରସୁବିଖ୍ୟାତା ॥

## ମୋର ଜନ୍ମ

ଏହି ଗୋବରା ଗ୍ରାମରେ ୧୯-୧୦-୧୯୦୧ ସନ ୧୮୨୩ ତୁଳା ୪ଦିନ ଆଶ୍ୱିନ ଶୁକ୍ଳସପ୍ତମୀ ଶନିବାର ସନ୍ଧ୍ୟାରେ ମୋର ଜନ୍ମ । ମୁଁ ମୋର ପିତାମହ ବଳରାମ ପଟ୍ଟନାୟକଙ୍କୁ ଦେଖିନାହିଁ । ଲୋକେ କହନ୍ତି, ସେ ଦୀର୍ଘକାୟ, ପୃଥୁଳ ଶରୀର, ଗୌରବର୍ଣ୍ଣ ଏବଂ ସୁନ୍ଦର ସୁଗଠିତ ପୁରୁଷ ଥିଲେ । ସେ ଚକଡ଼ାରେ ତାଙ୍କ ପ୍ରତି ଲୋକଙ୍କର ବଡ଼ ସମ୍ମାନ ଓ ଭୟ । କିଏ କେଉଁଠାରେ କୁକର୍ମ କରୁଥିଲେ, କରଣ ବୁଢ଼ା ଆସୁଥିବା ଶୁଣିବା ମାତ୍ରେ ସେଥିରୁ ବିରତ ହେଉଥିଲେ । ଆମ ଚାଟଶାଳୀ ଅବଧାନେ ଭୀମ ମିଶ୍ରେ କହନ୍ତି, ତାଙ୍କ ପିଲାଦିନେ ସେ ଓ ତାଙ୍କର ଜଣେ ସଙ୍ଗୀ ବାଟତଡ କୌଣସି ଗଛ ଉପରେ ବସି ଚଉପଦୀ ଗାଉଥିଲେ । କରଣ ବୁଢ଼ା ସେ ବାଟେ ଯାଉ ଯାଉ ଦୈବାତ୍ ସଙ୍ଗୀତ ସ୍ୱରଶୁଣି ସେ ଗଛ ମୂଳରେ ଯାଇ ପହଞ୍ଚିଲେ । ବୁଢ଼ାଙ୍କୁ ଦେଖି ସେମାନେ ଭୀତତ୍ରସ୍ତ ହୋଇପଡ଼ିଲେ । ସେମାନଙ୍କ ହାତରେ ଏକ ତାଳପତ୍ର ଖେଡା ଦେଖି କି ପୋଥି ଧରିଛ ବୋଲି ପଚାରିଲେ । ସେମାନେ ଚଉପଦୀ ବୋଲି କହିବା ମାତ୍ରେ ବୁଢ଼ା ରାଗିଯାଇ ଧରିଥିବା ବାଙ୍କ ବାଡ଼ିରେ ଦୁହିଙ୍କ ମୁଣ୍ଡକୁ ଦି ବାଡ଼ି ପକେଇ କହିଲେ "ବ୍ରାହ୍ମଣ ପିଲେ ବେଦ, ବେଦାନ୍ତ, ପୁରାଣ, ଶାସ୍ତ୍ର ପଢ଼ନ୍ତି କ'ଣ, ଚଉପଦୀ ପଢ଼ା ଲଗେଇଛ, ଚିର ସେ ପୋଥି ।" ସେମାନେ ତାଙ୍କ ଆଗରେ ସେ ପୋଥି ଚିକି ଚିକି କରି ଚିରି ଫିଙ୍ଗି ଦେଲେ । ସେ କାଳର ବୁଢ଼ା ବୁଢ଼ା ଲୋକେ ପିଲାମାନଙ୍କର ଚରିତ୍ର ପ୍ରତି କପରି ଦୃଷ୍ଟି ଦେଉଥିଲେ ଏବଂ ସାଧାରଣ ପିଲାମାନେ ମଧ ବିଶିଷ୍ଟ ଲୋକଙ୍କ ପ୍ରତି କିପରି ଭକ୍ତି ଓ ଭୟ କରୁଥିଲେ, ଏହି ଗୋଟିଏ ଘଟଣାରୁ ସ୍ପଷ୍ଟ ଜଣାଯାଏ । ଆଜି କାଲିତ ନିଜର ବାପ ମା'ଙ୍କ ଆଗରେ ସିଗାରେଟ୍, ବିଡ଼ି ଖାଇବା, ସିନେମାରେ ଶୁଣିଥିବା ନାନା ପ୍ରକାର ଅଶ୍ଳୀଳ ସଙ୍ଗୀତ ଗାଇବା ଗୋଟାଏ ଫେସନ ହୋଇଗଲାଣି । ଅନ୍ୟ ବୟସ୍କ ଲୋକଙ୍କ ପ୍ରତି ସମ୍ମାନ ଦେଖାଇବା ତ ଦୂରର କଥା ।

ବଳରାମ ପଟ୍ଟନାୟକଙ୍କ ଚାରିପୁଅ । ଲକ୍ଷ୍ମୀନାରାୟଣ, ବାଲୁକି, ଜଗନ୍ନାଥ ଓ

ଦୁର୍ଗାମାଧବ । ଏମାନଙ୍କ ଛଡ଼ା ଜଣେ ପିତୃମାତୃହୀନ ସନ୍ତାନ ପାଳିତ ହୋଇଥିଲେ । ତାଙ୍କ ନାଁ ଚତୁର୍ଭୁଜ । ସେ ସମସ୍ତଙ୍କଠାରୁ ବୟସରେ ବଡ଼ । ସେ ଆମ ଘରର ଜଣେ ପାଳିତ ସନ୍ତାନ ବୋଲି ମୁଁ ବହୁତ ବଡ଼ ହେବାଯାଏଁ ଜାଣି ନଥିଲି । ଘରେ ତାଙ୍କ ପ୍ରତି ବ୍ୟବହାର ଏବଂ ତାଙ୍କର ଘରପ୍ରତି ସ୍ନେହ ମମତା ଓ ଅନୁରକ୍ତି ଦେଖି ସେ ଆମ ବାପ ଦଦାଙ୍କ ନିଜ ଭାଇ ଏବଂ ସେ ମୋର ବଡ଼ ବାପା ବୋଲି ଜାଣିଥିଲି । ଅନ୍ୟ ଭାଇମାନଙ୍କ ତୁଳନାରେ ସାମାନ୍ୟ ଖର୍ବକାୟ, କିନ୍ତୁ ସେମାନଙ୍କ ପରି ଗୋରା ଏବଂ ସୁନ୍ଦର । ମୋର ଜ୍ଞାନ ହେଲା ବେଳକୁ ଆମ ଘରେ ମୋର ବୃଦ୍ଧା ପିତାମହୀଙ୍କୁ ମିଶାଇ ଚାରିଜଣ ସ୍ତ୍ରୀଲୋକ । ମୋ ବୋଉ, ବଡ଼ମା, ଖୁଡ଼ୀ ଏବଂ ମୋର ବିଧବା ସାନ ପିଉସୀ । ମୋର ଏକମାତ୍ର ଭଉଣୀ ସତ୍ୟଭାମା । ବଡ଼ ବାପାଙ୍କ ଦୁଇଝିଅ, କାଞ୍ଚନ ଓ ବୈଦେହୀ । ବଡ଼ ଦଦାଙ୍କ ଦୁଇ ଝିଅ ରୁକ୍ମଣୀ ଓ ରୋହିଣୀ । ମୋର ବାଲ୍ୟାବସ୍ଥା ବେଳେ ବଡ଼ ବାପା ଓ ବଡ଼ ଦଦା ଚାଷବାସ ଦେଖନ୍ତି । ମଝିଆ ଦଦା ଜଗନ୍ନାଥ ଗ୍ରାମର ପୋଷ୍ଟ ମାଷ୍ଟର ଏବଂ ସାନ ଦଦା ଦୁର୍ଗାମାଧବ ରସଲକୋଣ୍ଡା ମଧ୍ୟଇଂରାଜୀ ବିଦ୍ୟାଳୟରେ ପାଠ ପଢ଼ାଉଥିଲେ । ନନା ଜ୍ୟେଷ୍ଠ ପୁତ୍ର ଭାବରେ ପାରମ୍ପରିକ କରଣ କାମ କରନ୍ତି ।

## ଆମ ଘରର ବିଭବ

ସେ ସମୟରେ ଆମ ଘର ବେଶ୍ ବିତ୍ତବଶାଳୀ ଥିଲା । ଜମିବାଡ଼ି ବହୁତ । ପାଞ୍ଚ ଛଅ ହଳ ବଳଦ । ଦୁଇ ତିନି ହଳ ପୋଢ଼ । ସାତ ଆଠ ଜଣ ହଳିଆ, ଦୁଇ ତିନି ଜଣ ପୋଢ଼-ଗୋରୁ ଜଗିବା ପିଲା । ପଚିଶ ତିରିଶ ହାତ ଘର । ଦାଣ୍ଡକୁ ସାମାନ୍ୟ ଏକ ମେଲାଘର ବା କଚେରୀ ଘର ଓ ବାଟଘର ଛଡ଼ା ବାକି ଗୋଟିଏ ଯାକ ଦାଣ୍ଡଘର ଗୁହାଳ । ଗାଈ ଓ ମଇଁଷି କୁହାଁର ଦୁଇଟି । ଦୁଇ ତିନିଜଣ ଗଉଡ଼ । ଗାଁ ଭୂଇଁ ବାଦ୍ ପ୍ରାୟ ଦେଢ଼ମାଇଲ ଦୂର ମରାଇପାଟ ଗ୍ରାମରେ କରଣ ବଞ୍ଚର ନାମରେ ନାମିତ ପଚାଶ ଏକର ପଟ୍ଟାଭୂମି । ଧାନ,ମୁଗ, ବିରି, ମାଣ୍ଡିଆ, କାନ୍ଦୁଲ, କୋଳଥ ପ୍ରଭୃତି ନାନାପ୍ରକାର ଶସ୍ୟ ଅମଳ ସମୟରେ ଆସି କୁଢ଼ କୁଢ଼ ଗଦା ହୋଇଥାଏ । ପଦରରୁ ବାଇଗଣ, ଜହ୍ନି, ପୋଟଳ, ଝଟା, ଆଳୁ ପ୍ରଭୃତି ଋତୁ ଅନୁଯାୟୀ ଆଦାୟ ହୁଏ । ସୋଖିମାଳ ପଦରରୁ ଥରେ ଗୋଟିଏ ଖଡ଼ା ଗଛ ହଳ ଲଗାଇ ଉପୁଡା ହୋଇଥିଲା । ସେ ସମୟରେ କିପରି ପରିବା ଚାଷ ହେଉଥିଲା, ଏଇଥିରୁ ଅନୁମାନ କରାଯାଇପାରେ । ବିହନ ପୁଡୁଗ ଧାଡ଼ି ଧାଡ଼ି ତଳ ଉପର ତିନି ଥାକରେ ରଖାଯାଇଥାଏ । କେତେ ଧାନ ଖଣି ପଡ଼ିଥାଏ । ନିତ୍ୟ ବ୍ୟବହାର ଏବଂ ହଳିଆ ମୂଲିଆଙ୍କୁ ଦେବାପାଇଁ ଏକ ମସ୍ତବଡ଼ ମରେଇରେ ବଳକା ଧାନ ରଖାଯାଇଥାଏ । ଗୋଟିଏ ବଡ଼ କଦଳୀ ବଗିଚା । ଶିକାର କରିବାପାଇଁ

ଜଣେ ବାଣୁଆଁ ଓ ବନ୍ଧୁକ ଥାଏ । ଆମ ବଙ୍କାରକୁ ଲାଗି କାଳିଅମ୍ବା ବଣ । ସେଠାରୁ ତିନି ଚାରିଦିନ ବ୍ୟବଧାନରେ ହରିଣ, ଜିଆଦ, ସମ୍ବର ପ୍ରଭୃତି ଶିକାର ହୋଇଆସେ । ଘରପାଇଁ କିଛି ରଖି ବଳକା ମାଂସ ଗାଁ ଲୋକଙ୍କୁ ବଣ୍ଟାଯାଏ । ଗଣ୍ଡା ଗଣ୍ଡା ଜିଆଦ ଛାଲ ମେଲା ଘରେ ପଡ଼ିଥାଏ । କେତେ ଗୁଡ଼ା ହୋଇ ଚାଳରେ ବନ୍ଧା ହୋଇଥାଏ । ବାବାଜୀ ବୈଷ୍ଣବ ଆସିଲେ ସେମାନଙ୍କୁ ଦିଆଯାଏ । ସେ ସମୟରେ ବହୁତ ବାବାଜୀ ବୈଷ୍ଣବ ଏକା କିମ୍ବା ଦଳବଦ୍ଧ ହୋଇ ଗାଁକୁ ଗାଁ ବୁଲନ୍ତି । ଥରେ ଥରେ ପଚାଶ ଷାଠିଏ କିମ୍ବା ଶତାଧିକ ନାଗା ପଙ୍ଗତ ଆସନ୍ତି । ସାଥିରେ ହାତୀ, ଘୋଡ଼ା, ଓଟ ପ୍ରଭୃତି ଆଣିଥାନ୍ତି । ନାନାପ୍ରକାର ଦେବ ପ୍ରତିମା, ଶାଳଗ୍ରାମ ଓ ପ୍ରକାଣ୍ଡ ପତାକା ସବୁ ଥାଏ । ଗାଁ ଲୋକେ ସେମାନଙ୍କୁ ବସା ସଞ୍ଜା ଯୋଗାନ୍ତି । ଗ୍ରାମର ବିଭିନ୍ନ ସ୍ଥାନରେ ତମ୍ବୁ ପକାଇ ବିଭିନ୍ନ ରଙ୍ଗରେ ସଜାଇ ସେମାନଙ୍କ ପ୍ରତିମାମାନଙ୍କୁ ବେଶଭୂଷା କରି ପୂଜା, ଆଳତି କରନ୍ତି । ଘଣ୍ଟା, କାହାଳୀ, ଶଙ୍ଖ, ମର୍ଦ୍ଦଳ ଶବ୍ଦରେ ଗାଁ କମ୍ପିଉଠେ । ବାବାଜୀମାନଙ୍କର ଲମ୍ବା ଲମ୍ବା ଦାଢ଼ି, ମୁଣ୍ଡରେ ହାତେ ଉଚ୍ଚର ଜଟା, କପାଳରେ ଏଡ଼େ ଏଡ଼େ ରାମାନନ୍ଦୀ ଚିତା, ଖଣ୍ଡେ ଖଣ୍ଡେ କୌପୀନ ମାତ୍ର ପରିଧାନ, ବଡ଼ ଚିତ୍ତାକର୍ଷକ ହୋଇଥାଏ ।

ଘରେଥିବା ଗାଈ, ମଇଁଷୀ, ଦୁଧ, ଛଡ଼ା କୁହାଁରରୁ ଭାର ଭାର ଦୁଧ ଆସେ । ଦୁଧ, ଦହି, ଛେନା, ଚହ୍ଲାରେ ଘର ଭାସୁଥାଏ । ଗୋସେଇଁ ମା ପ୍ରତିଦିନ ସକାଳେ ଦହି ଚହ୍ଲା ଧରି ଦାଣ୍ଡ ଦୁଆରେ ବସିଥାନ୍ତି । ନିକଟସ୍ଥ ଶାସନ ବ୍ରାହ୍ମଣମାନେ ଏବଂ ଗାଁର ସାଇ ପଡ଼ିଶା ପିଲେ ଗିନା, ତାଟିଆ ଧରି ଆସି ନିଅନ୍ତି । ଆମର ଗୋଟିଏ ବଡ଼ ଧଳା ଘୋଡ଼ା ଥାଏ । ସାନ ଦଦା ଦିହେଁ ନନାଙ୍କ ପାଖରେ ଅଳି କରି ଘୋଡ଼ାଟି କିଣିଥିଲେ । ମୋର ମାମୁଁ ବୈଦ୍ୟନାଥ ପଟ୍ଟନାୟକ ଘୋଡ଼ାକୁ ଦେଖି ତା'ର କେତେକ ଦୁର୍ଲକ୍ଷଣ ଲକ୍ଷ୍ୟ କରି ଏହା କିଣିବାକୁ ମନା କରିଥିଲେ । ଦଦା ଦିହେଁ ପାଗ ପଟୁଆର ହୋଇ ମୁଣ୍ଡରେ ଝୁଲରଖା ପଗଡ଼ି ବାନ୍ଧି ଘୋଡ଼ା ଚଢ଼ି ଏଣେ ତେଣେ ବୁଲି ମଉଜ କରନ୍ତି । ମୁଁ କାନ୍ଦିଲେ ସମୟେ ସମୟେ ଘୋଡ଼ା ଉପରେ ଚଢ଼ାଇ ମତେ ସାନ୍ତ୍ୱନା ଦିଅନ୍ତି । ଲୋକେ କହନ୍ତି ଏହି ଘୋଡ଼ା ଯୋଗୁଁ ଆମ ଘର ଭାଙ୍ଗିଲା । ସମସ୍ତ ବିଭବ କ୍ରମଶଃ ଲୋପ ପାଇବାକୁ ଲାଗିଲା । ମାମୁଁ କହିବା କଥା ସତ ହେଲା । ଶେଷରେ ଘୋଡ଼ାଟିକୁ ଜଣେ ବାବାଜୀଙ୍କ ହାତରେ କିଛି ଦକ୍ଷିଣା ସହ ଦାନ କରାଯାଇଥିଲା ।

## ବାଲ୍ୟଜୀବନ ଓ ଚାଟଶାଳୀ ଶିକ୍ଷା

ମୋର ଜନ୍ମ ଆଶ୍ୱିନ ଶୁକ୍ଳ ସପ୍ତମୀ ବୋଲି ଆଗରୁ କୁହାଯାଇଛି । ଶୁଣିବାକୁ ପାଏ ମୁଣ୍ଡରେ ଏକ ବଡ଼ ଖୋସା ପରି ପାଣି ଫୋଟକା ଥାଇ ମୁଁ ଜନ୍ମ ହୋଇଥିଲି । ଦେଖି ସମସ୍ତେ ବଡ଼ ଚିନ୍ତିତ । ମତେ ଖରାରେ ତୁଳସୀ ମୂଳେ ଗଡ଼େଇ ଦେଇ ଦେବତାଙ୍କୁ ସମର୍ପି

ଦେଲେ । ଆମ ଗାଁ ସୁନାରୀ ଘର ସୁନା ମା' ଆସି ଭରସା ଦେଉଥାଏ । ସେ ଏପରି ଫୋଟକା ଥାଇ ଅନେକ ପିଲା ଜନ୍ମହେବା ଦେଖିଛି । ଚିକିତ୍ସା ଚାଲିଲା । ସେ ଦମ୍ଭ ଦେଇ କହିଲା, ''କିଛି ହେବ ନାହିଁ ଆପେ ଆପେ ମିଳେଇ ଯିବ ।'' ତିନିଦିନ ପରେ ଦଶହରା ଉତ୍ସବ, ମହାଦୁଃଖା ବ୍ରତ । ମହାଦୁଃଖା ପୂଜାରେ ମୋର ମୁଣ୍ଡର ପାଣି ଫୋଟକା ଆକାରର ଏକ ମୋଦକ ପୂଜା କରାଗଲା । ଏ ପର୍ଯ୍ୟନ୍ତ ଆମଘରେ ମହାଦୁଃଖା ପୂଜାରେ ସେହିପରି ଏକ ବଡ଼ ମୋଦକ ପୂଜା ହୋଇଆସୁଛି । ସୁନା ମା' କହିବା ପ୍ରକାରେ ସତକୁ ସତ ସାତ ଆଠଦିନ ପରେ ପାଣି ଫୋଟକା କୁଆଡ଼େ ମିଳେଇ ଗଲା ।

## ମୋର ଜନ୍ମ ପତ୍ରିକା

୧୯୦୧ ଅକ୍ଟୋବର ୧୯ ତାରିଖ ସନ ୧୮୨୩ ତୁଳ ୪ଦିନ ଆଶ୍ୱିନ ଶୁକ୍ଳ ସପ୍ତମୀ ଶନିବାର ସନ୍ଧ୍ୟା ସୂର୍ଯ୍ୟାସ୍ତ ସମୟେ । ଜନ୍ମ କାଳରୁ ଶୁକ୍ର ମହାଦଶା ଶେଷ ସ୍ଥିତ ବ ୯/୪/୧୮ ଦିନ । ମୁକୁନ୍ଦ ଦେବ ମହାରାଜଙ୍କ ୨୫ ଅଙ୍କ । ମୀନଲଗ୍ନ, ଭୋଗ ଦ ୩/ ୧୯ ମାହେନ୍ଦ୍ର ସମୟେ । ଜାତକ ନାମ ଭୁବନେଶ୍ୱର, ଧନଞ୍ଜୟ ।

କେ
ଲ
୨୦/୯
ର
ଚ. ବୃ. ଶ.
ବୁ
ରା
ମ. ଶୁ

ପୂର୍ବାଷାଢ଼ା ଧନୁ

## ଚାଟଶାଳୀ ପାଠ

ଶ୍ରୀଦଧିବାମନ ମହାପ୍ରଭୁଙ୍କ ମନ୍ଦିର ନିକଟରେ ଚାଟଶାଳୀ, ଶ୍ରୀ ଭୀମ ମିଶ୍ରେ ଅବଧାନ । ବଡ଼ ଧୀର, ଶାନ୍ତ । ତାଳପତ୍ର ଖେଳା ଲେଖନ ଧରି ସବୁବେଳେ ଲେଖା ଲେଖି କରନ୍ତି । ପିଲାଙ୍କୁ ଡ଼ରେଇବା ପାଇଁ ପାଖରେ ବେତ ଖଣ୍ଡେ ପକାଇ ଥାନ୍ତି । କ୍ୱଚିତ୍

ବାଡ଼ାବାଡ଼ି କରନ୍ତି । ଏହାଙ୍କଠାରୁ ମୋର ସିଦ୍ଧିରସ୍ତୁ ଶିକ୍ଷା ଆରମ୍ଭ । ପୂଜାକୁ ଦୋଉଜା, ଉଖୁଡ଼ା, ନଡ଼ିଆ, ଅବଧାନଙ୍କପାଇଁ ସଞ୍ଚା, ଲୁଗା ଯାଇଥିଲା । କ୍ରମଶଃ ଅକ୍ଷର ଚିହ୍ନା ଆରମ୍ଭ । ପ୍ରଥମେ କୋଇଲି, ତା'ପରେ ଗୋପୀଭାଷା ଓ ରାସ ପାଞ୍ଚ ଅଧ୍ୟା ପ୍ରଭୃତି ପଢ଼ା ହେଲା । ମିଶାଣ, ଫେଡ଼ାଣ, ହରଣ, ଗୁଣାଣ, ପଣକିଆ, ଓଡ଼ାଙ୍ଗ, ଫେଡାଙ୍ଗ, ଶୋଧ, ପର୍ବତିଆ, ମାନସାଙ୍କ ପ୍ରଭୃତି ପଢ଼ାଗଲା । ମୋର ପଣକିଆ ମନେ ରହେନାହିଁ । ବିଶେଷତଃ ୧୩,୧୭,୧୯ ଓ ୨୩ ଖନ୍ଦା ଏପର୍ଯ୍ୟନ୍ତ ସତୁରୀ ପଞ୍ଚସ୍ତରୀ ବର୍ଷ ବୟସରେ ମଧ ମନେ ନାହିଁ । ଏହି ପଣକିଆ ଯୋଗୁଁ ଚାଟଶାଳୀରେ ମାଡ଼ ଖାଏ । ଘରେ ମଧ ନନା ପଚାରନ୍ତି, ନ ଆସିଲେ ମାଡ଼ ଦିଅନ୍ତି । ଥରେ ରାତିରେ ସେ ପଣକିଆ ପଚାରୁ ପଚାରୁ ମୁଁ ନ କହିପାରିବା ଦେଖି ଜଂଘର ମାଂସପେଶୀ ମୋଡ଼ି ଦେଲେ, ଲୁଗା ସହିତେ ମଳିଚମ ଉଠିଗଲା । ପ୍ରାୟ ଚାରି ପାଞ୍ଚଦିନ ତା'ରି ପ୍ରକୋପରେ ଜ୍ୱର ହୋଇଗଲା ।

## ଚାଟଶାଳୀ ପାଠ କାର୍ଯ୍ୟକ୍ରମ

ଚାଟଶାଳୀ ଯିବାକୁ ମୁଁ କେବେ କେବେ ଲୁଚିଥିବା ମନେ ଅଛି । ଦିନେ ଖରାବେଳେ ମୁଁ ଚାଟଶାଳୀକୁ ନ ଯିବା ଦେଖି ମଝିଆ ଦଦା (ଜଗନ୍ନାଥ) ମତେ ଘୋଷାରି ଘୋଷାରି ଦାଣ୍ଡରେ ନେଇଥିଲେ । ତା' ଦେଖି ବୋଉ ଟିକିଏ ବିରକ୍ତି ପ୍ରକାଶ କରିଥିଲା । ଚାଟଶାଳୀରେ ଭଲ ପଢୁଥିଲି କି ନାହିଁ ମନେ ନାହିଁ । ଅନ୍ୟ ପିଲାଙ୍କ ସାଙ୍ଗରେ ସାଙ୍ଗ ହୁଏ ନାହିଁ । ଅନ୍ୟ ପଞ୍ଚାଏ ଯେପରି କଥା କଥାକେ ଦୁର୍ଭାଷା କହନ୍ତି, ସେପରି ମୁଁ କେବେ କହିନାହିଁ । ଦିନେ ରାତିରେ କିନ୍ତୁ ସାନ ଦଦା ପାଠ ପଚାରୁ ପଚାରୁ, ମାଡ଼ ଦେଲେ, ହଠାତ୍ ମୋ ମୁହଁରୁ "ଶଳା" ବୋଲି ବାହାରିପଡ଼ିଲା । ଘରେ ସମସ୍ତେ ଏ ଶବ୍ଦ ଶୁଣି ଠୋ ଠୋ ହସିଲେ । ଦଦାଙ୍କ ରାଗ କୁଆଡ଼େ ଗଲା, ସେ ମଧ ହସି ହସି ଗଡ଼ିଗଲେ । ଏଇ ଥରକ ଛଡ଼ା ମୁଁ ଜୀବନରେ କେବେ ଏପରି ସାମାନ୍ୟ ଦୁର୍ଭାଷା ମଧ ପ୍ରୟୋଗ କରିଥିବା ମନେ ନାହିଁ ।

ଥରେ ମତେ ଇଂରାଜୀ ପଢ଼ାଇବା ପାଇଁ ରସୁଲକୋଣ୍ଡା ନିଆଗଲା । ମୁଁ ଗଲାବେଳେ କେଡ଼େ ଉତ୍ସାହରେ ଗଲି । ଆଗରୁ ଆମ ଗାଁ ପୋଷ୍ଟମାଷ୍ଟର ଗୋପୀନାଥ ତ୍ରିପାଠୀଙ୍କ ଠାରୁ କିଛି କିଛି ଇଂରାଜୀ ଶିଖିଥିଲି । ନନାଙ୍କ ସାଙ୍ଗ ଜଣେ ତେଲୁଗୁ ବୁଢ଼ାଙ୍କ ପାଖରେ ମତେ ସନ୍ଧ୍ୟାବେଳେ ଛାଡ଼ିଦେଇ ନନା ଗାଁକୁ ଫେରିବାକୁ ବାହାରିଲେ । ମୁଁ ଅପରିଚିତ ବୁଢ଼ାଙ୍କ ପାଖରେ ବସି ପଢ଼ିବି କ'ଣ, କଇଁ କଇଁ ହୋଇ କାନ୍ଦିଲି । ବୁଢ଼ା ନନାକୁ ଡାକ ପକେଇ ମତେ ତାଙ୍କ ସାଙ୍ଗରେ ଛାଡ଼ି ଦେଲେ । ନନାଙ୍କ ସାଙ୍ଗରେ ଗାଁକୁ ଫେରି ଆସିଲି । ପୁଣି ସେଇ ପୋଷ୍ଟ ମାଷ୍ଟରଙ୍କ ପାଖରେ ପଢ଼ିଲି ।

# ବଡ଼ବାପା, ନନା ଓ ଦଦାମାନେ

ବଡ଼ବାପା ଚତୁର୍ଭୁଜ ବଳଶାଳୀ, କାର୍ଯ୍ୟକ୍ଷମ ଓ ନିରଳସ । ସକାଳୁ ସନ୍ଧ୍ୟାଯାଏଁ ଚାଷ କାମରେ ରତଥାନ୍ତି । ସେ ବଡ଼ ଧୀର ସ୍ଥିର, ଜୀବନଯାକ କାହା ସହିତ କେବେ ମନୋମାଳିନ୍ୟ ନାହିଁ । ବହୁତ ପାନ ଖା'ନ୍ତି । ଲୋକେ କହନ୍ତି, ପାନ ଖାଇଲେ ଦାନ୍ତ ପଡ଼ିଯାଏ । କିନ୍ତୁ ଏତେ ପାନ ଖାଇ ସୁଦ୍ଧା ତାଙ୍କର ଶେଷକାଳ ଯାଏ ଦାନ୍ତ ସବୁ ସରି ସରି ମୁନିଆ ହୋଇ ରହିଥିଲା । ମୋ ନନା କିନ୍ତୁ ଦୁଇ ଓଳି ଦୁଇଥର କେବଳ ଭୋଜନ ପରେ ଖଣ୍ଡିଏ ପାନ ଖାନ୍ତି । ତାଙ୍କର ଦାନ୍ତ ଅଳ୍ପ ସମୟରୁ ପଡ଼ି ଯାଇଥିଲା । ଅନ୍ୟ ଭାଇ ମାନଙ୍କର ମଧ ପାନ ନ ଖାଇ ସୁଦ୍ଧା ସେହିପରି ପଡ଼ିଯାଇଥିଲା । ବଡ଼ବାପା ମଙ୍ଗଳପୁରରେ ବିବାହ କରିଥିଲେ । ବାର୍ଦ୍ଧକ୍ୟ ଅବସ୍ଥାରେ ପ୍ରଥମା ପତ୍ନୀଙ୍କ ବିୟୋଗ ପରେ ପଙ୍କଳବାଡ଼ିରେ ଦ୍ୱିତୀୟ ବିବାହ କଲେ । ଏହି ସ୍ତ୍ରୀଙ୍କ ଠାରୁ ତାଙ୍କର ଗୋଟିଏ ପୁତ୍ର ସନ୍ତାନ ହୋଇଥିଲା- ନାମ ବାଙ୍କନିଧି ।

ମୋ ନନା ଦୀର୍ଘକାୟ, ସୁଗଠିତ ଶରୀର, ଗୌରବର୍ଣ୍ଣ, ଆଜାନୁଲମ୍ବିତ ବାହୁ । ମୁଖ ଶ୍ରୀ-ସମ୍ପନ୍ନ । କପାଳରେ ବଡ଼ ବଡ଼ ରାମାନନ୍ଦୀ ତିଳକ, କଣ୍ଠରେ ତୁଳସୀକଣ୍ଠିର ମାଳ ଓ ପୁଷ୍କରମାଳ ଲମ୍ବିତ । ବଡ଼ ଧର୍ମ ପରାୟଣ । ରାମାନୁଜ ପନ୍ଥୀ ଶ୍ରୀ ବୈଷ୍ଣବ ମତାବଲମ୍ବୀ । ଆମ ଦଦାମାନେ ମଧ ନନାଙ୍କ ଭଳି କପାଳରେ ତିଳକ ଭୂଷିତ । ମୁଁ ପିଲାଦିନେ ସେମାନଙ୍କ ତିଳକ କୋଥଳି ଦେଖି ଗୋଟିଏ ତିଳକ କୋଥଳି କରିଥାଏ । ପ୍ରତିଦିନ ସ୍ନାନ ପରେ କପାଳରେ ତିଳକ ଭୂଷିତ ହୋଇ ମୁଣ୍ଡିଆ ମାରେ । ସମୟେ ସମୟେ ନନାଙ୍କ ସହ ମନ୍ଦିରକୁ ଯାଇ ସୁନ୍ଦର ଦଧିବାମନ ମୂର୍ତ୍ତି ଦେଖି ଆନନ୍ଦ ଉପଭୋଗ କରିଥାଏ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଶ୍ରୀ ଦଧିବାମନ ମନ୍ଦିରରେ ନନା ଜପ, ଉପାସନା କରନ୍ତି । ଗାଁ ଲୋକେ ଓ ଆଖ ପାଖ ଗାଁ ଲୋକେ ତାଙ୍କୁ ଭୟ ଓ ସମ୍ମାନ କରନ୍ତି । ଜ୍ୟେଷ୍ଠ ପୁତ୍ର ହିସାବରେ ସେ ପାରମ୍ପରିକ କରଣ କାମ କରନ୍ତି । କଚେରୀରେ ସରକାରୀ କର୍ମଚାରୀମାନେ ମଧ ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଥାନ୍ତି । ଘୁମୁସର କରଣମାନଙ୍କର ସେ ଥିଲେ ନେତୃସ୍ଥାନୀୟ ।

ବଡ଼ଦଦା ବାଲୁଙ୍କି ନନାଙ୍କ ପରି ଦୀର୍ଘକାୟ, ଗୌରବର୍ଣ୍ଣ, ବଳିଷ୍ଠ । କୁସ୍ତି ଆଖଡ଼ାରେ ଦଣ୍ଡ, ବୈଠକ କରନ୍ତି, ମୁଦ୍‌ଗର ବୁଲାନ୍ତି, ପଥର ଟେକନ୍ତି । (ସେ ସମୟରେ ପ୍ରତ୍ୟେକ ଗ୍ରାମରେ କୁସ୍ତି କସରତ୍ ଆଖଡ଼ା ଥାଏ, ଭେଣ୍ଡିଆମାନେ ସନ୍ଧ୍ୟାରେ ମୁଦ୍‌ଗର ବୁଲେଇବା, ପଥର ଟେକିବା, ଦଣ୍ଡ ବୈଠକ କରିବା, କବାଡ଼ି ଖେଳିବା ଇତ୍ୟାଦି ଅଭ୍ୟାସ କରିଥାନ୍ତି । ଏବେ ସେସବୁ ଲୋପ ହେଲାଣି) । ଗ୍ରାମରେ ସେ ସମୟର ଯୁବକମାନଙ୍କର ମଧରେ ସମସ୍ତ ପ୍ରତିଯୋଗିତାରେ ଦଦା କୃତିତ୍ୱ ପ୍ରଦର୍ଶନ କରନ୍ତି । ଶଗଡ଼ ଗୁଳି (ଚକ) ଗୋଟିଏ

ହାତରେ ଧରି ମୁଣ୍ଡ ଉପରେ ଚକ୍ରାକାରରେ ବୁଲାଉଛି । କପାଳରେ ବଡ଼ ବଡ଼ ରାମାନନ୍ଦୀ ତିଳକ ଶୋଭା ପାଉଥାଏ । ଚାଷ କାମରେ ଧୁରନ୍ଧର । ବଡ଼ ବାପାଙ୍କ ସାଙ୍ଗରେ ଚାଷକାମ ଦେଖନ୍ତି । ବେଳେ ବେଳେ ତାଳପତ୍ର ଖେଦା ଓ ଲେଖନ ଧରି ରାମାୟଣ, ମହାଭାରତାଦି ଲେଖନ୍ତି । କିନ୍ତୁ ପରବର୍ତ୍ତୀ କାଳରେ ତାଙ୍କର ସେ ସୁନ୍ଦର ରୂପ ସେ ପରାକ୍ରମ ରହିଲା ନାହିଁ । ସେ ରୁଗ୍ଣ ଓ ପଙ୍ଗୁ ହୋଇ ଘରେ ବସି ରହିଲେ ।

ମଝିଆ ଦଦା ଜଗନ୍ନାଥ । ବଡ଼ ଭାଇମାନଙ୍କ ପରି ଦୀର୍ଘକାୟ । ସୁଗଠିତ ତନୁ । ଗୌରବର୍ଣ୍ଣ । ଘୋଡ଼ସବାର କଲାବେଳେ କେଡ଼େ ସୁନ୍ଦର ଦେଖାଯାଉଛି । ସାମାନ୍ୟ ଇଂରାଜୀ ପଢ଼ୁଥିଲେ । ନନାଙ୍କ ଯତ୍ନରେ ଗାଁରେ ଏକ ପୋଷ୍ଟ ଅଫିସ ବସିଥିଲା । ସେ ସମୟରେ କେବଳ ରସଲକୋଣ୍ଡା, ବେଲଗୁଣ୍ଠା, ରାଙ୍ଗପୁର ଓ ଗୋବରାରେ ପୋଷ୍ଟ ଅଫିସ ଥିଲା । ଦଦା ଗୋବରା ପୋଷ୍ଟ ଅଫିସ୍‌ର ପୋଷ୍ଟ ମାଷ୍ଟର ଥିଲେ । ରସୁଲକୋଣ୍ଡାରୁ ଧାଉଁଡ଼ିଆ (Runner) ଦ୍ୱାରା ଡ଼ାକ ଆସେ । ବ୍ରହ୍ମପୁରରୁ ଆସିକା ଦେଇ ରସୁଲକୋଣ୍ଡାକୁ ଏହି ରନର୍‌ମାନଙ୍କ ଦ୍ୱାରା ଡ଼ାକ ଯିବା ଆସିବା କରୁଥାଏ । ଦୁଇଜଣ ରନର୍ ଝଣ୍‌ଝଣ୍ ହେଉଥିବା ଦୁଇଟି ଠେଙ୍ଗାରେ ଡାକବିଡ଼ା ବାନ୍ଧି କାନ୍ଧରେ ପକାଇ ତାଳ ଅନୁସାରେ ପାଦ ପକେଇ ଧାଇଁ ଧାଇଁ ଯା'ନ୍ତି । ମଝି ମଝିରେ କେତେ ମାଇଲ୍ ଅନ୍ତରରେ ସେମାନଙ୍କର ଡାକ ଅନ୍ୟ ରନର୍‌କୁ ବଦଳା ଯାଏ । ସେତେବେଳେ ଏହିପରି ଭାବରେ ଡାକ ଯିବା ଆସିବାର ବ୍ୟବସ୍ଥା ଥାଏ । ପିଲାଦିନେ ଆମେ ସବୁ ଏହି ଝୁଣ୍‌ଝୁଣୁବାଲା ଡାକବାଲାଙ୍କୁ ଦେଖିବାକୁ ସଡ଼କକୁ ଧାଇଁଯାଉ । ଡାକରେ ଟଙ୍କା ଆସିବା ବେଳେ ପୋଲିସ୍ ପହରା ଥାଇ ଡାକ ଆସେ । ଗୋବରା ପୋଷ୍ଟ ଅଫିସକୁ ଏ ଚକଡ଼ା ଯାକର ବହୁତ ମନିଅର୍ଡର ଆସେ । ଦଦା ଥରେ ଡାକ ଧନରୁ ଟ୧୦/- ଖର୍ଚ୍ଚ କରିଦେଇ ଥିଲେ । ଦୈବାତ୍ ଇନସ୍‌ପେକ୍ଟର୍ ଆସି ଧରିଲେ । ରିପୋର୍ଟ ହେଲା । ମକଦ୍ଦମା ଚାଲିଲା । ନନା ତାଙ୍କୁ ଏଥିରୁ ଉଦ୍ଧାର କରିବାପାଇଁ ବହୁ ଯତ୍ନ କଲେ ଓ ବହୁ ଅର୍ଥ ବ୍ୟୟ କଲେ । କିନ୍ତୁ ମକଦ୍ଦମାରୁ ରକ୍ଷା ମିଳିଲା ନାହିଁ । ଅଠର ମାସ ସଶ୍ରମ କାରାଦଣ୍ଡ ଆଦେଶ ହେଲା । ସୁଦୂର ଚେଙ୍ଗଲ୍ ପଟ (ମାନ୍ଦ୍ରାଜ) ଜେଲକୁ ପଠାଗଲେ । ଜେଲରୁ ଫେରିବା ବେଳକୁ ତାଙ୍କ ବର୍ଣ୍ଣ ହଜି ଯାଇଥିଲା । ଦେହଯାକ ମଳିବସି ଚମଡ଼ା ପରି ରହିଥାଏ । ମୁଣ୍ଡ ଲଣ୍ଡା, ଶୀର୍ଣ୍ଣକାୟ । ବହୁଦିନର ଯତ୍ନ ପରେ ସେ ତାଙ୍କର ପୂର୍ବ ରୂପ ବର୍ଣ୍ଣ ଫେରିପାଇଲେ । ଶେଷ କାଳଯାଏ ସେ କରଣ ଲେଖା ଓ ଚାଷ କାମରେ ଦିନ କଟାଉ ଥିଲେ ।-

ସବା ସାନଦଦା ଦୁର୍ଗାମାଧବ । ଅନ୍ୟ ଭାଇମାନଙ୍କ ପରି ଦୀର୍ଘକାୟ, କିନ୍ତୁ ଶୀର୍ଣ୍ଣ ଶରୀର ଓ ଶ୍ୟାମଳ ବର୍ଣ୍ଣ । ବଡ଼ ସାହସୀ ଓ ତେଜୀୟାନ୍ । ରସୁଲକୋଣ୍ଡା ମଧ ଇଂରେଜୀ ବିଦ୍ୟାଳୟରେ ସପ୍ତମ ଶ୍ରେଣୀଯାଏଁ ପଢ଼ିଥିଲେ । ତାଙ୍କରି ନାମରେ ମଞ୍ଜୁର ହୋଇଥିବା ଗ୍ରାମ ବିଦ୍ୟାଳୟଟିରେ ଶିକ୍ଷକତା କରୁଥିଲେ । ପରବର୍ତ୍ତୀ କାଳରେ ଏହି ବିଦ୍ୟାଳୟଟିକୁ

ଶ୍ରୀବସ୍ତ ପଣ୍ଡା ଏକ ନୂତନ ରୂପରେଖ ଦେଇ ଗଠନ କରିଥିଲେ ।

## ଆମ ଘର ଭାଙ୍ଗିଲା

ସାନ ଦୁଇ ଦଦା ବିବାହ କରି ନଥାନ୍ତି । ଭାଇମାନଙ୍କ ମଧ୍ୟରେ ପରସ୍ପର ସ୍ନେହ, ମମତା ଆଦର ଥାଏ । କିନ୍ତୁ କ'ଣ ହେବ ? ସର୍ବତ୍ର ସ୍ତ୍ରୀମାନଙ୍କ ଯୋଗୁଁ ଯେପରି ଘର ଭାଙ୍ଗିଥାଏ, ଆମ ଦୁର୍ଭାଗ୍ୟକୁ ମଧ୍ୟ ସେପରି ଘଟିଲା । ବୋଉ ଓ ଖୁଡ଼ୀ ଉଭୟେ ଦଦାମାନଙ୍କୁ ଭିନ୍ନ କରିଦେବା ପାଇଁ ଷଡଯନ୍ତ୍ର କଲେ । ବୋଉ ନନାଙ୍କ କାନରେ ସବୁବେଳେ ଏଣୁ ତେଣୁ ଖଚ କହେ । ରାତିରେ ମୁଁ ନନାଙ୍କ ପାଖରେ ଶୋଇ ସବୁ ଶୁଣେ । ନନା ଏସବୁ ଶୁଣି ଶୁଣି ସମୟେ ସମୟେ ବିରକ୍ତ ମଧ୍ୟ ହୁଅନ୍ତି । ଶେଷରେ କିନ୍ତୁ ତା'ରି କଥାରେ ପଡ଼ିଲେ । ଭିନ୍ନେ ହେଲେ ।

ଭିନ୍ନେ ହେଲାବେଳେ ନନା, ଦଦା, ବୋଉ, ଖୁଡ଼ୀଙ୍କର ଆଚରଣ ଦେଖି ମୁଁ ବିବ୍ରତ ହେଉଥିଲି । କିଏ କେତେବେଳେ କାହାକୁ ମାରିବାକୁ ବାହାରେ, କେତେ ମନ୍ତ୍ରଣା ଚାଲେ । ଭୂମି ସବୁ ବାରମ୍ବାର ବଣ୍ଟାହୁଏ । ପର ମୁହୂର୍ତ୍ତରେ ଦଦାମାନେ ରାଜି ହୁଅନ୍ତି ନାହିଁ । ପୁଣି ବଣ୍ଟାହୁଏ । ବର୍ଷେକାଳ ଧରି ଏ କଳହ ଚାଲିଥାଏ । ବଡ଼ ବାପା ଏ କଳହରେ ଖାଲି ମୂକ ସାକ୍ଷୀପରି ରହିଥାନ୍ତି । ସେ ଜାଣନ୍ତି ଯେ, ସେ ଏ ଘରର ଔରସ ଜାତ ସନ୍ତାନ ନୁହନ୍ତି । ସେମାନେ ଅନୁଗ୍ରହ କରି ଯାହା ଦେବେ ସେତିକିରେ ସେ ସନ୍ତୁଷ୍ଟ ହେବେ । ଏଡ଼େ ବଡ଼ ଘର ସବୁ ଖଣ୍ଡ ଖଣ୍ଡ ହୋଇଗଲା । ଲମ୍ବ, ଚଉଡ଼ା, ଉଚ ପିଣ୍ଡା ଆଉ ରହିଲା ନାହିଁ । କ୍ରମଶଃ ଲୋକଙ୍କ ଖାତିର ମଧ୍ୟ କମିବାକୁ ଲାଗିଲା । ସବୁ କୁଆଡ଼େ ଅସ୍ତବ୍ୟସ୍ତ ହୋଇଗଲା । ଗୋସେଇଁ ମା କିନ୍ତୁ ଏସବୁ ଦେଖିବାକୁ ନ ଥିଲେ । ଯା ଆଗରୁ ସେ ଚାଲିଯାଇ-ଥିଲେ ।

ଆମ ଘରେ ବହୁ ବନ୍ଧୁ ବାନ୍ଧବ ପିଲା ଆସି ରହନ୍ତି । କିଏ ପାଠ ପଢ଼ିବା ଉଦ୍ଦେଶ୍ୟରେ, କିଏ କୁଣିଆ ଆସି ମଧ୍ୟ ମାସ ମାସ ବର୍ଷ ବର୍ଷ ଧରି ରହନ୍ତି । ଆଉ ଅନ୍ୟାନ୍ୟ ବନ୍ଧୁବାନ୍ଧବ ମଧ୍ୟ ବହୁତ ଆସନ୍ତି । ସମସ୍ତଙ୍କ ପ୍ରତି ସମାନ ମର୍ଯ୍ୟାଦା, ସମାନ ଆଦର ଓ ସମାନ ବ୍ୟବହାର । ଭିନ୍ନେ ହେବାପରେ ଏସବୁ ବଦଳିବାକୁ ଲାଗିଲା । କେବଳ ଆମ ଘରଟି ଟିକିଏ ଗହଳି ହେଉଥାଏ । ଭଣଜାମାନେ ମଧ୍ୟ ଆଉ ଆଗପରି ଆଦର ଯତ୍ନ ପାଇଲେ ନାହିଁ । ଅବ କେତେବର୍ଷ ପରେ ଜଗନ୍ନାଥ ଦଦା ବିବାହ କଲେ । ସେ ମଧ୍ୟ ସାନ ଦଦାକୁ ବେଶିଦିନ ପାଖରେ ରଖିପାରିଲେ ନାହିଁ । ସାନଦଦା ତାଙ୍କଠାରୁ ଅଲଗା ହୋଇ କେବେ ରୋଷେଇ କରି କେବେ ବା ଚୁଡ଼ା ମୁଢ଼ି ଖାଇ ଚଳନ୍ତି । ଏସବୁ ଦେଖି ମୁଁ ମର୍ମାହତ ହେଉଥିଲି ।

॥ ୧୨ ॥

# ମୋ ବୋଉ

ବୋଉ ମୋର ବଡ଼ ଉଦାର ମନା । ଭୋକିଲା ଲୋକଙ୍କୁ ଡ଼ାକି ଖାଇବାକୁ ଦେବ । କିଏ କୌଣସି କାମରେ ଆସିଥିଲେ ତା'ଠାରୁ ତା'ର ପରିଚୟ ନେଇ ନ ଖାଇ ଏତେବେଳେ କିମିତି ଉପାସରେ ଯିବ କହି ଖୁଆଇବ । ଆତ୍ମୀୟ ସ୍ୱଜନମାନଙ୍କ ସହିତ ମନାନ୍ତର ହେଲେ ତା' ମୁହଁ ଆଉ ଚାହିଁବ ନାହିଁ । ଭଣଜାମାନେ ତ ଆମ ଘରେ ରହନ୍ତି । ସେମାନଙ୍କୁ କେତେ ଆଦର ଯତ୍ନ କରୁଥାଏ । ଭିନ୍ନେ ହେଲାପରେ ଆଉ ସେମାନଙ୍କୁ ଭଲ ପାଇଲା ନାହିଁ । ଦିନକର ଘଟଣା- ତା'ର ଭଣଜା ଭଜରାମ ଓ ମୁଁ ଏକାଠି ପଢ଼ୁଥାଉଁ । ସେ କିନ୍ତୁ ଦଦା ଘରେ ଖାଉଥାନ୍ତି । ସେଦିନ ମୁଁ ତାଙ୍କୁ ଆମ ଘରକୁ ଖାଇବାପାଇଁ ଡାକିନେଲି । ପଖାଳ ଭାତ ବଢ଼ା ହେଲା । ବୋଉ ମତେ କହିଲା ''ତୁ ଏଠାରେ ବସ, ସେ ସେଠାରେ ବସନ୍ତୁ ।'' ମୁଁ କହିଲି ''ନା ସେ ଏଠାରେ ବସନ୍ତୁ ମୁଁ ସେଠାରେ ବସିବି ।'' ଏହା କହି ଭାତ କଂସାରେ ହାତ ମାରିଲା ବେଳକୁ ବାସୀଭାତ । ''ବାସୀଭାତ କ'ଣ ଦେଇଛୁ'' ବୋଲି କହିଲା ବେଳକୁ ଭଜରାମ କହିଲେ, ''ସଜଭାତ ଗରମ ଲାଗୁଛି, ବାସୀଭାତ ବୋଲି କ'ଣ କହୁଛ ''? ମୁଁ କହିଲି ''ସେଇଥିପାଇଁ ସେ ତୁମକୁ ଏଠାରେ, ମତେ ସେଠାରେ ବସିବାକୁ କହୁଥିଲା । ତୁମକୁ ବାସୀ ଦେଇଥିଲା ମତେ ସଜ ଦେଇଥିଲା ।'' କଥାଟା ପଦାରେ ପଡ଼ିଯିବାରୁ ବୋଉ ଲଜ୍ଜିତ ହେଲା । ସଙ୍ଗେ ସଙ୍ଗେ ସଜଭାତ ଆଣି ମତେ ଦେଲା ।

ଆମ ଘରେ ଆଉ ଗୋଟିଏ ପିଲା ଆସି ରହିଲା । ଘର ଡ଼େଙ୍ଗା ପଦର । ବନ୍ନୁଆ ବ୍ରାହ୍ମଣ । ଜନ୍ମର ପନ୍ଦର ଦିନରେ ତା' ମା ହଇଜାରେ ମରିଗଲା । ତା' ବାପା ତାକୁ ପାଳିବାକୁ ଅକ୍ଷମ ହୋଇ ଆମ ଆଗ ଦୁଆରୀ ତା' ବନ୍ଧୁ ଘରେ ଆଣି ପିଲାଟିକୁ ରଖିବାକୁ କହିଲା । ସେ ରଖିଲା ନାହିଁ କିମ୍ବା ଅନ୍ୟ ବ୍ରାହ୍ମଣ ଘର କେହି ରଖିପାରିଲେ ନାହିଁ । ନନା ଖାଇ ବସିଥିବା ବେଳେ ବୋଉ କରୁଣ ହୃଦୟରେ ନନାଙ୍କୁ ସେ କଥା କହିଲା । କେହି ପିଲାଟିକୁ ରଖିଲେ ନାହିଁ ବୋଲି ଦୁଃଖ ପ୍ରକାଶ କଲା । ''ଆଚ୍ଛା ତୁ ପିଲାଟିକୁ ପାଳି ପାରିବୁ କି ?'' ବୋଲି ନନା ପଚାରିଲେ । ବୋଉ କହିଲା ''ଦେଲେ ପାଳି ପାରିବି ।'' ପିଲାର ବାପାକୁ ପଚାରିବାରୁ ସେ ଆଗ୍ରହରେ ଦେଇ ଦେଲା ।

ମୋ ବୋଉ ତାକୁ ବଡ଼ ଆଦର ଓ ଯତ୍ନରେ ଅଥଚ ବହୁ କଷ୍ଟରେ ନିଜର ସନ୍ତାନ ଭଳି ପାଳନ କଲା । ବୋଉ ତ ଘର କାମ କିଛି କରେ ନାହିଁ । ଜୀବନସାରା ରୋଷେଇ ଘରେ ପଶି ନାହିଁ । ଖୁଡ଼ୀଙ୍କ ଉପରେ ରୋଷେଇବାସ କାମ । ବୋଉ ପିଲାଟିର ସେବାରେ ଲାଗିଲା । ମୋ ନାଁ ବାଞ୍ଛାନିଧି, ତା ନାଁ ଦୟାନିଧି ରଖାଗଲା । ତାକୁ ସେ ସେପରି ଯତ୍ନ କଲା, ଗାଁ ସାର ପଡ଼ିଶା କହନ୍ତି ''ବାଞ୍ଛା ମଧ ଏତେ ଯତ୍ନ ପାଇ ନଥିବ ।''

ତଦ୍‌ଗତ ପ୍ରାଣ ବୋଉ ଆହାର ନିଦ୍ରା ଭୁଲିଯାଇ ଅତି ଯତ୍ନରେ ତାକୁ ଲାଳନପାଳନ କଲା । ବଡ଼ ଗେହ୍ଲାରେ ବଢ଼ାଇଲା । ଟେକାକ୍ଷୀର ଖାଇବା ହେତୁ ପିଲାଟିର ବେଶି ଝାଡ଼ା ହୁଏ । ଅମ୍ଳାନ ବଦନରେ ନିର୍ବିକାର ଭାବରେ ବୋଉ ନିଜ ହାତରେ ତାହା ପରିଷ୍କାର କରେ । ଗାଁରେ କ୍ଷୀର ଅଭାବ ହେବାରୁ ବହୁତ ଖୋଜି ଖୋଜି ସୁଦୂର ଗାଲେରୀ ଗ୍ରାମରୁ ଗୋଟିଏ ଭଲ ଦୁଧିଆଳୀ ଗାଇ ଅଣାଗଲା । ଘରର ସମସ୍ତେ ଏପରିକି ଭିନ୍ନେ ହୋଇଥିବା ଦଦା ଖୁଡ଼ୀ ମଧ ପିଲାଟିର ଆଦର ଯତ୍ନ ନେଉଥାନ୍ତି । ମୋର ତ ଆଉ ଭାଇ ନଥିଲା । ଭାଇଟିଏ ମିଳିଲା ବୋଲି ମୋର ଆନନ୍ଦର ସୀମା ନ ଥାଏ ।

## ପ୍ରାଥମିକ ଶିକ୍ଷା

ସେ ସମୟରେ ଆମ ଦେଶର ଅବସ୍ଥା ବିଚିତ୍ର ପ୍ରକାରର ଥିଲା । ସମଗ୍ର ଉତ୍କଳ ଭାଷାଭାଷୀ ଅଞ୍ଚଳ ଏକ ଶାସନାଧୀନ ନଥିଲା । କେତେକ ମାନ୍ଦ୍ରାଜ, କେତେକ ବଙ୍ଗଳା, କେତେକ ବିହାର, ଆଉ କେତେ ମଧ-ପ୍ରଦେଶାନ୍ତର୍ଗତ ଥିଲା । ଗଞ୍ଜାମରେ ଆନ୍ଧ୍ର ବ୍ୟକ୍ତିମାନେ ସରକାରୀ ଚାକିରୀରେ ଅଧିକ ସ୍ଥାନ ମାଡ଼ିବସି ଓଡ଼ିଆମାନଙ୍କ ପ୍ରତି ନାନା ପ୍ରକାର ଅନ୍ୟାୟ ଅତ୍ୟାଚାର କରୁଥିଲେ । ଓଡ଼ିଆମାନଙ୍କୁ ଘୃଣା କରୁଥିଲେ । ଏହି ଜିଲ୍ଲାରେ ଇଂରେଜୀ ଶିକ୍ଷିତ ଲୋକ ନଥିଲେ । ସ୍କୁଲ ମାନଙ୍କରେ ମଧ ତେଲଙ୍ଗା ଶିକ୍ଷକ ଓ ବହୁ ସଂଖ୍ୟାରେ ତେଲଙ୍ଗା ଛାତ୍ର । ଯେଉଁ କେତେଜଣ ଓଡ଼ିଆ ପିଲା ଆସି ପଢ଼ନ୍ତି, ସେମାନେ ତେଲଙ୍ଗା ଶିକ୍ଷକ ଓ ତେଲଙ୍ଗା ଛାତ୍ରମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହୁଅନ୍ତି । ସେ ସମୟରେ ଆମ ଗଞ୍ଜାମରେ କେବଳ ତିନିଜଣ– ଶ୍ୟାମ ସୁନ୍ଦର ରାଜଗୁରୁ (ପାରଳାଖେମୁଣ୍ଡି) ଶ୍ରୀବତ୍ସ ପଣ୍ଡା ଏବଂ ହରିହର ପଣ୍ଡା (ଘୁମୁସର) ସର୍ବ ପ୍ରଥମ ଗ୍ରାଜୁଏଟ୍ । ସେମାନେ ଜାତୀୟତା ଭାବରେ ଅନୁପ୍ରାଣିତ ହୋଇଥିଲେ । ଓଡ଼ିଆମାନଙ୍କ ଉନ୍ନତି ବିଧାନ ସକାଶେ ସେମାନେ ଅନେକ କାର୍ଯ୍ୟ କରୁଥାନ୍ତି । ସଂସ୍କାରକ ଶ୍ରୀବତ୍ସ ପଣ୍ଡା ଏବଂ ଖ୍ୟାତନାମା ସମ୍ପାଦକ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରେରଣାରେ ଖଲିକୋଟର ତତ୍‌କାଳୀନ ବଦାନ୍ୟରାଜା ହରିହର ମର୍ଦ୍ଦରାଜଙ୍କ ଆନୁକୂଲ୍ୟରେ ଓଡ଼ିଆମାନଙ୍କର ଏକ ସଭା ପ୍ରଥମେ ରମ୍ଭା ରାଜ ପ୍ରାସାଦରେ ହୋଇଥିଲା । କଟକରୁ ଉତ୍କଳ ଗୌରବ ମଧୁସୂଦନ **ଦାସ** ନିମନ୍ତ୍ରିତ ହୋଇ ଆସିଥିଲେ । ଓଡ଼ିଆମାନଙ୍କ ସର୍ବବିଧ ଉନ୍ନତି ତଥା ସମଗ୍ର ଉତ୍କଳ**ଭାଷୀ** ଅଞ୍ଚଳ ଏକ ଶାସନାଧୀନ କରିବାପାଇଁ ଆନ୍ଦୋଳନ କରିବା ସ୍ଥିର କରାଗଲା । ତା'ର ଫଳ ସ୍ୱରୂପ ବ୍ରହ୍ମପୁରରେ ସେହି ବର୍ଷ (୧୯୦୨) ପ୍ରଥମ ଉତ୍କଳ ସମ୍ମିଳନୀ ଅନୁଷ୍ଠିତ ହେଲା ।

ସାକ୍ଷୀଗୋପାଳରେ ପରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦ୍ୱାରା ସତ୍ୟବାଦୀ ବନ

ବିଦ୍ୟାଳୟ ନାମକ ଏକ ଅଭିନବ ଶିକ୍ଷାନୁଷ୍ଠାନ ସ୍ଥାପିତ ହୋଇଥିଲା । ଉକ୍ତ ବିଦ୍ୟାଳୟରେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ କୃପାସିନ୍ଧୁ ମିଶ୍ର, ପଣ୍ଡିତ ଗୋଦାବରୀଶ ମିଶ୍ର ଶିକ୍ଷକତା କରୁଥିଲେ । ଏମାନେ ସମସ୍ତେ ଏମ୍.ଏ. ପାଶ୍ କରିଥିଲେ ସୁଦ୍ଧା ସରକାରୀ ଚାକିରୀରେ ଯୋଗ ଦେଲେ ନାହିଁ । ପଣ୍ଡିତ ଗୋପବନ୍ଧୁଙ୍କ ପ୍ରେରଣାରେ ଦେଶସେବା ବ୍ରତରେ ଅନୁପ୍ରାଣିତ ହୋଇଥିଲେ । ବହୁ ତ୍ୟାଗ ସ୍ୱୀକାର କରି ସାମାନ୍ୟ କିଛି ପାରିଶ୍ରମିକ ନେଇ ଶିକ୍ଷା ବିସ୍ତାର କାର୍ଯ୍ୟରେ ଲାଗିପଡ଼ିଥିଲେ । ଋଷି ପ୍ରତିମ ଆଚାର୍ଯ୍ୟ ହରିହର ଦାଶ ଛାତ୍ରମାନଙ୍କରଚରିତ୍ର ଗଠନ ପ୍ରତି ବିଶେଷ ଧ୍ୟାନ ଦେଉଥିଲେ । କ୍ରମଶଃ ଏହି ବିଦ୍ୟାଳୟର ଆଦର୍ଶ ଭାରତର ବିଭିନ୍ନ ପ୍ରଦେଶରେ ଖ୍ୟାତି ଲାଭ କରିଥିଲେ । ଏହି ବିଦ୍ୟାଳୟର ଛାତ୍ର ତଥା ଶିକ୍ଷକ ଗଣ, ସାହିତ୍ୟ ସୃଷ୍ଟି, ଦରିଦ୍ର ଜନସେବା, ବଢ଼ି, ମରୁଡ଼ି ବେଳେ ସାହାଯ୍ୟ ଓ ଦେଶମିଶ୍ରଣ ଆନ୍ଦୋଳନରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ପ୍ରଚାରକ ଅନନ୍ତ ମିଶ୍ରେ ସମଗ୍ର ପ୍ରଦେଶରେ ବୁଲି ଦେଶମିଶ୍ରଣ ବାର୍ତ୍ତା ପ୍ରଚାର କରୁଥିଲେ ।

ଶ୍ରୀବତ୍ସ ପଣ୍ଡା ସରକାରଙ୍କ ଚାକିରୀରେ ଥାଇ ସୁଦ୍ଧା ଓଡ଼ିଆ ଆନ୍ଦୋଳନରେ ବିଶେଷ ଅଂଶ ଗ୍ରହଣ କରୁଥିଲେ । ସେ ସବ୍‌ରେଜିଷ୍ଟ୍ରର୍ କାମରେ ଥାଇ ବିଭିନ୍ନ ସ୍ଥାନରେ ଶିକ୍ଷାନୁଷ୍ଠାନ ବିଶେଷତଃ ବାଳିକା ବିଦ୍ୟାଳୟମାନ ସ୍ଥାପନ କରୁଥିଲେ । ସେ ଜଣେ ଅସାଧାରଣ ଦେଶପ୍ରେମୀ, ସମାଜ ସଂସ୍କାରକ, ଶିକ୍ଷାନୁରାଗୀ, ଏବଂ ଦେଶ ମିଶ୍ରଣ ଆନ୍ଦୋଳନର ପ୍ରଧାନ ଉଦ୍ୟୋକ୍ତା ଥିଲେ । ଗୋବରାଠାରେ ଏକ ଉନ୍ନତ ଧରଣର ଶିକ୍ଷାନୁଷ୍ଠାନ ସ୍ଥାପନ କରିବା ଉଦ୍ଦେଶ୍ୟରେ ମୋ ସାନ ଦଦାଙ୍କ ନାମରେ ମଞ୍ଜୁର ହୋଇଥିବା ପ୍ରାଥମିକ ବିଦ୍ୟାଳୟଟି ସେ ନିଜ ହାତକୁ ନେଇ ତା'ର ଉନ୍ନତି ସାଧନ କରିବାପାଇଁ ଯତ୍ନ କଲେ । ନନାଙ୍କ ସାଙ୍ଗରେ ତାଙ୍କର ଆଗରୁ ପରିଚୟ ଓ ସଦ୍‌ଭାବ ଥିଲା । ନନା, ବାସୁଦେବପୁରର ଗୋବିନ୍ଦ ଶତପଥୀ ଏବଂ ସତ୍ୟବାଦୀ ତ୍ରିପାଠୀ ଗାଁ ଗାଁ ବୁଲି ଏଥିପାଇଁ ଅର୍ଥ ସଂଗ୍ରହ କଲେ । ସଡ଼କ ନିକଟରେ ସ୍କୁଲ ଘର ତିଆରି ହେଲା । ପଣ୍ଡାବାବୁ ମଧ ବହୁତ ଅର୍ଥ ସାହାଯ୍ୟ କଲେ । ସୁଦୂର ବାଙ୍କୀରୁ କ୍ଷେତ୍ରବାସୀ ପ୍ରଧାନ ନାମକ ଜଣେ ମାଟ୍ରିକୁଲେଟ୍ ଶିକ୍ଷକଙ୍କୁ ଆଣି ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତି କରାଗଲା । ଶିକ୍ଷକମାନଙ୍କ ମାସିକ ଦରମା ପଣ୍ଡାବାବୁ ନିଜେ ବହନ କରନ୍ତି । ତାଙ୍କର ଉଦ୍ଦେଶ୍ୟ ଥିଲା ଗୋପବନ୍ଧୁ ବାବୁଙ୍କ ସତ୍ୟବାଦୀ ବିଦ୍ୟାଳୟ ଧରଣରେ ଏହି ବିଦ୍ୟାଳୟଟି ଗଠନ କରିବା, କିନ୍ତୁ ସ୍ଥାନୀୟ ପରିସ୍ଥିତିରେ ତାହା ସମ୍ଭବ ହୋଇ ପାରିଲା ନାହିଁ । ସେ ନିଜେ ସରକାରୀ ଚାକିରିରେ ଥିବା ଯୋଗୁଁ ଗୋପବନ୍ଧୁ ବାବୁ ପ୍ରଭୃତିଙ୍କ ପରି ପୂରା ସମୟ ଦେଇ କାମ କରିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ଯାହାହେଉ ଗୋଟିଏ ଉଚ୍ଚ ଧରଣର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଭାବରେ ସେ ଚକଡ଼ାରେ ଏହାର ଖ୍ୟାତି ଥିଲା । ନାନା ଆଡୁ ବହୁ ଛାତ୍ର ଆସି ଯୋଗ ଦେଲେ । ପ୍ରଧାନ ଶିକ୍ଷକ କ୍ଷେତ୍ରବାସୀ ପ୍ରଧାନ, ସହକାରୀ ଦୁର୍ଗାମାଧବ

ପଟ୍ଟନାୟକ ପ୍ରଭୃତିଙ୍କ ତୀବ୍ର ଶାସନ ଓ ନିରଳସ ଶିକ୍ଷାଦାନ ଫଳରେ ବିଦ୍ୟାଳୟର କାର୍ଯ୍ୟ ପ୍ରଶଂସନୀୟ ହୋଇଉଠିଲା । ଆମେ କେତେଜଣ ଏହି ବିଦ୍ୟାଳୟର ପଞ୍ଚମ ଶ୍ରେଣୀର ପ୍ରଥମ ଦଳ । ପ୍ରଧାନ ଶିକ୍ଷକ କ୍ଷେତ୍ରବାସୀ ପ୍ରଧାନଙ୍କ ଶିକ୍ଷାଦାନରେ ଆମ୍ଭେମାନେ ଇଂରାଜୀ, ଓଡ଼ିଆ, ଇତିହାସ, ବିଜ୍ଞାନ ଓ ଭୂଗୋଳ ପ୍ରଭୃତି ବିଷୟରେ ଯାହାସବୁ ଶିକ୍ଷାଲାଭ କରିଥିଲୁ, ତା' ମେଟ୍ରିକ୍ୟୁଲେସନ ପର୍ଯ୍ୟନ୍ତ ସାହାଯ୍ୟ କରିଥିଲା । ମୁଁ ଗଣିତରେ ଦୁର୍ବଳ ଥାଏ । ମୋର ସହପାଠୀ ରାମଚନ୍ଦ୍ର ଶତପଥୀ, ରଘୁନାଥ ପାତ୍ର ଏବଂ ମୋ ପିଉସୀ ପୁଅ ଭାଇ ଭଜରାମ ପଟ୍ଟନାୟକ ମତେ ଗଣିତରେ ସାହାଯ୍ୟ କରୁଥାନ୍ତି । ଅନ୍ୟାନ୍ୟ ବିଷୟରେ ମୁଁ ସମସ୍ତଙ୍କ ଅପେକ୍ଷା ଭଲ କରୁଥାଏ । ସ୍କୁଲରେ ସାପ୍ତାହିକ ସଭା ମାନଙ୍କରେ ଭାଷଣ ଦେବା ଓ ବାଦାନୁବାଦ କରିବା ଅଭ୍ୟାସ କରାଯାଉଥାଏ ।

ଏଠାରେ ପାଠ ପଢ଼ିବା ସମୟରେ ଉତ୍କଳ ସମ୍ମିଳନୀ ପ୍ରଚାରକ ଅନନ୍ତ ମିଶ୍ର ପ୍ରଚାର କାର୍ଯ୍ୟରେ ଆସିଥିଲେ । ସ୍କୁଲ ଘରେ ସଭା ହେଲା । ଗୋବରା ଏବଂ ଆଖ ପାଖ ଗାଁ ମାନଙ୍କରୁ ବହୁତ ଲୋକ ଆସି ଯୋଗ ଦେଇଥିଲେ । ପ୍ରଚାରକ ଅନନ୍ତ ମିଶ୍ର ଜଣେ ନାତି ଉଚ୍ଚ ନାତି ଖର୍ବ ବ୍ୟକ୍ତି । ଗୌରବର୍ଣ୍ଣ । ମୁଖଶ୍ରୀ ଦୀର୍ଘ ଶ୍ମଶ୍ରୁ ବିମଣ୍ଡିତ, କଷାୟ ବସନ ପରିହିତ, ଗଳାରେ ଏକ ବଡ଼ ରୁଦ୍ରାକ୍ଷମାଳ । ତାଙ୍କର ଭାଷଣ ଚାତୁରୀ ଓ ପ୍ରଗଳ୍‌ଭତାରେ ସମସ୍ତେ ମୁଗ୍‌ଧ ହେଉଥିଲେ । ଏ ଅଞ୍ଚଳରେ ଏପରି ସଭାର ଆୟୋଜନ କରି ଜାତୀୟ ଭାବ ଜାଗରଣ କରିବାଭଳି ଉଦ୍ୟମ ହେଉଛି ଏହା ପ୍ରଥମ । ଆମେ ସବୁ ଆଚମ୍ବିତ ହୋଇ ତାଙ୍କୁ ଅନାଇ ରହିଥାଉ । ତାଙ୍କର ସେ ଭାଷଣ ଆମ୍ଭମାନଙ୍କ ମନରେ ଜାତୀୟତା ଭାବର ଅଙ୍କୁର ଜାତ କରାଇଥିଲା । ସେ ସମୟରେ ମୁଁ ଏବଂ ମୋର ପିଉସୀ ପୁଅ ଭଜରାମ ଗୋଟିଏ ଗୋଟିଏ ଲମ୍ୱା ପେଣ୍ଟ ପିନ୍ଧି ସ୍କୁଲକୁ ଆସୁଥାଉଁ । ଦଦା କେଉଁଠାରୁ ଆମ ଦୁହିଁଙ୍କ ପାଇଁ ଏହି ପ୍ୟାଣ୍ଟ୍ ଆଣି ଦେଇଥିଲେ । ମଫସଲ ଗାଁରେ ନାଟ ଯାତ୍ରାରେ ସୁଆଙ୍ଗମାନଙ୍କ ଛଡ଼ା ଅନ୍ୟ କେହି ଏପରି ପ୍ୟାଣ୍ଟ ପିନ୍ଧୁ ନଥିଲେ । ପ୍ରଚାରକ ମହାଶୟ ଆମର ପ୍ୟାଣ୍ଟ୍ ଦେଖି ଦଦାଙ୍କୁ କହିଲେ, ''ଏମାନଙ୍କୁ କାହିଁକି ଏସବୁ ପିନ୍ଧାଉଛ ? ଏହାଦ୍ୱାରା ଆମର ଜାତୀୟତା ନଷ୍ଟ ହେଉଛି ।'' ଏକଥା ଆମ କାନରେ ପଡ଼ିଥିଲା । ସେହିଦିନୁ ଜୀବନବ୍ୟାପୀ ମୁଁ ଆଉ କେବେ ପ୍ୟାଣ୍ଟ ବ୍ୟବହାର କରିନାହିଁ ।

## ଉଚ୍ଚଶିକ୍ଷା

ପ୍ରାଥମିକ ଶିକ୍ଷାରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୋଇ ରସୁଲକୋଣ୍ଡା ଉଚ୍ଚ ବିଦ୍ୟାଳୟରେ ଯୋଗଦେବାକୁ ଗଲୁ । ଏଠାରେ ସହପାଠୀ ମାନଙ୍କ ମଧ୍ୟରୁ କେବଳ ରାମଚନ୍ଦ୍ର ଶତପଥୀ ମୋ ସାଙ୍ଗରେ ଗଲେ । ଅନ୍ୟମାନେ କିଏ କେଉଁଠାକୁ ଗଲେ, କେହି

ବା ପାଠ ଛାଡ଼ି ଘର କାମରେ ଲାଗିଲେ । ୧୯୧୫-୧୬ରେ ରସୁଲକୋଣ୍ଡା ଉଚ୍ଚ ବିଦ୍ୟାଳୟରେ ଷଷ୍ଠ ଶ୍ରେଣୀରେ ଯୋଗ ଦେଲୁ । ବହୁଦିନରୁ ପ୍ରତିଷ୍ଠିତ ମଧ୍ୟ ଇଂରାଜୀ ବିଦ୍ୟାଳୟ ସେହି ବର୍ଷ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇଛି । ଶ୍ରୀରାମଚନ୍ଦ୍ର ଆଚାର୍ଯ୍ୟ ମୋର କ୍ଲାସ୍ ଶିକ୍ଷକ । କଲେଜ ଛାଡ଼ିବା ସଙ୍ଗେ ସଙ୍ଗେ ଶିକ୍ଷକ ରୂପେ ଯୋଗ ଦେଇଛନ୍ତି । ଆଇ.ଏ.ଫେଲ୍ ହୋଇଥିଲେ । ଧୀର, ସ୍ଥିର ଏବଂ ମଧୁର କୋମଳଭାଷୀ । ଓଡ଼ିଆ ସାହିତ୍ୟରେ ବିଚକ୍ଷଣ ଜ୍ଞାନ । ପରବର୍ତ୍ତୀ କାଳରେ ଘରୋଇ ଭାବରେ ପରୀକ୍ଷା ଦେଇ ବି.ଏ.ପାଶ୍ କରିଥିଲେ ଏବଂ ବହୁ ପୁସ୍ତକ ପ୍ରଣୟନ କରି ଉତ୍କଳରେ ଜଣେ ବିଶିଷ୍ଟ ସାହିତ୍ୟିକ ରୂପେ ଖ୍ୟାତି ଲାଭ କରିଥିଲେ । ଶ୍ରେଣୀର ଅବସର ସମୟ ମାନଙ୍କରେ ନାନା ପ୍ରକାର ଗଳ୍ପ କହି ଆମ୍ଭମାନଙ୍କର ମନୋରଞ୍ଜନ କରିଥାନ୍ତି ଏବଂ ହସେଇ ହସେଇ ଗଡ଼େଇ ଦିଅନ୍ତି । କିନ୍ତୁ ସେ କେବେ ହସନ୍ତି ନାହିଁ । ବ୍ରହ୍ମପୁରର ବିଖ୍ୟାତ ଆଚାର୍ଯ୍ୟ ବଂଶରେ ତାଙ୍କର ଜନ୍ମ । ସୁବିଖ୍ୟାତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ ତାଙ୍କରି ବଂଶର । ମାଷ୍ଟ୍ରେ ପ୍ରତିଦିନ ଆମିଷ ଭକ୍ଷଣ ବିରୋଧରେ କହନ୍ତି । ତାଙ୍କଠାରୁ ଶୁଣି ଶୁଣି ମୁଁ ଆମିଷ ତ୍ୟାଗ କରିଥିଲି । ନାନା ପ୍ରକାର ନୀତିଶିକ୍ଷା ଦିଅନ୍ତି । କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କ "ବ୍ରହ୍ମଚର୍ଯ୍ୟ" ବହିଟି ତାଙ୍କରି ପ୍ରେରଣାରୁ ପଢ଼ିଥିଲି । ମୋହ ମୁଦ୍‌ଗର ଓ ମୋହ କୁଠାର ଏବଂ ଭବାନ୍ୟଷ୍ଟକ କଣ୍ଠସ୍ଥ କରିଥିଲି । ଅନ୍ୟ କେତେଜଣ ମଧ୍ୟ କଣ୍ଠସ୍ଥ କରିଥିଲେ । ମୁଁ ଶ୍ରେଣୀରେ ପ୍ରାୟ ପ୍ରଥମସ୍ଥାନ ଅଧିକାର କରିଥାଏ । ଗଣିତରେ ମଧ୍ୟ ମୋର ଆଗ୍ରହ ବଢ଼ିଲା । ପ୍ରତ୍ୟେକ ପରୀକ୍ଷାରେ ଶତକରା ୯୦ ରଖେ । ମୋର ସହପାଠୀ ରାମଚନ୍ଦ୍ର ଶତପଥୀ କହନ୍ତି, "ଗାଁରେ ପଢ଼ିବାବେଳେ ଗଣିତ କିଛି ଆସୁ ନଥିଲା । ଆମେ ଶିଖାଉଥିଲୁ, ଏବେ ସେ ଆମମାନଙ୍କଠୁଁ ବଳିପଡୁଛି ।"

ଫାଷ୍ଟ ଫାର୍ମରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ସେକଣ୍ଡ ଫାର୍ମକୁ ଗଲି । ଏ ଶ୍ରେଣୀର ଶିକ୍ଷକ ଅନନ୍ତରାମ ପଟ୍ଟନାୟକ । ଓଡ଼ିଆ ସାହିତ୍ୟ ଓ ରାଜନୀତିରେ ବିଚକ୍ଷଣ । ମୋର ଦେଶପ୍ରୀତି ତାଙ୍କର ଶିକ୍ଷାରୁ ଜାତ ହୋଇଥିଲା । ସେ ମୋର ଦଦା ଦୁର୍ଗାମାଧବଙ୍କର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ସହପାଠୀ ଥିଲେ । ସେଥିଯୋଗୁଁ ସେ ମୋ ପ୍ରତି ତୀବ୍ର ଦୃଷ୍ଟିରଖି ନାନା ବିଷୟରେ ଶିକ୍ଷା ଦେଉଥିଲେ । ସାପ୍ତାହିକ ସଭା ସମ୍ମିଳନୀରେ ସଭାପତିତ୍ୱ କରି ସୁନ୍ଦର ଭାଷଣ ଦିଅନ୍ତି । ସେ ଆମ୍ଭମାନଙ୍କୁ ସେକଣ୍ଡ ଫାର୍ମରେ (ସପ୍ତମ ଶ୍ରେଣୀ) ଯେଉଁ ଇଂରାଜୀ ବ୍ୟାକରଣ ଶିକ୍ଷା ଦେଇଥିଲେ, ମାଟ୍ରିକ୍ୟୁଲେସନ୍ ଯାଏ ଆଉ ଇଂରାଜୀ ବ୍ୟାକରଣ ଧରିବାକୁ ପଡ଼ି ନ ଥିଲା । ତାଙ୍କର ପାଠପଢ଼ା ଭିନ୍ନ ଧରଣର । ଶ୍ରେଣୀର ପାଠ୍ୟକ୍ରମ ପୂରାପୁରି ଅନୁସରଣ କରି ସେ ପଢ଼ାନ୍ତି ନାହିଁ । ଯେଉଁମାନେ ଯେଉଁ ବିଷୟରେ ଅଗ୍ରଗତି କରୁଥିଲେ, ଅନ୍ୟମାନଙ୍କୁ ଅପେକ୍ଷା ନ କରି ସେ ସେହିମାନଙ୍କୁ ସେହି ବିଷୟରେ ଅଧିକରୁ ଅଧିକ ଶିକ୍ଷା ଦେଉଥାନ୍ତି ।

ଏହିପରି ଭାବରେ ସେ ଆମ ଶ୍ରେଣୀର ଛାତ୍ରମାନଙ୍କୁ ତିନି ଚାରି ଭାଗରେ ବିଭକ୍ତ କରିଥାନ୍ତି । ଥରେ କେବଳ ବ୍ୟାକରଣ ପରୀକ୍ଷା କରିବା ସମୟରେ ପ୍ରଧାନ ଶିକ୍ଷକ ଦୈବାତ୍ ପ୍ରଶ୍ନ ପତ୍ର ଦେଖିଲେ । ସେଥିରେ ଅଳଙ୍କାର ପ୍ରଭୃତି କଷ୍ଟକର ପାଠ୍ୟର ପ୍ରଶ୍ନଥିବା ଦେଖି ପଚାରିଲେ, ''ଏଥିରେ ପିଲାମାନେ କେତେ ନମ୍ବର ରଖିପାରିବେ ?'' ଆମ କ୍ଲାସ ଶିକ୍ଷକ କହିଥିଲେ, ''କେତେ ଅଛନ୍ତି ଶତକରା ଶହେ ରଖିବେ, ଆଉ କେତେକ ଅଛନ୍ତି ଯେଉଁମାନେ କି ଶତକରା ଶୂନ ରଖିବେ ।'' ଉତ୍ତର କାଗଜ ପ୍ରଧାନ ଶିକ୍ଷକ ଦେଖିବାକୁ ଚାହିଁଥିଲେ । ମୋର ଥିଲା ଶତକରା ଅନେଶତ । ସେହିଦିନୁ ପ୍ରଧାନ ଶିକ୍ଷକଙ୍କର ମୋ ପ୍ରତି ଏକ ଉଚ୍ଚଧାରଣା ଜନ୍ମିଥିଲା । ତାଙ୍କ ଶ୍ରେଣୀରେ ମାଟ୍ରିକ୍ୟୁଲେସନ୍ ପଢ଼ିଲା ବେଳେ ସେ ମୋ ରଚନା ସବୁକୁ ପ୍ରଥମ ସ୍ଥାନ ଦେଉଥିଲେ, ପୁଣି କ୍ଲାସ୍‌ରେ କୌଣସି ପ୍ରଶ୍ନର ଉତ୍ତର ସମସ୍ତେ ଦେବାରେ ଅକ୍ଷମ ହେଲେ ଯାଇ ମତେ ପ୍ରଶ୍ନ କରୁଥିଲେ । ସପ୍ତାହରେ ଥରେ ଦୁଇଥର ମାତ୍ର ମତେ ଉତ୍ତର ଦେବାକୁ ସୁଯୋଗ ମିଳେ ।

ମଧ ଇଂରାଜୀ ବିଦ୍ୟାଳୟରେ ପଢ଼ିବାବେଳେ ପ୍ରଧାନ ଶିକ୍ଷକ ଥିବା ବୟୋବୃଦ୍ଧ ଶ୍ରୀନିବାସୀ ରାଓ ଥାର୍ଡ଼ଫାରମ୍‌ରେ ଆମର କ୍ଲାସ ଶିକ୍ଷକ ଥିଲେ । ସେ ବଡ଼ ସାଧୁ, ଦୟାଳୁ, ଧୀର, ସ୍ଥିର । ଛାତ୍ରମାନଙ୍କୁ କେବେ କଡ଼ା କଥା କହିବା ଶୁଣାଯାଇ ନଥିଲା, କି ଦଣ୍ଡଦେବା ଦେଖାଯାଇ ନଥିଲା । ଥରେ ତନଗଡ଼ା ନିବାସୀ ଶିବରାମ ପଟ୍ଟନାୟକ ନାମକ ଜଣେ ଛାତ୍ର ଟିକିଏ ଡେ଼ରିରେ ଆସିବା ପ୍ରଧାନ ଶିକ୍ଷକଙ୍କ ଦୃଷ୍ଟିରେ ପଡ଼ିବାରୁ ସାଙ୍ଗେ ସାଙ୍ଗେ ଆସି ବେଞ୍ଚ ଉପରେ ଠିଆ ହେବାପାଇଁ ଆଦେଶ ଦେଇ ଚାଲିଗଲେ । ଶ୍ରୀନିବାସ ରାଓ ଏହା ଦେଖି ଲସର ପସର ହୋଇ ଦୌଡ଼ିଯାଇ କହିଲେ, *"Sir, Sir, lame boy Sir, will fall down Sir"* । ପ୍ରଧାନ ଶିକ୍ଷକ ବୁଢ଼ା ଶିକ୍ଷକଙ୍କ କଥାରେ ଦୟାପରବଶ ହୋଇ ତଳେ ଛିଡ଼ା କରାଇବାପାଇଁ କହିଲେ, ବୁଢ଼ା ଆଶ୍ୱସ୍ତ ହେଲେ । ତାଙ୍କର ପିଲାମାନଙ୍କ ପ୍ରତି ଏପରି ସ୍ନେହ । ଇଂରାଜୀ ପଦ୍ୟ ବୁଝାଇଲା ବେଳେ ସେ ନାନା ପ୍ରକାର ଅଭିନୟ କରି ବୁଝାନ୍ତି । ଥରେ ଯାହା ବୁଝାଇଥିବେ, ତାହା ସବୁଦିନପାଇଁ ମନେ ରହିଯାଏ । ସେହିବର୍ଷ ଗ୍ରୀଷ୍ମାବକାଶରେ କି ପୁସ୍ତକ ପଢ଼ିବାକୁ ହେବ ବୋଲି ମୁଁ ତାଙ୍କୁ ପଚାରିଲି । ''ସତ୍ୟାର୍ଥ ପ୍ରକାଶ'' ପଢ଼ିବାପାଇଁ ସେ କହିଲେ । ସତ୍ୟାର୍ଥ ପ୍ରକାଶ ଇଂରାଜୀ ସଂସ୍କରଣ ମଗାଇ ପଢ଼ିଲି, ମୋର ସାମାନ୍ୟ ଇଂରାଜୀ ଜ୍ଞାନରେ ତା ବୁଝିବା କଷ୍ଟକର ହୋଇଥିଲା । ତଥାପି ଯାହାକିଛି ବୁଝିଲି, ସେଥିରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ପ୍ରତିଷ୍ଠିତ ଆର୍ଯ୍ୟ ସମାଜ ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲି ।

ଆଉ ଜଣେ ତେଲୁଗୁ ଶିକ୍ଷକ ଥାନ୍ତି । ତାଙ୍କ ନାଁ ନରସିଂହ ରାଓ । ସେ ବଡ଼ ସ୍ୱଭାଷୀପ୍ରେମୀ । ଓଡ଼ିଆମାନଙ୍କୁ ଘୃଣା କରନ୍ତି । ସେତେବେଳେ ଆମର ଦେଶମିଶ୍ରଣ ଆନ୍ଦୋଳନ ଚାଲିଥାଏ । ତେଲୁଗୁ ଭାଷା ଓ ତେଲୁଗୁମାନଙ୍କ ପ୍ରତି ଅନେକ ଆକ୍ରୋଶ

ମୂଳକ ଲେଖା "ଆଶା" ପତ୍ରିକାରେ ପ୍ରକାଶ ପାଉଥାଏ । ସଭା ସମ୍ମିଳନୀ ମାନଙ୍କରେ ଭାଷଣ ହୁଏ । ଏ ମହାଶୟଙ୍କ ପଢ଼ାଇବାରେ ତ୍ରୁଟି ଏବଂ ବହୁ ଛାତ୍ରଙ୍କୁ ଟିଉସନ୍ କରୁଥିବା କଥା ନେଇ ନାନା ପ୍ରକାର ଲେଖା ପ୍ରକାଶ ପାଇଲା । ସେ ଥରେ ଗାର୍ଲ ଶବ୍ଦର ଅର୍ଥ ବୁଝାଇବାକୁ ଯାଇ କହିଲେ "ଏଡ଼େ ଏଡ଼େ ମାଇକଣା ପିଲାମାଣେ" । ଏ ସଂପର୍କରେ "ଆଶା" ପତ୍ରିକାରେ ସମାଲୋଚନା ପ୍ରକାଶିତ ହୋଇଥିଲା । ମୁଁ ଏସବୁ ଲେଖା ଲେଖି କରି "ଆଶା"କୁ ପଠାଉଛି ବୋଲି ତାଙ୍କର ମୋ ପ୍ରତି ସନ୍ଦେହ ହେଲା । ଏତେ ଅଳ୍ପ ବୟସରେ ଛୋଟ କ୍ଲାସ୍‌ରେ ପଢ଼ିବା ବେଳେ ଏସବୁ ଲେଖିବା ମୋ ପକ୍ଷରେ ସମ୍ଭବ ନ ହେଲେ ସୁଦ୍ଧା ତାଙ୍କର ମୋ ପ୍ରତି ଏପରି ଭୁଲ୍ ଧାରଣା ଥିଲା । ସେ ଜଣେ ବଡ଼ କଡ଼ା ଲୋକ । ପିଲାମାନଙ୍କୁ ବହୁତ ମାଡ଼ ଦିଅନ୍ତି । ବିଶେଷତଃ ଯେଉଁମାନେ ତାଙ୍କ ପାଖରେ ଟିଉସନ୍‌ରେ ପଢ଼ିବାକୁ ମଙ୍ଗନ୍ତି ନାହିଁ, ପୁଣି ଓଡ଼ିଆ ପିଲା ହୋଇଥାନ୍ତି, ସେମାନଙ୍କୁ ଅପେକ୍ଷାକୃତ ଅଧିକ ମାଡ଼ ହୁଏ ।

ଜଣେ ପଣ୍ଡିତ ଥିଲେ ସତ୍ୟବାଦୀ ବେଦାନ୍ତ ବାଗୀଶ । ସେ କାଶୀରେ ପଢ଼ିଥିଲେ ବୋଲି କହନ୍ତି । ଓଡ଼ିଆ ସାହିତ୍ୟରେ ଆଦୌ ପ୍ରବେଶ ନ ଥାଏ । ଉଚ୍ଚ ଧୁରନ୍ଧର ପଣ୍ଡିତ । ବହୁ ଉପାଧି, ସ୍ୱର୍ଣ୍ଣପଦକ ଓ ସ୍ୱର୍ଣ୍ଣ ବାହୁବନ୍ଧ ଲାଭ କରିଥାନ୍ତି । କିଛି କାଳପରେ ସେ ପୁରୀ ସଂସ୍କୃତ କଲେଜରେ ଅଧ୍ୟାପକ ଭାବେ ନିଯୁକ୍ତ ହୋଇ ଚାଲି ଯାଇଥିଲେ । ତାଙ୍କର ସମୟରେ ମଧୁସୁଦନ ମିଶ୍ର (ମଙ୍ଗୁ ମିଶ୍ର) ନାମକ ଜଣେ ଗଣିତ ଶିକ୍ଷକ ବର୍ଷକପାଇଁ ଆସିଥିଲେ । ତର୍କତୀର୍ଥ ମହାଶୟେ ଓ ମଙ୍ଗୁ ମିଶ୍ରେ ଅବସର ସମୟ ମାନଙ୍କରେ ସଂସ୍କୃତ ଚର୍ଚ୍ଚା କରନ୍ତି । ଗୁଣୀକୁ ଗୁଣୀ ଚିହ୍ନେ । ମଙ୍ଗୁ ମିଶ୍ରେ ଗଣିତ ଶାସ୍ତ୍ରରେ ବି.ଏ; କିନ୍ତୁ ସର୍ବବିଦ୍ୟା ପାରଙ୍ଗମ । ଏ ଉଭୟଙ୍କ ସଂସ୍କୃତ ଚର୍ଚ୍ଚା ଶୁଣିବାକୁ ବଡ଼ ଭଲ ଲାଗେ । ଆମେ କେତେଜଣ ଝରକା ପାଖରେ କାନ୍ଥ ଉହାଡ଼ରେ ଥାଇ ଶୁଣୁ ।

ବେଦାନ୍ତ ବାଗୀଶଙ୍କୁ ପିଲେ କସି ପଣ୍ଡିତ ବୋଲି ଆଖ୍ୟା ଦେଇଥାନ୍ତି । ଆମେ ଯେତେବେଳେ ଫାଷ୍ଟ ଫାର୍ମରେ ଯୋଗଦେଲୁ, ସେହି ସମୟରେ ଦିନେ ପଣ୍ଡିତେ ଓଡ଼ିଆ ଶ୍ରେଣୀରେ ଭକ୍ତକବି ମଧୁସୂଦନ ରାଓଙ୍କ ସାହିତ୍ୟ ପ୍ରସଙ୍ଗର ଅଧ୍ୟବସାୟ ନାମକ ପାଠ ପଢ଼ାଉଥାନ୍ତି । ସେଥିରେ ଗୋଟିଏ ବାକ୍ୟ "ଆକାଙ୍କ୍ଷିତ ପୁଟ ପରି ଦିଶୁଅଛି" ଲେଖାଅଛି । ଙ ତଳେ କ୍ଷ ଦିଆଯାଇ ଛପାଯାଇଛି । କିନ୍ତୁ ପଣ୍ଡିତେ 'ଙ' କୁ 'ଡ଼' ଜ୍ଞାନକରି ଆକାଡ଼ିକ୍ଷିତ ବୋଲି ଉଚ୍ଚାରଣ କଲେ । ମୋର ସହପାଠୀ ରାମଚନ୍ଦ୍ର ମତେ କହିଲେ, "କ'ଣ ଇମିତି ଉଚ୍ଚାରଣ କରୁଛନ୍ତି ? ଭୁଲ୍‌ଟା କହି ଦେବି କି ?" ମୁଁ କହିଲି, "କହ ।" ରାମଚନ୍ଦ୍ର ଉଠି କହିଲେ, "ଆଜ୍ଞା ପଦଟି ସିମିତି ନୁହେଁ ପରା ।" ଏତିକିରେ ପଣ୍ଡିତେ ରାଗିଯାଇ "ହାତେ ହୁଣ୍ଡା, ତୁ ମତେ ପାଠ ପଢ଼େଇବୁ" କହି ଆସନରୁ ଉଠି ଆସି ରାମଚନ୍ଦ୍ରଙ୍କୁ ନିର୍ଦ୍ଧୁମ ଦଶ ବାରବାଡ଼ି ପିଟି ଦେଇଗଲେ । ଆମେ ଦୁହେଁ ଏକା

ଡେସ୍‌କରେ ବସିଥାଉଁ । ମତେ ମାଡ଼ ବାଜିଯିବା ଭୟରେ ମୁଁ ସଂକୁଚିତ ହୋଇ ବସି ଲୁନ୍ଥ ଲୁନ୍ଥ ଚାହୁଁଥାଏ । ପରଦିନ ଆସି ପଣ୍ଡିତେ ଶବ୍ଦଟି ଶୁଦ୍ଧ ଭାବରେ ଉଚ୍ଚାରଣ କରି ପଢ଼ାଇଲେ । କିନ୍ତୁ ପୂର୍ବଦିନ ଘଟଣା ଘେନି ଟିକିଏ ଦୁଃଖ ପ୍ରକାଶ ମଧ କଲେ ନାହିଁ ।

ତାଙ୍କ ସମୟରେ ଏହିପରି ଅନେକ ଘଟଣା ଘଟିଛି । କିନ୍ତୁ ପିଲାଙ୍କ ପ୍ରତି ତାଙ୍କର ବଡ଼ ଆଦର, ସ୍ନେହ, ସବୁବେଳେ ହସ ହସ ମୁହଁ । ସେ କ୍ଲାସରେ ବହୁ ସମୟ ଦୁର୍ଭାଷା ପ୍ରୟୋଗ କରନ୍ତି । ମୁଁ ସେ ସବୁ ତାରିଖ ପକାଇ ମୋର ଟିପା ଖାତାରେ ଲେଖି ରଖେ । ଦିନେ ରାମଚନ୍ଦ୍ର ମୋର ସେ ଟିପାଖାତା ନେଇ ଦେଖାଇ ଦେଲେ । ପଣ୍ଡିତେ ଦେଖି କହିଲେ, ''ହାଁ, କେଡ଼େ ଗୁଣ ବିକାଶୁଛି ।'' ବାସ୍, ଏତିକି ।

ନୀଳମଣି ବେହେରା ଆମର ଡ୍ରଇଁ ମାଷ୍ଟର୍ । ସେ ଜାତିରେ ଭଣ୍ଡାରୀ । ବଡ଼ ଅହଂକାରୀ । ଡ୍ରଇଂ ପରୀକ୍ଷଣୀୟ ବିଷୟ ନୁହେଁ । ତେଣୁ ପିଲାଏ ସେଥିପ୍ରତି ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ । ମାଷ୍ଟ୍ରେ କିନ୍ତୁ ଅତି ସାମାନ୍ୟ କଥାରେ ପିଲାଙ୍କୁ ଦଣ୍ଡ ଦିଅନ୍ତି । ପିଲାଏ ତାଙ୍କୁ ଅବମାନନା କରିଥିବା ଦେଖାଯାଇଥାଏ । ଦିନେ ମୋର ସହପାଠୀ ସୂର୍ଯ୍ୟ ନାରାୟଣ ପଟ୍ଟନାୟକ କ୍ଲାସ୍‌ରେ ବସି ଭଣ୍ଡାରୀମାନେ ଖୁର ଘସିଲା ପରି ଅଭିନୟ କଲା । ମାଷ୍ଟ୍ରଙ୍କ ଦୃଷ୍ଟି ପଡ଼ିଲା, କ'ଣ କରିବେ ? କିଛି ଉପାୟ ନଦେଖି ପ୍ରତ୍ୟେକ ପିଲାଙ୍କ ନିକଟକୁ ଯାଇ ଡ୍ରଇଁ ଖାତା, ପେନ୍‌ସିଲ୍, ରବର୍ ଇତ୍ୟାଦି ଅଛି କି ନାହିଁ ତନଖି କଲେ । କାହାର ଖାତା ଅଛି ତ ପେନ୍‌ସିଲ୍ ନାହିଁ, କାହାର ବା ରବର ନାହିଁ । ସମସ୍ତଙ୍କୁ ବେଞ୍ଚ ଉପରେ ଠିଆ ହେବାକୁ ଆଦେଶ ଦେଲେ । କେହି ହେଲେ ଠିଆ ହେଲେ ନାହିଁ । ରାଗରେ ସମସ୍ତଙ୍କୁ କ୍ଲାସ୍‌ରୁ ବାହାରି ଯିବାକୁ କହିଲେ । ବଡ଼ ଆନନ୍ଦର କଥା । ସମସ୍ତେ ବହି ପତ୍ର ଧରି ଡ଼ିଆଁମାରି ଚାଲିଗଲେ । ଜାଲରେ ପଡ଼ିଥିବା କପୋତମାନେ ଜାଲକୁ ଧରି ଏକ ସମୟରେ ଉଡ଼ି ପଳାଇବାର ଦେଖି ବ୍ୟାଧ ଯେପରି ଆଁ କରି ଚାହିଁ ରହିଲା ସେହିପରି ଶିକ୍ଷକ ମହାଶୟ୍ କେତେକ୍ଷଣ ଆମକୁ ଚାହିଁ ରହିଲେ । ଶେଷରେ ପ୍ରଧାନ ଶିକ୍ଷକଙ୍କ ଠାରେ ରିପୋର୍ଟ କଲେ । ପ୍ରଧାନ ଶିକ୍ଷକ ତ ଭାରି ଉଦାର । ସେ ତାଙ୍କୁ କିଛି ଉପଦେଶ ଦେଇ ଫେରାଇ ଦେଲେ । ପିଲାମାନଙ୍କ ପ୍ରତି କୌଣସି ଦଣ୍ଡବିଧାନ କଲେ ନାହିଁ ।

ଡ୍ରିଲ୍ ମାଷ୍ଟର ଖୁଦ୍ଦୁରତୁଲ୍ଲା, ମୁସଲମାନ । ଦୀର୍ଘକାୟ, ସୁଗଠିତ ବପୁ, ସୁନ୍ଦର ଚେହେରା, ଡ୍ରିଲ୍ ଓ ବ୍ୟାୟାମ ଭଲ ଜାଣନ୍ତି । ମୁଁ ଟିକିଏ ଡ୍ରିଲ୍ ଓ ବ୍ୟାୟାମ କୁଣ୍ଠିତ । ପ୍ରାୟ ପ୍ରତ୍ୟେକ ଡ୍ରିଲ୍ କ୍ଲାସ୍‌ରୁ ଖସିଯିବା ଛଳନା କରି ଦୁଇ ଆଙ୍ଗୁଠି ଦେଖାଇ ଚାଲିଯାଏ । ସେ ମତେ ସମୟେ ସମୟେ କହନ୍ତି ''କିରେ ଡ୍ରିଲ୍ କରୁନାହୁଁ ପରା ? ବୁଢ଼ା ହେଲା ବେଳୁ ତୋ ଅଣ୍ଟା ନଇଁଯିବ ଯେ । ଦେଖୁଛୁ ନା ? ମୁଁ ବୁଢ଼ା ହେଲିଣି, କିମିତି ଛାଟ ପରି ଚାଲୁଛି ।'' ଡ୍ରିଲ୍ କ୍ଲାସ୍‌ରେ ଦିନେ ପିଲାଙ୍କୁ ଧାଡ଼ିକରି ଠିଆ

କରାଯାଉଥିଲା । ମୁଁ ଅନ୍ୟମନସ୍କ ହୋଇ ଠିଆ ହୋଇଛି । ମୋର ଉଭୟ ପାର୍ଶ୍ୱରେ ଦୁଇଜଣ ଉଚ୍ଚ ପିଲା । ମାଷ୍ଟ୍ରେ ଆସି କହିଲେ, ''କିରେ ତତେ ଦିଶୁନାହିଁ କିରେ ? ଇମିତି କ'ଣ ଠିଆ ହୋଇଛୁ ?'' ମୁଁ ହଠାତ୍ କହିଦେଲି ''ଆରେ ହ୍ୟାପ । ଥରେ ଇଆଡୁ ଥରେ ସିଆଡୁ କ'ଣ ବଢ଼ସାନ କରି ଠିଆ କରାଯାଇଛି ।'' ମାଷ୍ଟ୍ରେ ରାଗିଯାଇ କହିଲେ, ''ହ୍ୟାପ କାହାକୁ କହିଲୁ ?'' ମୁଁ କହିଲି, ''କାହାକୁ ନାହିଁ । ଏ ଶବ୍ଦ କାହାକୁ ଲକ୍ଷ୍ୟକରି କୁହାଯାଏ ନାହିଁ । ହାତରୁ କୌଣସି ଜିନିଷ ଖସି ପଡ଼ିଗଲାତ ଲୋକେ କହନ୍ତି ଆରେ ହ୍ୟାପ ପଡ଼ିଗଲା । ଏହି ଭାବରେ ଏ ଶବ୍ଦ ପ୍ରୟୋଗ କରାଯାଇଥାଏ ।'' ସେ କହିଲେ, ''ତୁ ମତେ ଓଡ଼ିଆ ପାଠ ପଢ଼ାଉଛୁ ?'' ମୁଁ କହିଲି, ''ପାଞ୍ଚ ଛ ବର୍ଷ ପଢ଼ାଇ ପାରିବି ।'' ନିକଟରେ ବଳଭଦ୍ର ପଟ୍ଟନାୟକ ନାମକ ଜଣେ ଅବସର ପ୍ରାପ୍ତ ଶିକ୍ଷକ ଠିଆ ହୋଇଥିଲେ । ତାଙ୍କୁ ପଚାରିବାରୁ ସେ ମୋ କଥାକୁ ସମର୍ଥନ କଲେ । ମାଷ୍ଟ୍ରେ ତୁନି ହେଲେ ସିନା ପ୍ରତିଶୋଧ ନେବା ଇଚ୍ଛାଟି ରହିଥାଏ । ପରେ ଗୋଲାକାରରେ ପିଲାଙ୍କୁ ଦଉଡ଼ାଇଲେ । ପିଲେ ହସି ହସି ଦୌଡୁଥାନ୍ତି । ମୁଁ ମଧ ହସିଲି । ମୋ ପାଖକୁ ରାଗରେ ଆସି କହିଲେ, ''କାଣେ ହସୁଛୁବେ ?'' ''ମୁଁ କହିଲି ସମସ୍ତେ ହସୁଛନ୍ତି ।'' ପୂର୍ବରୁ ପ୍ରତିହିଂସା ସାଧନ କରିବା ଉଦ୍ଦେଶ୍ୟରେ ମତେ କ୍ଲାସରୁ ଅନ୍ତର ହେବାକୁ କହିଲେ । ମୁଁ ବାହାରି ଗଲି । ସେ କ୍ଲାସ ଭାଙ୍ଗି ଦେଇ ପ୍ରଧାନ ଶିକ୍ଷକଙ୍କୁ ଏକଥା ରିପୋର୍ଟ କରିବାକୁ ଗଲେ ।

ସେ ବର୍ଷ ମୋର ମାଟ୍ରିକ୍ୟୁଲେସନ୍ କ୍ଲାସ୍ । ସ୍କୁଲରେ ପଢ଼ିବାଠୁଁ କେବେ କିଛି ଦଣ୍ଡ ଭୋଗି ନାହିଁ । ପ୍ରଧାନ ଶିକ୍ଷକ ଆସି କ୍ଲାସ୍‌ରେ ଯଦି କିଛି ଦଣ୍ଡ ଦିଅନ୍ତି ଅପମାନ ହେବ । ମୁଁ ସକାଳେ ପ୍ରଧାନ ଶିକ୍ଷକଙ୍କ ଠାକୁ ଗଲି । ବାଟରେ ତାଙ୍କୁ ଆସୁଥିବା ଦେଖି ଡ୍ରିଲ୍ କ୍ଲାସ ଘଟଣା କହିଲି । ସେ ସବୁ କଥା ଶୁଣିଲେ ଏବଂ ମାଷ୍ଟର୍‌ମାନଙ୍କୁ ସମ୍ମାନ ଦେବାକୁ ହେବ ବୋଲି ଉପଦେଶ ଦେଲେ । ଆଉ କିଛି ଦଣ୍ଡ ଦେଲେ ନାହିଁ । ଡ୍ରିଲ୍ ମାଷ୍ଟ୍ର ମତେ କିଛି ଦଣ୍ଡ ଦିଆଯାଇ ନଥିବା ଜାଣି ମଧ ମତେ ସବୁବେଳେ ବଡ଼ ଆଦର ଦୃଷ୍ଟିରେ ଦେଖୁଥିଲେ ।

ଫୋର୍ଥଫାର୍ମକୁ ଗଲୁ । କ୍ଲାସ ଶିକ୍ଷକ ଶ୍ରୀକଣ୍ଠ ଶତପଥୀ । ବଡ଼ ନୀତିବାନ, ନିରଳସ ଓ ଅଧବସାୟୀ । ଛାତ୍ରମାନଙ୍କ ଚରିତ୍ର ଗଠନ ପ୍ରତି ତୀବ୍ର ଦୃଷ୍ଟି ଦେଇଥାନ୍ତି । ଗ୍ରୀଷ୍ମାବକାଶରେ ପଢ଼ାପଢ଼ି କରିବାପାଇଁ ଲାଇବ୍ରେରୀରୁ ପୁସ୍ତକ ଆଣିବାପାଇଁ ଯାଇଛି । ସେ ସେଠାରେ ବସିଥିଲେ । କି ପୁସ୍ତକ ନେବ ବୋଲି ପଚାରିଲେ । ମୁଁ କହିଲି ସ୍କଟ୍‌ସ୍ ନଭେଲ୍ । ସେ କହିଲେ, ''ବାଃ ଫୋର୍ଥଫାର୍ମ ପିଲାଙ୍କୁ ଦେଖ । ସ୍କଟ୍‌ସ୍ ନଭେଲ୍ ଦେଖ'' । ମୁଁ ଲଜ୍ଜିତ ହୋଇ ତାଙ୍କରି ପରାମର୍ଶ ଲୋଡ଼ିଲି । ସେ କହିଲେ ''ନିଅ *Cobbet's Abvice to Young Man* । ମୁଁ ସେ ବହି ଆଣି ଛୁଟିରେ ନିବିଷ୍ଟ ମନରେ

ପଢ଼ିଲି । ବାସ୍ତବିକ ଏହି ପୁସ୍ତକ ମୋ ଜୀବନରେ ବିଶେଷ ପରିବର୍ତ୍ତନ ଆଣି ଦେଇଥିଲା । ସେଥିଯୋଗୁଁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ । ସେ କ୍ଲାସରେ ଭଲ ପଢ଼ାନ୍ତି । ଖାଲି ବୁଦ୍ଧି ଅପେକ୍ଷା ସେ ଅଧ୍ୟବସାୟ ପ୍ରତି ବିଶେଷ ଗୁରୁତ୍ୱ ଦେଇଥାନ୍ତି । ସେହିବର୍ଷ ପରୀକ୍ଷାରେ ମୁଁ ଇଂରେଜୀ ପ୍ରଥମ କାଗଜ (ପାଠ୍ୟପୁସ୍ତକ ଗତ ପ୍ରଶ୍ନ)ରେ ଦ୍ୱିତୀୟ ସ୍ଥାନ ପାଇଲି ଏବଂ ଦ୍ୱିତୀୟ ପ୍ରଶ୍ନପତ୍ରରେ ପ୍ରଥମ ସ୍ଥାନ ପାଇଲା ଜଣେ ତେଲୁଗୁ ପିଲା । ଏଥିରୁ ଜଣାଯାଏ ଯେ, ଓଡ଼ିଆ ପିଲେ ଅଳସୁଆ, ପରିଶ୍ରମ କରନ୍ତି ନାହିଁ । ପାଠ୍ୟ ପୁସ୍ତକ ଭଲଭାବେ ପଢ଼ନ୍ତି ନାହିଁ । ମୋ ଗର୍ବ ଚୂର୍ଣ୍ଣ ହେଲା । ମୁଁ ଲଜ୍ଜିତ ହେଲି । ବାସ୍ତବିକ ସେ ଜଣେ ପ୍ରଗାଢ଼ ଅଧ୍ୟବସାୟୀ । ମାଟ୍ରିକ୍ୟୁଲେସନ୍ ପରେ ଚାକିରୀ କରି ଘରୋଇ ଭାବେ ପରୀକ୍ଷା ଦେଇ ବି.ଏ ପାଶ୍ କରିଥିଲେ । କ୍ଲାସ୍‌ରେ କୌଣସି ପିଲା ହାଇମାରିବା ଅଳସ ଭାଙ୍ଗିବା ଦେଖିବା ମାତ୍ରେ ଟେବୁଲ୍‌କୁ ବାଡ଼େଇ ତାକୁ ଚମକାଇ ଦିଅନ୍ତି ଓ ଠିଆ କରାନ୍ତି ।

ବିଜ୍ଞାନ ଶିକ୍ଷକ ସତ୍ୟବାଦୀ ଗନ୍ତାୟତ । ବଡ଼ ସାଧୁ, ସରଳ, ଆଡ଼ମ୍ବର ଶୂନ୍ୟ, କୋମଳ, ମଧୁର ଓ ସ୍ୱଳ୍ପଭାଷୀ । ସେ ପଦାର୍ଥ ଓ ରସାୟନ ବିଜ୍ଞାନ ସଂପର୍କରେ ଶିକ୍ଷା ଦିଅନ୍ତି । ବହୁବର୍ଷ ପରେ ତାଙ୍କର ୮୨ ବର୍ଷ ବୟସ ବେଳେ ଭୁବନେଶ୍ୱରରେ ତାଙ୍କ ସହ ଦେଖା ହୋଇଥିଲା । ତାଙ୍କର ପରିଚୟ ନେଇ ତାଙ୍କ ପାଦତଳେ ମୁଣ୍ଡିଆ ମାରିଲି । ସେ ମୋର ପରିଚୟ ପାଇ ଜଣେ ଛାତ୍ର ବୃଦ୍ଧ ବୟସରେ ମଧ ଗୁରୁଭକ୍ତି ପ୍ରକାଶ କରିଥିବା ଦେଖି ସନ୍ତୋଷ ପ୍ରକାଶ କରିଥିଲେ ।

ଇତିହାସ ଶିକ୍ଷକ ନରସିଂହ ପାଢ଼ୀ । ପିଲା ସ୍ୱଭାବ । ବୁଝାଇବା ଭଙ୍ଗୀ ବିଚିତ୍ର । ଅତି ସରଳ । ଇଂରାଜୀରେ ଭାରତ ଓ ଇଂଲଣ୍ଡ ଇତିହାସ ଶିକ୍ଷା ଦିଅନ୍ତି । ପରବର୍ତ୍ତୀ କାଳରେ ସେ ଆସିକା ହାଇସ୍କୁଲରେ ପ୍ରଧାନ ଶିକ୍ଷକ ହୋଇଥିବା ବେଳେ ଏମ୍.ଏ ପରୀକ୍ଷା ଦେଇ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ଖଲିକୋଟ କଲେଜର ଅଧ୍ୟକ୍ଷ ପଦରେ ନିଯୁକ୍ତ ହୋଇଥିଲେ । ସେ ଯେଉଁଠାରେ ଅବସ୍ଥାପିତ ହୁଅନ୍ତି, ସେଠାରେ ଅଧିବାସୀ ଅଭିଭାବକ, ଶିକ୍ଷକ ଓ ଛାତ୍ରଙ୍କର ପ୍ରିୟ ହୋଇଥାନ୍ତି । ସେ ବିଚ୍ଛିନ୍ନ ଅଞ୍ଚଳର ଅଧିବାସୀ । ଆଜନ୍ମରୁ ତେଲୁଗୁ ସଂପର୍କ । ଏଫ୍.ଏ.କ୍ଲାସ ଯାଏଁ ତେଲୁଗୁ ଦ୍ୱିତୀୟ ଭାଷାରୂପେ ଅଧ୍ୟୟନ କରିଥିଲେ । କିନ୍ତୁ ଉତ୍କଳ ସମ୍ମିଳନୀରେ ବିଶିଷ୍ଟ ନେତୃବର୍ଗଙ୍କ ପ୍ରେରଣାରୁ ବି.ଏ ରେ ଓଡ଼ିଆ ନେଇ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ତେଲୁଗୁ ଭାଷାଭାଷୀଙ୍କର କଥାର ଉଚ୍ଚାରଣ ଓ ଭାବଭଙ୍ଗୀ ଯେପରି, ଏହାଙ୍କର ଭାଷା ଓ ଉଚ୍ଚାରଣ ଭଙ୍ଗୀ ସେହିପରି । ସେ ଓଡ଼ିଆ କହିବା ବେଳେ ଆମ୍ଭେମାନେ କୌତୁହଳୀ ହୋଇ ଶୁଣୁ ଓ ହସୁ । ଛୋଟ ପିଲାଙ୍କୁ ବଡ଼ ଆଦର କରନ୍ତି । ବାଟରେ ଯାଉଥିବା ବେଳେ କୌଣସି ଛୋଟ ପିଲାର ଦେଖା ମିଳିଲେ ପଛଆଡୁ ଯାଇ ତା'ର ଆଖି ଧରନ୍ତି । ସେ ଛଟପଟ ହୋଇ ଗାଳିଦେଲେ ଛାଡ଼ିଦେଇ ତାକୁ ପଛ କରି ହସି ହସି ଚାଲିଯାନ୍ତି ।

ଅସହଯୋଗ ଆନ୍ଦୋଳନ ପ୍ରବର୍ତ୍ତିତ ହେବାବେଳେ ସେ ଛାତ୍ର ଓ ସ୍ୱେଚ୍ଛାସେବକମାନଙ୍କ କର୍ତ୍ତବ୍ୟ ସଂପର୍କରେ କେତେଗୁଡ଼ିଏ ନିୟମ ପ୍ରଣୟନ କରିଥିଲେ । ମୁଁ ଅସହଯୋଗ ଆନ୍ଦୋଳନରେ ଯୋଗଦେବା ବେଳେ ସେଗୁଡ଼ିକ ବହୁତ ଉପକାରରେ ଆସିଥିଲା ।

ଗଣିତ ଶିକ୍ଷକ ପି.ଏଲ୍. ନରସିଂହମ୍ । ସବୁବେଳେ ସେ ହସ ହସ ମୁହଁରେ ଗଣିତ ଭଳି ନିରସ ବିଷୟକୁ ଅତି ସରସ ରୀତିରେ ବୁଝାଇଥାନ୍ତି । କୌଣସି ଗଣିତ କଳାପଟାରେ ବୁଝାଇବା ବେଳେ ଲେଖି ଲେଖି ଚାଲିଯିବେ ଏବଂ ସଙ୍ଗେ ସଙ୍ଗେ ତଳଆଡୁ ଲିଭାଇ ପକାଇବେ । କୌଣସି ଅଙ୍କ ନକଲ କରି ନେବାକୁ ପିଲାଙ୍କୁ ଅବସର ଦେବେ ନାହିଁ । ଲେଖୁ ଲେଖୁ ସ୍ମରଣ ରଖିବାପାଇଁ ସେ ଏହି ଉପାୟ ଅବଲମ୍ବନ କରିଥାନ୍ତି । ତାଙ୍କର ବ୍ୟବହାର ବଡ଼ ସରଳ । ଇତିହାସ ଶିକ୍ଷକ ନରସିଂହ ପାଢ଼ୀଙ୍କର ସେ ବଡ଼ ସାଙ୍ଗ । ଏକା ବସାରେ ରହନ୍ତି; ଉଭୟେ ତେଲୁଗୁରେ ଆଳାପ କରିବା ସୁଯୋଗ ପାଇଥାନ୍ତି ।

ପ୍ରଧାନ ଶିକ୍ଷକ ଭି. ରାମବ୍ରହ୍ମମ୍ । ଜଣେ ମହାନ୍ ଆଦର୍ଶ ପୁରୁଷ ଓ ଶିକ୍ଷକ । ବେଶ-ଭୂଷା ଚାଲିଚଳନ, କଥାବାର୍ତ୍ତା, ଶିକ୍ଷାଦାନ, ସମୟାନୁବର୍ତ୍ତିତା, ପ୍ରଭୃତି ସକଳ ପ୍ରକାର ଗୁଣରେ ଆଦର୍ଶ ସ୍ଥାନୀୟ ଏବଂ ମର୍ଯ୍ୟାଦା ସଂପନ୍ନ । ତାଙ୍କ ପୋଷା କୁକୁର ଆସି ସ୍କୁଲ ପିଣ୍ଡାରେ ଠିଆ ହେଲାତ ସମୟ ହୋଇଗଲା ବୋଲି ଜାଣି ସମସ୍ତ ଶିକ୍ଷକ ଓ ଛାତ୍ର କ୍ଲାସ ମାନଙ୍କରେ ପ୍ରବେଶ କରିଥାନ୍ତି । କେବେହେଲେ ସେ ଏକ ସେକଣ୍ଡ ସୁଦ୍ଧା ଡେରିରେ ଆସିଥିବା କିମ୍ବା ଘଣ୍ଟା ବାଜିବା ମାତ୍ରେ ସ୍କୁଲ୍ ନ ଛାଡ଼ିବା କେହି କେବେ ଦେଖି ନାହିଁ । କ୍ଲାସ୍‌ରେ ପଢ଼ାଉ ପଢ଼ାଉ ଯଦି ଘଣ୍ଟା ବାଜିଗଲା ଅଧାବାକ୍ୟ କହିଥିଲେ ସୁଦ୍ଧା ପୂର୍ଣ୍ଣ କରିବାକୁ ବସନ୍ତି ନାହିଁ । ସଙ୍ଗେ ସଙ୍ଗେ ଉଠି ଚାଲିଯାନ୍ତି । ସଭା ସମିତିମାନଙ୍କରେ ଭାଷଣ ଦେବା ବେଳେ ତୁଳିଲା ପରି ଯେତିକି କହିବା କଥା ଠିକ୍ ସେତିକି କହିଥାନ୍ତି । ଅନ୍ୟ ବ୍ୟକ୍ତାମାନଙ୍କ ପରି ବୃଥା ବାହୁଲ୍ୟ କରି କହନ୍ତି ନାହିଁ । ସେ ବଡ଼ ଛାତ୍ର ବତ୍ସଳ । ଥରେ ସ୍କୁଲ ଘରେ କିଏ ନିଆଁ ଲଗାଇ ଦେଲା । ଏଗାରଟିଯାକ କ୍ଲାସ୍ ଘର ପୋଡ଼ିଗଲା । ପୋଲିସ୍ ଇନ୍‌ସପେକ୍ଟର ଆସି ସ୍କୁଲରେ ଇନ୍‌କ୍ୱାଏରୀ କରିବାପାଇଁ ଚାହିଁଲେ । କିନ୍ତୁ ସେ ଅନୁମତି ଦେଲେ ନାହିଁ । କହିଲେ *" No, I won't allow. My boys will never do such a thing"* । ପୋଲିସ୍ ଅଫିସର ଫେରି ଯାଇଥିଲେ । ସେହି ସମୟରେ ସ୍କୁଲରେ ହଷ୍ଟେଲ୍ ନଥାଏ । ପିଲାମାନେ ସବୁ ଯା' ଘରେ ସେ ପଢ଼ନ୍ତି । ସମସ୍ତ ଶିକ୍ଷକଙ୍କ ମଧ୍ୟରେ ସାହି ସବୁ ବାଣ୍ଟିଦେଇ ସାହିସାହି ବୁଲି ପିଲାଏ ପଢୁଛନ୍ତି କି ନାହିଁ ଦେଖିବା ବ୍ୟବସ୍ଥା କରିଥିଲେ । ସେ ନିଜେ ମଧ ଦିନେ ଦିନେ ବିଭିନ୍ନ ସାହି ବୁଲି ଦେଖନ୍ତି । ବାହାର ଗାଁ ପିଲେ କିଏ କେଉଁଠାରେ ଘର ଭଡ଼ା କରି ରହୁଥାନ୍ତି । ସେମାନଙ୍କ ପାଇଁ ସ୍କୁଲ୍ ରୁମ୍ ମାନଙ୍କରେ ରହିବା ବ୍ୟବସ୍ଥା କରିଥିଲେ । ପ୍ରତ୍ୟେକ ବଖରାରେ ତିନି ଚାରି ଜଣ ପିଲା

ରହନ୍ତି । କ୍ଲାସ ପଛପଟେ ନିଜ ନିଜ ଜିନିଷ ପତ୍ର ରଖନ୍ତି । ସେ ଖ୍ରୀଷ୍ଟିଆନ ହୋଇଥିଲେ ସୁଦ୍ଧା ଏହି ପିଲା ମାନଙ୍କର ଏକ ପ୍ରାର୍ଥନା ସଭାର ବ୍ୟବସ୍ଥା କରି ହିନ୍ଦୁ ଧର୍ମଗ୍ରନ୍ଥ ମାନଙ୍କରେ ପ୍ରାର୍ଥନା ମନ୍ତ୍ର, ଗୀତା, ଭାଗବତ ଆଦି ଗ୍ରନ୍ଥ ପାଠର ଯୋଗାଡ଼ କରିଥିଲେ । ସତ୍ୟବାଦୀ ବନ ବିଦ୍ୟାଳୟରେ ବୋଲା ଯାଉଥିବା ପଣ୍ଡିତ ନୀଳକଣ୍ଠ ଦାସଙ୍କ ପ୍ରଣୀତ ଉପାସନା ମୁଁ ବହୁଦିନରୁ ବୋଲୁଥିବା ଜାଣିପାରି ମତେ ପ୍ରତିଦିନ ତାହା ଆବୃତ୍ତି କରିବାକୁ ଆଦେଶ ଦେଲେ । ଶତପଥୀ ନାମକ ଜଣେ ବୁଢ଼ା ପଣ୍ଡିତଙ୍କୁ ପ୍ରାର୍ଥନା ସଭାରେ ଗୀତା, ଭାଗବତ ଶୁଣାଇବାକୁ ନିଯୁକ୍ତ କରାଇଥାନ୍ତି । ପ୍ରତିଦିନ ପ୍ରାର୍ଥନା ଆରମ୍ଭରୁ ଶେଷ ହେବାଯାଏଁ ସେ ଉପସ୍ଥିତ ଥାନ୍ତି । ଛାତ୍ରମାନଙ୍କର ଚରିତ୍ର ପ୍ରତି ତୀବ୍ର ଦୃଷ୍ଟି ରଖିଥାନ୍ତି । ଥରେ ସେ ଦେଖିଲେ ସ୍କୁଲରେ ଅନୁପସ୍ଥିତ ଜରିମାନା ପଇସା ବହୁତ ଆଦାୟ ହେଉଛି । ବିଚାରିଲେ ଏ ପିଲାସବୁ ସ୍କୁଲକୁ ଜାଣିଶୁଣି ନ ଆସି ଏଣେତେଣେ ବୁଲନ୍ତି, ଶେଷରେ ବାପ, ମା'ଙ୍କ ଠାରୁ ପଇସା ଆଣି ଜରିମାନା ବାନ୍ଧନ୍ତି ॥ ତାଙ୍କୁ କିଛି ବାଧେ ନାହିଁ । ପାଇକ ଦ୍ୱାରା ଗୋଛାଏ ଛାଟଧରି ପ୍ରତ୍ୟେକ କ୍ଲାସକୁ ଯାଇ ପୂର୍ବଦିନ ଅନୁପସ୍ଥିତି ଥିବା ଛାତ୍ରମାନଙ୍କୁ ଦାଣ୍ଡରେ ଠିଆ କରାଇ ପାଇକଠାରୁ ଗୋଟାକ ପରେ ଗୋଟାଏ  ଛାଟ ଆଣି ଆଖିବୁଜା ମାଡ଼ ଦେଇଥାନ୍ତି । ଓଃ ସେ କି ରୁଦ୍ରମୂର୍ତ୍ତି । ଏପରି କେତେଦିନ କଲାପରେ ଆଉ ଜରିମାନା ଆଦାୟ ହେଲା ନାହିଁ । ଛାତ୍ରମାନେ ଆଉ ଅନୁପସ୍ଥିତ ହେଲେ ନାହିଁ ।

ପ୍ରଧାନ ଶିକ୍ଷକ ଟିକିଏ ନାଟକ ପ୍ରିୟ । ପ୍ରତ୍ୟେକ ବାର୍ଷିକ ଉତ୍ସବ ସମୟରେ ଛାତ୍ରମାନଙ୍କ ଦ୍ୱାରା ନାଟକ ଅଭିନୟ କରାନ୍ତି । ନିଜେ ଇଂରେଜୀ ନାଟକ ଶିଖାନ୍ତି । ଇଂରାଜୀ, ଓଡ଼ିଆ ଓ ତେଲୁଗୁ ତିନି ଭାଷାରେ ଅଭିନୟ ହୁଏ ।

ମୁଁ ପ୍ରାୟ ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇ ଆସୁଥିବା ସେ ଜାଣନ୍ତି । ମୋ ନାମରେ ଓ ମୋର ସହପାଠୀ ରାମଚନ୍ଦ୍ର ଶତପଥୀଙ୍କ ନାମରେ ଆମ୍ଭମାନଙ୍କ ଅଜ୍ଞାତରେ ଛାତ୍ର ବୃତ୍ତିପାଇଁ ସୁପାରିଶ କରିଥିଲେ । ଗୋଟିଏ ମାତ୍ର ଛାତ୍ର ବୃତ୍ତି ମଞ୍ଜୁର ହୋଇଆସିଲା । ଆମ ଦୁହିଁଙ୍କୁ ଡାକି କାହାକୁ ଦିଆଯିବ ପଚାରିଲେ । ମୁଁ ରାମଚନ୍ଦ୍ରଙ୍କୁ ଦେବାକୁ କହିଲି । ସେ ଆଶ୍ଚର୍ଯ୍ୟ ହୋଇ ସେଥିରେ କାରଣ ପଚାରିଲେ । ମୁଁ କହିଲି ମୋର ବାପା ଅଛନ୍ତି, ଆଉ ଆମର ଜମିବାଡ଼ି ଓ କରଣ କାମ ଅଛି । ଆମ ଘର ପରି ତାଙ୍କ ଘରର ଅବସ୍ଥା ସ୍ୱଚ୍ଛଳ ନୁହେଁ । ଏଣୁ ତାଙ୍କୁ ଦିଆଯାଉ । ଏଥିରେ ସନ୍ତୋଷ ପ୍ରକାଶ କରି ତାଙ୍କରି ନାମରେ ମଞ୍ଜୁର କଲେ । କିଛିଦିନ ପରେ ମୋ ନାମରେ ମଧ୍ୟ ଗୋଟିଏ ବୃତ୍ତି ମଞ୍ଜୁର କରାଇ ଆଣିଲେ ।

ଆମେ ଯେଉଁବର୍ଷ ଗାଁ ସ୍କୁଲରୁ ରସୁଲକୋଣ୍ଡା ଆସିଲୁ, ସେହିବର୍ଷ ହିଁ ଏଠାରେ ଜିଲ୍ଲାବୋର୍ଡ଼ ପକ୍ଷରୁ ନୂଆକରି ହାଇସ୍କୁଲ ଖୋଲାଯାଇଥାଏ । ଏହା ସଙ୍ଗକୁ ଛତ୍ରପୁରରେ

ଆଉ ଗୋଟିଏ ହାଇସ୍କୁଲ ଖୋଲାଯାଇଥାଏ । ଖଲିକୋଟ କଲେଜିଏଟ୍ ସ୍କୁଲରୁ ଆସି ଶ୍ରୀ ଭି. ରାମବ୍ରହ୍ମମ୍ ରସୁଲକୋଣ୍ଡାରେ ଏବଂ ଶ୍ରୀ ମଦନ ମୋହନ ରଥ ଛତ୍ରପୁରରେ ପ୍ରଧାନ ଶିକ୍ଷକ ଭାବେ ଅବସ୍ଥାପିତ ହୋଇଥିଲେ । ମଦନ ମୋହନ ରଥ ମଧ୍ୟ ରାମବ୍ରହ୍ମମ୍‌ଙ୍କ ଅନୁରୂପ ଆଦର୍ଶବାନ ପୁରୁଷ ଓ ଶିକ୍ଷକ ଥିଲେ । ସେ ଛାତ୍ରମାନଙ୍କର କୌଣସି ଦୁର୍ନୀତି ଦେଖିଲେ ଦଣ୍ଡଦେବା ପରିବର୍ତ୍ତେ ତାପାଇଁ ନିଜେ କାନ୍ଦନ୍ତି ଏବଂ ତଦ୍ୱାରା ଛାତ୍ରମାନଙ୍କର ମନ ପରିବର୍ତ୍ତନ ହୁଏ । ଫଳରେ ସେମାନେ ଦୁଷ୍କର୍ମରୁ ନିବୃତ୍ତ ହୁଅନ୍ତି । ସେ ସ୍କୁଲକୁ ଯିବା ସମୟରେ କେବେ କିମିତି ଡେରି ହୋଇଗଲେ ପିଲାଙ୍କ ପରି ଦାଣ୍ଡରେ ଦୌଡ଼ି ଦୌଡ଼ି ସ୍କୁଲ ସମୟ ମଧ୍ୟରେ ସ୍କୁଲରେ ପହଞ୍ଚିଥାନ୍ତି ।

ଏହିପରି ପ୍ରାତଃ ସ୍ମରଣୀୟ ଶିକ୍ଷକମାନଙ୍କ ଆଦର୍ଶ ଓ ଶିକ୍ଷା ପ୍ରଭାବରେ ଆମ୍ଭମାନଙ୍କର ଜୀବନ ଗଠିତ ହୋଇଥିଲା ।

ମୋର ପିଲାଦିନୁ ସାଙ୍ଗସାଥୀ ମେଳରେ ଧୂମ୍ରପାନ ଅଭ୍ୟାସ ହୋଇଯାଇଥିଲା । ତଥାପି କୌଣସି ଶିକ୍ଷକ କିମ୍ବା ଗୁରୁଜନ ଏ ଦୁରାଭ୍ୟାସ ଦେଖିବା ଅବସର ପାଇ ନଥିଲେ । ପାଠତ ଭଲ ହୁଏ, ଭଲ ପିଲା ସ୍ଥାନରେ "ନିମଜ୍ଜତିନ୍ଦୋଃ କିରଣେ ଶଶାଙ୍କଃ" ପରି ସବୁ ତ୍ରୁଟି ଲୁଚିଯାଏ । ମୋର କେତେକ ଅନ୍ତରଙ୍ଗ ସାଙ୍ଗ ସାଥୀଙ୍କ ଛଡ଼ା ମୋର ଦୁରାଭ୍ୟାସ ଆଉ କେହି ଜାଣିବା ଅବସର ପାଇ ନାହାନ୍ତି ।

## ଗଞ୍ଜାମରେ ଗୁଡ଼ାଖୁ

ଆମ ଜିଲ୍ଲାରେ ଗୁଡ଼ାଖୁ କଅଣ ତାହା କେହି ଜାଣି ନଥିଲେ । ଆମ୍ଭେମାନେ ମାଟ୍ରିକ୍ୟୁଲେସନ୍ ପଢ଼ିବାବେଳେ ବରାହ ଚରଣ ମହାନ୍ତି ନାମକ ଜଣେ ଗଣିତ ଶିକ୍ଷକ ବର୍ଷକପାଇଁ ଆସିଥିଲେ । କଲେଜ ଛାଡ଼ିବା ସଙ୍ଗେ ସଙ୍ଗେ ଏ ଚାକିରି ପାଇଥିଲେ । ନିତାନ୍ତ ଅଳ୍ପ ବୟସ । କେବଳ ଆମ ମାଟ୍ରିକୁଲେସନ୍ ଛାତ୍ରମାନଙ୍କ ସହ ମିଳାମିଶା କରିବାକୁ ଭଲପାନ୍ତି । ଶିକ୍ଷକମାନଙ୍କ ମେଳରେ ସେତେ ଯୋଗ ଦିଅନ୍ତି ନାହିଁ । ଏପରିକି ସ୍କୁଲକୁ ଗଲାବେଳେ ସମୟେ ସମୟେ ଆମ ହଷ୍ଟେଲ୍ ଦେଇ ଯାଇଥାନ୍ତି, ଏବଂ ଆମେ ଖାଉଥିବା ବେଳେ ଆମ ସହିତ ଏକାଠି ବସି ଖାଇ ପକାନ୍ତି । ପ୍ରତିଦିନ ୪ଟା ପରେ ଆମେ କେତେଜଣ ତାଙ୍କ ସାଙ୍ଗରେ ନଦୀକୁ ଯାଉ । ସେ ଗୁଡ଼ାଖୁ ଘସନ୍ତି । ଦିନେ ଦିନେ ତାଙ୍କଠୁ ଟିକିଏ ଟିକିଏ ଆଣି ଘସୁଁ, ବାନ୍ତି ହୁଏ, ମୁହଁ ବୁଲେଇ ହୁଏ । ମୁଣ୍ଡରେ ମୁହଁରେ ପାଣିମାରୁ । ହେଲେ କ'ଣ ହେବ ପୁଣି ତହିଁ ଆରଦିନ ସେଇଆ । ଇମିତି ହେଉ ହେଉ କ୍ରମଶଃ ଅଭ୍ୟାସ ହୋଇଗଲା । ଆଉ ଭାଲୁ ଛାଡୁଛି କେତେବେ ? ହେଲେ ମିଳିବ

କୁଆଡୁ ? ଦୋକାନ ବଜାରରେ ତ ନାହିଁ । କଟକରୁ ପାର୍ଶଲ୍ ଦ୍ୱାରା ମଗାଇବାକୁ ପଡ଼େ । ମୋର ଅନ୍ତରଙ୍ଗ ସାଥୀ ମୃତ୍ୟୁଞ୍ଜୟ ପଣ୍ଡା ଓ ମୁଁ ଏଥିରେ ମାତିଗଲୁ । ଯା ସାଙ୍ଗକୁ ପୁଣି ବିଡ଼ି ସିଗାରେଟ୍ । ଘନ (ସୂର୍ଯ୍ୟ ନାରାୟଣ ପଟ୍ଟନାୟକ), ମୃତ୍ୟୁଞ୍ଜୟ ଓ ମୁଁ ଏକା ବସାରେ ରହୁ, ଘନ ପିକା ଖାଏ ।

ଏବେ ଗଞ୍ଜାମରେ ପିଲା ପିଚିକା କି ସ୍ତ୍ରୀ କି ପୁରୁଷ ଘରେ ଘରେ ଗୁଡ଼ାଖୁ ବ୍ୟବହାର କରୁଛନ୍ତି । ଗୁଡ଼ାଖୁ ନ ଥାଇ ଦୋକାନ ନାହିଁ । କେବେ କିପରି ଏ ଅଭ୍ୟାସ ଜିଲ୍ଲା ଯାକରେ ବ୍ୟାପିଗଲା ବଡ଼ ଆଶ୍ଚର୍ଯ୍ୟର କଥା । ଗଞ୍ଜାମରେ ବୋଧହୁଏ ଆମେ ମାତ୍ର ଜଣେ ଦି'ଜଣ ପ୍ରଥମେ ମାଷ୍ଟ୍ରଙ୍କ ଠାରୁ ଶିଖି ଏ ଦୁରାଭ୍ୟାସରେ ପଡ଼ିଥିଲୁ । ତା ପୂର୍ବରୁ ଗଞ୍ଜାମରେ କେହି କେବେ ଗୁଡ଼ାଖୁ ଘସିବା ଦେଖା ନଥିଲା । ନାଁ ମଧ ଶୁଣା ନଥିଲା । ୧୯୨୧ ରେ ପ୍ରଥମେ ଏ ଗୁଡ଼ାଖୁ ଦେବତା ଆମ ଦୁହିଁଙ୍କଠାରେ ଲାଗିଥିଲା । ଆଉ କ'ଣ ଛାଡ଼ିଲା ? ଜୀବନଯାକ ଲାଗିରହିଲା । ପ୍ରାୟ ୪୩ ବର୍ଷପରେ ୧୯୬୪-୬୫ କେନ୍ଦ୍ରାପଡ଼ାରେ ଥିବାବେଳେ ଦୈବାତ୍ ଛାଡ଼ିଦେଲି । ମୋ ସ୍ତ୍ରୀଙ୍କର ଗୋଟିଏ ବାକ୍ୟ ଗୁଣିଆ ପରି କାମ କଲା । ବାସ୍ ସେତିକିରେ ଦେବତା ଛାଡ଼ି ପଳେଇଲେ । ତା ପୂର୍ବରୁ କେତେଥର ଚେଷ୍ଟାକରି ପାରି ନଥିଲି । ୭/୮/୬୫ ଦିନଟି ଜୀବନରେ ଏକ ସ୍ମରଣୀୟ ଦିବସ କହିବାକୁ ହେବ । ସନ୍ଧ୍ୟାବେଳେ କୁଆଡୁ ବୁଲି ବୁଲି ଆସି ଝାଡ଼ା ଯିବାପାଇଁ ଗୁଡ଼ାଖୁ ଘସୁ ଘସୁ ତିନିଚାରି ତୋଳାଯାଏ ଘସି ପକାଇଲି । ସ୍ତ୍ରୀ ସେ କଥା ଦେଖି କହିଲେ, ''ଏତେ କ'ଣ ଘସୁଛମ ? ମୁହଁ ବୁଲେଇ ହେବ ।'' ଝାଡ଼ା ବସି ଏକଥା ଭାବୁଥାଏ । ରାତିଯାକ ମଧ ଏକଥା ଭାବୁ ଥାଏ । ସକାଳେ ଆଉ ଘସିଲି ନାହିଁ । ସବୁବେଳ ପାଇଁ ଛାଡ଼ିଦେଲି । ଗୁଡ଼ାଖୁ ଗନ୍ଧ ମନୋହର ବୋଧ ହେଉଥାଏ । ଏବେ ଉତ୍କଟ ଓ ଅସହ୍ୟ ବୋଧ ହେଉଛି ।

## ଅସହଯୋଗ ଆନ୍ଦୋଳନ

୧୯୨୦-୨୧ ଆମ ମାଟ୍ରିକୁଲେସନ୍ ବର୍ଷ । ୧୯୨୦ରେ ଅସହଯୋଗ ଆନ୍ଦୋଳନ ଆରମ୍ଭ । ସେହିବର୍ଷ ସେପ୍ଟେମ୍ବର ମାସରେ କଲିକତାରେ ପଞ୍ଜାବ କେଶରୀ ଲାଲ ଲାଜପତ୍ ରାୟଙ୍କ ସଭାପତିତ୍ୱରେ ଭାରତ ଜାତୀୟ ମହାସଭାର ଏକ ସ୍ୱତନ୍ତ୍ର ଅଧିବେଶନରେ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ପ୍ରସ୍ତାବ ଗୃହୀତ ହେଲା । ସମଗ୍ର ଦେଶରେ ଉତ୍ସାହ ଉଦ୍ଦୀପନା ଖେଳିଗଲା । ବିଖ୍ୟାତ ବକ୍ତା ବିପିନ ଚନ୍ଦ୍ର ପାଲ ପ୍ରଭୃତିଙ୍କ ବିଭିନ୍ନ ସଭା ସମିତିର ଅଗ୍ନିମୟ ଭାଷଣମାନ ପତ୍ର ପତ୍ରିକା ମାନଙ୍କରେ ପ୍ରକାଶିତ ହେଲା । ଲାଲ୍ ବାଲ୍ ପାଲ୍ (ଲାଲା ଲାଜପତ ରାୟ, ବାଳ ଗଙ୍ଗାଧର ତିଳକ, ବିପିନ

ଚନ୍ଦ୍ର ପାଲ୍) ପ୍ରଭୃତି ନେତୃବୃନ୍ଦଙ୍କ ଭାଷଣମାନ ନାୟକ, ବସୁମତୀ ଅମୃତ ବଜାର ପତ୍ରିକା ମାନଙ୍କରେ ଧାରାବାହିକ ଭାବରେ ପ୍ରକାଶିତ ହେଉଥାଏ । କେତେ ସ୍କୁଲ, କଲେଜ ଛାତ୍ର ପାଠପଢା ଛାଡି ଆନ୍ଦୋଳନରେ ଯୋଗ ଦେଉଥିବା, କେତେ ଓକିଲ ଓକିଲାତି ଛାଡିବା, କେତେ ସରକାରୀ କର୍ମଚାରୀ ଚାକିରୀ ଛାଡି ଆନ୍ଦୋଳନରେ ଯୋଗ ଦେଉଥିବା କଥା ଖବର କାଗଜ ମାନଙ୍କରେ ବାହାରେ । ଏସବୁ ପଢି ଆମ ମନ ଡ଼େଇଁଥାଏ ।

ମହାତ୍ମାଗାନ୍ଧୀ ଅସହଯୋଗ ବାର୍ତ୍ତା ପ୍ରଚାର ଉଦ୍ଦେଶ୍ୟରେ ସମଗ୍ର ଦେଶରେ ଗସ୍ତ କଲେ । ୧୯୨୧ ମାର୍ଚ୍ଚ ୩୧ ତାରିଖରେ ଆମର ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଆରମ୍ଭ । ମହାତ୍ମାଗାନ୍ଧୀ ମାର୍ଚ୍ଚ ୨୯ ତାରିଖରେ ବ୍ରହ୍ମପୁର ଦେଇ ମାନ୍ଦ୍ରାଜ ପ୍ରଦେଶ ଗସ୍ତରେ ଆସୁଛନ୍ତି । ମୃତ୍ୟୁଞ୍ଜୟ ଓ ମୁଁ ମହାତ୍ମାଗାନ୍ଧୀଙ୍କୁ ଦେଖିବାପାଇଁ ମନକଲୁ । ତାଙ୍କୁ ଦେଖି ପରୀକ୍ଷା ଦିନ ଫେରି ପାରିବୁ କି ନାହିଁ ଏହି ଚିନ୍ତା । ଅନ୍ୟାନ୍ୟ କ୍ଲାସର ବହୁତ ପିଲା ଯିବାକୁ ତିଆର । ଆମକୁ ସମସ୍ତେ ମନା କରୁଥାନ୍ତି । ରାତିରେ ପଢ଼ିପଢି ଥରେ ଅଧରାତି ସମୟକୁ ବାହାରକୁ ଆସି ଦେଖିଲୁ ପଡ଼ିଶା ବସାର କେତେଜଣ ପିଲା ବ୍ରହ୍ମପୁର ଯାଇ ଗାନ୍ଧୀଜୀଙ୍କୁ ଦେଖିବାପାଇଁ ତିଆର ହେଉଛନ୍ତି । କ'ଣ କରିବୁ । ସେ ସମୟରେ ଗୋଟିଏ ମାତ୍ର ବସ୍ ବ୍ରହ୍ମପୁର ଠାରୁ ରସୁଲକୋଣ୍ଡା ଯିବା ଆସିବା କରେ । ସକାଳେ ଯିବାକୁ ଥିବା ଗାଡ଼ିରେ ୩୦ ଜଣ ଯାତ୍ରୀ ହୋଇପାରିଲେ ରାତିରାତି ଛାଡ଼ିବ । ଆମେ ମଧ ଚଟ୍ ଚଟ୍ ହେଲୁ । ହେଲେ ପଇସା କାହିଁ ? ଆମ କ୍ଲାସର ରଘୁନାଥ ସାହୁ (ପଞ୍ଚଭୂତି) ସେଠାରେ ବସିଥିଲେ । ତାଙ୍କ ବେକରେ ଏକ ସୁନାର ସୋରିଷିଆ ମାଳୀ ଉପରେ ଦୃଷ୍ଟିପାତ କରି ଯିମିତି କହିଲୁ ସେ ସଙ୍ଗେ ସଙ୍ଗେ ମାଳୀଟି ଛିଣ୍ଡାଇ ଦେଲେ । । ସେ ଅଧ ରାତିରେ ବନ୍ଧକ ରଖୁଛି କିଏ ? ମାଳୀଟି ଧରି ବଜାରକୁ ବାହାରିଲୁ । ଜଣେ ହୋଟଲ୍‌ବାଲା କବାଟ ଆଡ଼କିଲା କରିଦେଇ ଦିନଯାକର ବିକ୍ରି ପଇସା ଗଣୁଛି । ତାକୁ ମାଳୀଟି ବନ୍ଧକ ଦେଇ ଟ୧୫ଙ୍କା ଆଣିଲୁ । ରଘୁନାଥ, ମୃତ୍ୟୁଞ୍ଜୟ ଓ ମୁଁ ବାହାରିଲୁ । ଦଦା ଦୁର୍ଗା ମାଧବ ପଟ୍ଟନାୟକ ଶିକ୍ଷକ ଟ୍ରେନିଂ ନେଉଥାନ୍ତି । ଡ଼ରିଡ଼ରି ତାଙ୍କୁ କହିବାକୁ ଗଲୁ । ସେ ମନା କରିବେ କ'ଣ । ସେ ମଧ ଯିବାକୁ ବାହାରିଲେ । ତାଙ୍କ ପାଖରେ ମଧ ଟଙ୍କା ନ ଥିଲା । ବେଳଗୁଣ୍ଠାର ପଟ୍ଟମ୍ ସୁରୁପାତ୍ର ଟଙ୍କା ଧାର ଦେଲେ । ସକାଳ ୪ ଘଣ୍ଟା ବେଳେ ବ୍ରହ୍ମପୁର ରେଳ ଷ୍ଟେସନ୍‌ରେ ପହଞ୍ଚିଲୁ । ଗାଡ଼ି ଆସିଲା । ଅସଂଖ୍ୟ ଲୋକ ଗାନ୍ଧୀଜୀଙ୍କୁ ପାଛୋଟି ନେବାପାଇଁ ରୁଣ୍ଡ ହୋଇଥାନ୍ତି । ଗାନ୍ଧୀଜୀଙ୍କ ମୋଟର୍ ସେ ଜନଗହଳି ମଧରେ ତିଳେ ଘୁଞ୍ଚି ପାରିଲା ନାହିଁ । ସବ୍ କଲେକ୍ଟର ଦୀନବନ୍ଧୁ ପାଳ ମହାତ୍ମା ଗାନ୍ଧୀଙ୍କ ମୋଟର୍‌ର ଫୁଟ୍ ରେଷ୍ଟ ଉପରେ ଠିଆହୋଇ ଲୋକ ନିୟନ୍ତ୍ରଣ କରୁଥାନ୍ତି । କିଏ କାହିଁକି ତାଙ୍କ କଥା ଶୁଣନ୍ତେ ? ଶେଷରେ ମହାତ୍ମାଗାନ୍ଧୀ ନିଜେ ମୋଟ୍‌ର ଉପରେ ଠିଆହୋଇ ରାସ୍ତା ଛାଡ଼ିଦେବା ପାଇଁ ହାତରେ ଇଙ୍ଗିତ କରିବାରୁ ମୋଟର ଯିବାପାଇଁ ରାସ୍ତା ହେଲା ।

ସବ୍ କଲେକ୍ଟର ମହୋଦୟ ଆଶ୍ୱସ୍ତ ହେଲେ । "ମଧୁ ମନ୍ଦିର" (ଓକିଲ ମଧୁସୂଦନ ପାଣିଗ୍ରାହୀଙ୍କ ଘର) ରେ ମହାତ୍ମାଜୀ ଅବସ୍ଥାନ କଲେ । ତାଙ୍କର ଦର୍ଶନ ପାଇବାପାଇଁ ହଜାର ହଜାର ଲୋକ ଘର ଆଗରେ ଠିଆ ହୋଇଥାନ୍ତି । ଉପର ମହଲାର ପିଣ୍ଡା ଉପରେ ମହାତ୍ମାଜୀ ହାତ ଯୋଡ଼ି ଠିଆହୋଇ ଦର୍ଶନ ଦେଲେ ।

ସନ୍ଧ୍ୟା ୪ଘଣ୍ଟା ବେଳେ ବାରାକସ୍ ମଇଦାନରେ ବିରାଟ ସଭା ହେଲା । ଟେବୁଲ୍ ପକାଇ ଉଚ୍ଚ ଆସନ କରାଯାଇଥାଏ, ତା'ରି ଉପରେ ମାହାତ୍ମାଜୀ ବସିଥାନ୍ତି । ତାଙ୍କ ନିକଟରେ ଆମ ଉତ୍କଳର ବରେଣ୍ୟ ନେତା ପଣ୍ଡିତ ଗୋପବନ୍ଧୁ ଦାସ । ଭାଷଣ ଆରମ୍ଭ ହେଲା । ଲାଉଡ୍ ସ୍ପୀକେର୍‌ତ ସେତେବେଳେ ନ ଥାଏ । ମହାତ୍ମା ଗାନ୍ଧୀଙ୍କ କ୍ଷୀଣସ୍ୱର ସମସ୍ତଙ୍କର ଶ୍ରୁତି ଗୋଚର ହୋଇପାରେ ନାହିଁ । ମଧ୍ୟେ ମଧ୍ୟେ ସମାନ୍ୟ ଗୋଳମାଳ ହୁଏ । ପଣ୍ଡିତ ଗୋପବନ୍ଧୁ ଦାସ ଉଠି ଉଚ୍ଚ ସ୍ୱରରେ ଭାଷଣ ଦେଇ ଲୋକଙ୍କୁ ଶାନ୍ତ କରାନ୍ତି । ସେ ସମୟରେ ଗାନ୍ଧୀଜୀ ଧୋତି, ପଞ୍ଜାବି, ପଗଡି ପିନ୍ଧୁଥିଲେ । ଗୋଟିଏ ଦୋସରା କାନ୍ଧରେ ପଡ଼ିଥାଏ । ଠିକ୍ ଗୁଜରାଟୀ ବେଶ । ଗୋପବନ୍ଧୁ ବାବୁଙ୍କ ବିଶାଳଶ୍ମଶ୍ରୁ । ଧୋତି ଓ କୁରୁତା ପରିଧାନ । ତାଙ୍କୁ ଦେଖିବା ଏ ମୋର ପ୍ରଥମ । ସଭା ଭାଙ୍ଗିଲା ପରେ ଯେ ଯୁଆଡେ ଗଲେ । ଆମର ଚିନ୍ତା କିପରି ରାତି ରାତି ଫେରି ସକାଳେ ପରୀକ୍ଷାରେ ବସିବୁ । ପୁଣି ୩୦ ଜଣ ଯାତ୍ରୀ ଯୋଗାଡ଼ରେ ଲାଗିଲୁ । ତହିଁ ଆରଦିନ ସଉକତ୍ ଆଲ୍ଲୀ, ମହମ୍ମଦ ଆଲ୍ଲୀ ଏବଂ ଲାଲା ଲାଜପତ ରାୟ ବ୍ରହ୍ମପୁର ଆସୁଛନ୍ତି । ତାଙ୍କୁ ଦେଖିବା ପାଇଁ ଆମ ସାଙ୍ଗରେ ଯାଉଥିବା ଅନ୍ୟାନ୍ୟ ପିଲାମାନଙ୍କର ଇଚ୍ଛା । କିନ୍ତୁ ତିନି ଜଣଙ୍କ ପାଇଁ ସେମାନେ ବାଧହୋଇ ଆମ ସାଙ୍ଗରେ ଫେରିଲେ । ରସୁଲକୋଣ୍ଡାରେ ପହଞ୍ଚିଲା ବେଳକୁ ପାହାନ୍ତିଆ । ପ୍ରାୟ ଚାରି ପାଞ୍ଚ ଘଣ୍ଟା ଗଡ଼ପଡ଼ ହୋଇଛୁକି ନାହିଁ, ସାଙ୍ଗ ସାଥୀ ଆସି ଉଠାଇ ଦେଲେ । ସେମାନେ ଆମର ବ୍ରହ୍ମପୁର ଯିବା କଥା କାହିଁକି ଜାଣନ୍ତେ ? ଖାଇପିଇ ୧୦ଟା ବେଳେ ପରୀକ୍ଷାକୁ ଗଲୁ । ଆଖି ମାଡ଼ି ବସୁଥାଏ । ସେ ସମୟରେ ପରୀକ୍ଷା ଦୁଇ ଓଳିଯାକ ହୋଇ ତିନି ଦିନରେ ଶେଷ ହୋଇଯାଏ । ପ୍ରତ୍ୟେକ କ୍ଲାସରେ ପ୍ରତ୍ୟେକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଆସିଥିଲି । ଏବେ କିନ୍ତୁ ଉତ୍ତୀର୍ଣ୍ଣ ହେବି କି ନାହିଁ ସନ୍ଦେହ । ଯାହାହେଉ ସେ ତେଣ୍ଟା ଗଲା ।

## ତନରଡ଼ା ବାବାଜୀ

ଆମେ ପାଠ ପଢିବା ବେଳେ ରସୁଲକୋଣ୍ଡାରେ ଜଣେ ବାବାଜୀଙ୍କୁ ଦେଖୁ । ତାଙ୍କର ଜନ୍ମସ୍ଥାନ ରସୁଲକୋଣ୍ଡା ନିକଟସ୍ଥ ତନରଡ଼ା ଗ୍ରାମ । ପିଲାଦିନୁ ଘରୁ ପଳାଇ କୌଣସି ଏକ ବାବାଜୀ ମେଳରେ ଯୋଗଦେଇ ହଠଯୋଗ ଶିକ୍ଷା କରିଥିଲେ ।

କେତେକାଳ ଏହିପରି ଯୋଗ ଅଭ୍ୟାସ କରି କୌଣସି କାରଣରୁ ନିଜର ଜନ୍ମ ସ୍ଥାନକୁ ଫେରି ଆସିଥିଲେ । ତଥାପି ଯୋଗାଭ୍ୟାସ ଛାଡ଼ି ନଥିଲେ । କେତେବେଳେ କୌଣସି ମନ୍ଦିରରେ କେତେବେଳେ କାହାର ପିଣ୍ଡା କିମ୍ବା ନଦୀ ବାଲିରେ ସେ ଯୋଗସାଧନ କରୁଥିବା ଦେଖାଯାଏ । ସୁଦୀର୍ଘ ସୁଗଠିତ ଶରୀର, ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗର ମାଂସପେଶୀ ସୁଦୃଢ଼ ଏବଂ ପରିସ୍ଫୁଟ, ମୁଣ୍ଡରେ ଝାମ୍ପୁରା ବାଳ, ଈଷଦ୍ କୃଷ୍ଣ ବର୍ଣ୍ଣ । ତିନି ଆଙ୍ଗୁଳି ଓସାର ବିଶିଷ୍ଟ କୌପୀନ ପରିଧାନ । ତଦ୍‌ବ୍ୟତୀତ ଅନ୍ୟ ବସ୍ତ୍ର ନାହିଁ । ଖରା, ବର୍ଷା ଶୀତ ସର୍ବଦା ସେଇ ଏକମାତ୍ର କୌପୀନ । ଏପ୍ରିଲ୍ ମାସର ଦି ପହରିଆ ଖରାରେ ରସୁଲକୋଣ୍ଡା ଲୋହରାଖଣ୍ଡୀ ନଦୀ ବାଲିରେ ବିଭିନ୍ନ ଆସନ ବିଶେଷତଃ ପଦ୍ମାସନରେ ବସି ଯୋଗାଭ୍ୟାସ କରିବା ଆମ୍ଭେମାନେ ଅନେକ ଥର ଦେଖିଅଛୁ । କିଏ ଡ଼ାକି ଖାଇବାକୁ ଦେଲାତ ଭଲ କଥା ନଚେତ୍ କ୍ଷୁଧା ସମୟରେ ସେ କାହାର ହେଲେ ପିଣ୍ଡା ଉପରକୁ ଯାଇ ପିଣ୍ଡାର ଏମୁଣ୍ଡ ସେମୁଣ୍ଡ ତିନିଥର ବୁଲିବେ । ସେ ଘର ଲୋକ ଜାଣିପାରି ଯଦି କିଛି ଦିଅନ୍ତି ଖାଇବେ ନଚେତ୍ ଚାଲିଯିବେ । ଅନିକେତ, ଯଦୃଚ୍ଛଲାଭ ସନ୍ତୁଷ୍ଟ, ତପସାଧନ ତତ୍‌ପର, ଶୀତୋଷ୍ଣ ସହନଶୀଳ, ନିଃସଙ୍ଗ ଏପରି ଗୀତାରେ ଯୋଗୀର ଯେଉଁସବୁ ଲକ୍ଷଣ ବର୍ଣ୍ଣିତ ହୋଇଛି, ତାହାସବୁ ତାଙ୍କଠାରେ ପ୍ରତିଫଳିତ ହୋଇଥାଏ । ସେ ଝାମ୍ପୁରା ମୁଣ୍ଡକୁ ପୋତି ଦୀର୍ଘ ପଦକ୍ଷେପରେ ବାହା ନାଡ଼ିନାଡି ଚାଲିଲାବେଳ ଦେଖିଲେ ଡ଼ରମାଡେ । ସେ କୌଣସି ସ୍ଥାନରେ ବସି ବା ଠିଆହୋଇ କାହା ସହିତ କଥା ହେଉଥିବା କେବେ ଦେଖା ଯାଇନାହିଁ । ସେ ଆତ୍ମାରାମ ।

ପାଠପଢା ଛାଡିବାର କେତେ ବର୍ଷ ପରେ ମୁଁ ଦିନେ ମୁଁ ଆମ ଗାଁରେ ତାଙ୍କୁ ଭେଟିଲି । ଆମ ଗାଁର କୁମୁଟୀ ବୁଢା ସୀତା ରାମ ରାଜୁଙ୍କ ନିକଟକୁ ସେ ଅନେକ ଥର ଆସନ୍ତି । ବୁଢାଙ୍କର ବାବାଜୀଙ୍କ ପ୍ରତି ବଡ଼ ଭକ୍ତି । ଶୁଣାଯାଏ ଦୁହେଁ କୁଆଡେ ଏକା ପତ୍ରରେ ବସି ଭୋଜନ କରନ୍ତି । ସେଦିନ ମୁଁ ସଡ଼କ ନିକଟ ବାସୁଦେବପୁର ପୋଖରୀକୁ ଗାଧୋଇବା ପାଇଁ ଯାଇଛି, ଦେଖିଲି ବାବାଜୀ ପାହାଚ ଉପରେ ପାଣି ଭିତରେ ବସି ଦାନ୍ତ ଘଷୁଛନ୍ତି । କେଉଁ ଏକ ଗଛରୁ ପ୍ରାୟ ଦି'ହାତ ଲମ୍ବର ଡାଳଟିଏ ଭାଙ୍ଗି ଆଣି ତାକୁ ଚୋବାଇ ଚୋବାଇ ଅଧାକରି ସାରିଲେଣି । ଆମେ ତ ପାଠ ପଢିବାବେଳେ ତାଙ୍କୁ ଦେଖିଲେ ଡ଼ରୁ । ଏବେ ମନ ହେଲା ତାଙ୍କୁ ଘରକୁ ଡ଼ାକି ନେବାପାଇଁ । ଡ଼ରି ଡ଼ରି ପାଖକୁ ଗଲି । କହିଲି ''ବାବାଜୀ ! ଆମ ଘରକୁ ଯିବେକି ?'' ସେ ଭୟଙ୍କର ସ୍ୱରରେ କହିଲେ ''ତମର କା'ଘର ?'' ମୁଁ କହିଲି ''କରଣ ଘର'' । ପଚାରିଲେ ''ଖାଇବାକୁ ଦେବ ?'' ମୁଁ ହଁ କଲି । ଦାନ୍ତଘଷା ସରିଲା । ପାଣି ଭିତରକୁ ଡ଼େଇଁପଡ଼ି ପୋଖରୀର ଏ ମୁଣ୍ଡରୁ ସେ ମୁଣ୍ଡକୁ ପୁଣି ସେ ମୁଣ୍ଡରୁ ଏ ମୁଣ୍ଡକୁ ପହଁରି ଆସିଲେ । ହୁଡ଼ାରେ ଥିବା ଗୋଟିଏ ବଡ଼ ଅଶ୍ୱତ୍ଥ ଗଛ ମୂଳକୁ ଯାଇ ହାତରେ ମୁହଁ ହାତ ଗୋଡ଼ ସବୁ ପୋଛି

ପକାଇଲେ । କୌପୀନଟି ଫିଟାଇ ଚିପୁଡି ପୁଣି ପିନ୍ଧି ପକାଇଲେ । କହିଲେ "ଆସ" । ସେ ଦୀର୍ଘ ପଦକ୍ଷେପ କରି ଯାଉଥାନ୍ତି । ମୁଁ ତାଙ୍କ ପଛରେ ଏକରକମ ଧାଇଁ ଧାଇଁ ଯାଉଥାଏ । ରାସ୍ତା ଗୋଟିଏ ବିଲ ହୁଡ଼ା ଦେଇ ଗାଁକୁ ଯିବାକୁ ପଡ଼େ । ଦେଖିଲେ ଗାଁ ମୁଣ୍ଡରେ ଗୁଡ଼ାଏ ସ୍ତ୍ରୀ ଲୋକ ସେ ବାଟରେ ଧାଡିବାନ୍ଧି ଆସୁଛନ୍ତି । ସେମାନଙ୍କୁ ଦେଖି " ଏଃ କିଛି ଭଲବାଟ ନୁହେଁ" କହି ବିଲ ଭିତରକୁ ଡ଼େଇଁପଡ଼ି ବିଲ ଭିତରେ ଧାଇଁ ଧାଇଁ ଯାଇ ଯେଉଁଠି ସେ ଧାଡି ଶେଷ ହୋଇଛି ସେଇଠି ପୁଣି ବାଟକୁ ଉଠିଲେ । ମୁଁ ତରବର ହୋଇ ଯାଇ ତାଙ୍କ ସହ ମିଶିଲି । ଘରକୁ ଗଲୁ । ମେଲା ଘରେ ବସିବା ପାଇଁ ଗୋଟିଏ ପଟି ପକେଇ ଦେଲି । ପଟିରେ କାହିଁକି ବସନ୍ତେ, ତଳେ ବସିଲେ । ପିଢା, ଡାଳ,ଗ୍ଲାସ, ପତ୍ର ସଜାଇ ଅନ୍ନ ତରକାରୀ ବାଢ଼ିଦେଲି । ସେତ ମାନ ସମ୍ମାନର ବହୁ ଦୂରରେ । ପିଢାରେ ମଧ୍ୟ ବସିଲେ ନାହିଁ । ଆଖିବୁଜି ବଡ଼ ବଡ଼ ଗୁଣ୍ଡା ଭାତ ଗିଳି ପକାଇଲେ । ଡାଳ ଟେକି ଢକ ଢକ କରି ପାଣି ପିଇଦେଲେ । ମୁଁ ଘରକୁ ଯାଇ ଖାଇ ପିଇ ଆସି ଦେଖେ ସେ ସର୍ବାଙ୍ଗାସନରେ ଅଛନ୍ତି । କେତେ ସମୟ ପରେ ଆସନରୁ ଉଠି କହିଲେ "ଏଥର ଯିବା" । ହଉ କହି ମୁଁ ତାଙ୍କ ସାଙ୍ଗରେ ଗାଁର ପୂର୍ବ ଦିଗରେ ଥିବା ପୋଖରୀ ହୁଡ଼ା ବାଟେ ନେଲି । ତୁଠରେ ମାଇକିନାମାନେ ଗୋଧୋଉଥିବା ଦେଖି ଖଣ୍ଡେ ଦୂର ଚାଲିଯାଇ ଠିଆହେଲେ । କହିଲେ "ଏତେ କଥାରୁ କି ଲାଭ ? ଗୋଟିଏ କଥାରେ ସବୁ ଅଛି । ସ୍ତ୍ରୀ ଲୋକଙ୍କୁ ଯେଉଁଠି ଦେଖିବ, ମା' ବୋଲି ତାଙ୍କୁ ନମସ୍କାର କରିବ, ଏତିକିରେ ତ ସବୁ ।" ଏତକ କହି ଧାଇଁଧାଇଁ ଚାଲିଗଲେ । ମୁଁ ଠିଆହୋଇ ଦେଖୁଥାଏ । ଅଧ ମାଇଲେ ବାଟ ଧାଇଁଯାଇ କେନାଲ ହୁଡା ଉପରେ ଠିଆ ହେଲେ । ମୁଣ୍ଡପୋତି ହାତ ନାଡ଼ିନାଡ଼ି ଦ୍ରୁତ ପଦକ୍ଷେପରେ ବରପଲ୍ଲୀ ଆଡ଼େ ଚାଲିଗଲେ । ସେ ତ ପାଠଶାଠ କିଛି ପଢି ନଥିଲେ । ଏପରି କେତୋଟି କଥାକୁ ମୂଳ କରି ଧରି ନିଜ ସାଧନରେ ରତ ହୋଇଥାନ୍ତି । ଅତି ଅଳ୍ପ କେତୋଟି ଶବ୍ଦରେ ସେ ମହାନ୍ ତତ୍ତ୍ୱ କଥା କହିଦେଇ ଗଲେ ।

୧୯୨୧ ମାର୍ଚ୍ଚ ମାସରେ ଆମର ପରୀକ୍ଷା ସରିଲା । ଦିନେ ମୋର ଶିକ୍ଷକ ଅନନ୍ତରାମ ପଟ୍ଟନାୟକ କହିଲେ "ବାଞ୍ଛାନିଧି ! ତମେ ଫେଲ୍ ହେଲେ ଅସହଯୋଗ ଆନ୍ଦୋଳନରେ ଯୋଗଦେବ, ନା ?" "ନା ଫେଲ୍ ହେଲେ ପଢିବି, ପାସ୍ ହେଲେ ଯୋଗଦେବି । ନଚେତ୍ Politics is the last refuge of scoundrel ଅପବାଦ ହେବ ।" ଗାଁକୁ ଆସିଲି ।

ଦେଶବ୍ୟାପୀ ଆନ୍ଦୋଳନ ଚାଲିଛି । ଆଇନ ଅମାନ୍ୟ କରି କେତେ ଦେଶପ୍ରେମୀ ଜେଲ୍ ଯାଉଛନ୍ତି । ପାଠ ପଢିବାବେଳେ 'ହୋରେସିୟସ୍' ନାମକ ଗୋଟିଏ କବିତା ପଢିଥିଲି । ତା'ର ନିମ୍ନ ପଦ୍ୟାଂଶଟି ମୁଁ ଅନେକ ସମୟରେ ଆବୃତ୍ତି କରିଥାଏ ।

To everyman upon this earth,
Death cometh soon or late,
But how can man die better
Than facing fearful odds
For the ashes of his fathers
And the temples of his Gods,"

ସାଧୁ ବାଶ୍ୱାନୀଙ୍କ "Non-cooperation' ନାମକ ଏକ କ୍ଷୁଦ୍ର ପୁସ୍ତିକାର ପ୍ରଚ୍ଛଦ ପଟରେ ଉଦ୍ଧାର କରାଯାଇଥିବା ନିମ୍ନଲିଖିତ ଶ୍ଳୋକ ମଧ ମତେ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା ।

"ନିନ୍ଦନ୍ତୁ ବାନ୍ଧବାଃ ସର୍ବେ ତ୍ୟଜନ୍ତୁ ସ୍ତ୍ରୀ ସୁତାଦୟଃ
ଜନାଃ ହସନ୍ତୁବା ନିତ୍ୟଂ ରାଜାନଃ ଦଣ୍ଡୟନ୍ତୁ ବା
ସେବେ ସେବେ ପୁନଃ ସେବେ ତ୍ୱାମେବ ପରଦେବତେ
ତ୍ୱଦ୍ ପ୍ରସାଦାଦବିଘ୍ନେନେନ ପରଂ ସିଦ୍ଧିଂ ଲଭାମହେ ।"

ମୋର ସହପାଠୀ କାଶୀନାଥ ପାଳଙ୍କ ସହ ଦେଖା କଲି । ଏ ଆନ୍ଦୋଳନ ବେଳେ କ'ଣ କର୍ତ୍ତବ୍ୟ-ବିଚାର କଲୁ । ସେତେବେଳକୁ କଂଗ୍ରେସ ସଂଗଠନ ହୋଇ ନଥାଏ । କାହାର ପରାମର୍ଶ ନେବୁ ? ଶେଷକୁ ସ୍ଥିର କଲୁ ଗାଁ ଗାଁ ବୁଲି ପ୍ରଚାର କରିବା । ଖବର କାଗଜ ମାନଙ୍କରୁ ଆନ୍ଦୋଳନ ସମ୍ପର୍କରେ ଯେତିକି ଜ୍ଞାନ ହୋଇଥାଏ ତାକୁଇ ସମ୍ବଳ କରି ପ୍ରଚାର ଚାଲିଲା । ଗାଁମାନଙ୍କରେ ବୁଢ଼ା ବୁଢ଼ା ଲୋକେ ସଭାର ଯୋଗାଡ଼ କରନ୍ତି । ଆମେ ଭାଷଣ ଦେଉଁ । ଲୋକେ ଆମର ବସା ସଞ୍ଜା ଯୋଗାଡ଼ କରି ଦିଅନ୍ତି । ଏହିପରି ପ୍ରଚାର କରୁଁ କରୁଁ ଦିନେ ଆମର ବିଚାର ହେଲା ଅରଟ ଦେଖିନାହୁଁ, ସୂତାକଟା ଦେଖିନାହୁଁ, ଆଉ ଏ ବିଷୟରେ ପ୍ରଚାର ଚଳାଇଛୁଁ । ଶୁଣିଲୁ ପାଲକଷଣ୍ଡା ଗ୍ରାମରେ ବୁଢ଼ୀମାନେ ସୂତା କାଟନ୍ତି । ସେ ଗାଁକୁ ଗଲୁ । ଘର ଘର ବୁଲି ସୂତାକଟା ଦେଖିଲୁ । ପଥର ଚକି ଖଞ୍ଜାଯାଇଥିବା ଅତି ପୁରୁଣା କାଳିଆ ଅରଟ ସବୁ । ମୋଟା ମୋଟା ଝଟାଡ଼କିଆ ସୂତା କଟାହୁଏ । ସାଧାରଣତଃ ସେ ସୂତାରେ ଚାଦର ବୁଣାଯାଏ । କ୍ୱଚିତ୍ କେହି କେହି ସେ ମୋଟା ସୂତାର ଖଦୀ ଓ ଗାମୁଛା ବ୍ୟବହାର କରନ୍ତି । କେତେଦିନ ଏହିପରି ପ୍ରଚାର କରି କରି ଥକିଗଲୁ । ଖବର କାଗଜରୁ ସମଗ୍ର ଭାରତର ବିଭିନ୍ନ ସ୍ଥାନରେ କିପରି ଆନ୍ଦୋଳନ ହୁଏ, କ'ଣ କ'ଣ ଘଟେ, ସବୁକିଛି ଜାଣିଥିଲୁ । ମନରେ ଉଠେ କିମିତି କାହା ପରାମର୍ଶରେ ଆନ୍ଦୋଳନ କରିବାକୁ ହେବ । କେତେଦିନ ପରେ ଆମ ପରୀକ୍ଷା ଫଳ ପ୍ରକାଶିତ ହେଲା । ମୁଁ ପାଶ୍ କରିଛି । କାଶୀନାଥ ପାଳ ମଧ । କଲେଜରେ ଯୋଗ ଦେବାପାଇଁ ନନା, ଦଦା, ସାଙ୍ଗସାଥୀ ବନ୍ଧୁବାନ୍ଧବ ସମସ୍ତେ ଧରି

ବସିଲେ । ଅନିଚ୍ଛା ସତ୍ତ୍ୱେ ସେମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ପାରଳାଖେମୁଣ୍ଡୀ କଲେଜରେ ଅନେକ ସହପାଠୀଙ୍କ ସହ ଯୋଗଦେଲି । ମନ ତ ଚଞ୍ଚଳ ଆନ୍ଦୋଳନ ପାଇଁ । ସାତ ଆଠ ଦିନ ମାତ୍ର ରହି ଟ୍ରାନ୍ସଫର୍ ସାର୍ଟିଫିକେଟ୍ ନେଇ ଚାଲି ଆସିଲି । ମୋ ସାଙ୍ଗରେ ମୋର ବନ୍ଧୁ ରାମଚନ୍ଦ୍ର ଶତପଥୀ ମଧ ଚାଲି ଆସିଲେ । ତାଙ୍କର ଜାତୀୟ ଆନ୍ଦୋଳନରେ ଯୋଗଦେବା ଇଚ୍ଛା ନଥିଲା ।

ସେ ସମୟରେ ପାରଳାଖେମୁଣ୍ଡୀରେ ବ୍ରାହ୍ମଣ କରଣ ଭେଦଭାବ ଅତି ଉତ୍କଟ । ସାହାଯ୍ୟ ଲାଭପାଇଁ ଆମେ ପ୍ରଥମେ ଗୋଟିଏ ବ୍ରାହ୍ମଣ ସାହିକୁ ଗଲୁ । ସେମାନେ ମତେ କହିଲେ, ''ବାବୁ, ତମେ କରଣ ସାହିକୁ ଯାଅ । ଆମେ ଯାଙ୍କ କଥା ଦେଖୁଛୁ ।'' ମୁଁ ଆଉ କରଣ ସାହିକୁ ଗଲିନାହିଁ । ବ୍ରାହ୍ମଣ କରଣଙ୍କ ମଧ୍ୟରେ ପରସ୍ପର ପ୍ରତି ଏପରି ଘୃଣାଭାବ ଦେଖି ମୋର ସେମାନଙ୍କ ପ୍ରତି ଘୃଣା ଜାତ ହେଲା ।

ଅଧକ୍ଷ ଏସ୍.ସି.ରାୟ ବହୁତ ପ୍ରକାର ବୁଝାଇ କଲେଜ ନ ଛାଡ଼ିବାକୁ କହିଥିଲେ । ସାହାଯ୍ୟ ନ ମିଳିଲେ ଆମେ ରହିପାରିବୁନି ବୋଲି ଆଜ ଦେଖାଇ ତାଙ୍କଠାରୁ ଫିଟିଲୁ । ଫେରିବା ବେଳେ ବ୍ରହ୍ମପୁର କଲେଜରେ ଟିକିଏ ଚେଷ୍ଟାକଲୁ । ମାଷ୍ଟର୍ ରାମଲିଙ୍ଗମ୍ (ଯେକି ପରବର୍ତ୍ତୀ କାଳରେ କଲେଜ୍ ତ୍ୟାଗକରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ) ଆମକୁ ଗ୍ରହଣ କରିବାକୁ ରାଜି ହେଲେ । କିନ୍ତୁ ଗଣିତ ନ ନେଇ ଅନ୍ୟ ବିଷୟ ନେବାକୁ ପରାମର୍ଶ ଦେଲେ । ଗଣିତ ନ ଦେଲେ ଆମେ ରହିପାରିବୁ ନାହିଁ କହି ଫେରି ଆସିଲୁ । ଘରେ ଏଣୁ ତେଣୁ କହି ସମସ୍ତଙ୍କ ମନ ବୋଧକଲୁ ।

ପଢ଼ା ତ ଏତିକିରେ ଶେଷ ହେଲା, ରାମଚନ୍ଦ୍ର ଚାକିରି ଖୋଜି ବୁଲିଲେ । ଅନ୍ୟ ଜଣେ ବନ୍ଧୁ କାଶୀନାଥ ପାଢ଼ ଇତି ମଧ୍ୟରେ ବିଶାଖପାଟଣା ମେଡ଼ିକାଲ୍ କଲେଜ୍‌ରେ ଯାଇ ଯୋଗ ଦେଲେଣି । ଏକା ମୁଁ କ'ଣ କରେ । ନନାଙ୍କର ସ୍ୱାସ୍ଥ୍ୟ ନିତାନ୍ତ ଖରାପ । ରସଲକୋଣ୍ଡା ହସପିଟାଲ୍‌ରେ ତାଙ୍କର ଚିକିତ୍ସା ବ୍ୟବସ୍ଥା କରି ତାଙ୍କରି ସେବାରେ ରହିଲି । ରୋଷେଇ ଆସେ ନାହିଁ । ଆମ ବସାଘରେ ସାମାନ୍ୟ କିଛି ଭାତ ଓ ସନ୍ତୁଳା ରାନ୍ଧି ତାଙ୍କ ପାଇଁ ନିଏ ଓ ମୁଁ ଖାଏ । ପ୍ରାୟ ମାସକ ପରେ ସାମାନ୍ୟ ଆରୋଗ୍ୟ ଲାଭ କରିବାରୁ ଗାଁକୁ ଫେରିଲୁ । ଆନ୍ଦୋଳନରେ ଯୋଗ ଦେବାପାଇଁ ଛାଡୁଛନ୍ତି କେତେବେ ? ଛତ୍ରପୁର କଲେକ୍ଟରେଟ୍‌ରେ ଚାକିରୀ କରିବି କହି ଭଣ୍ଡିଦେଇ ବାହାରି ଆସିଲି । ସାନବାପା ଦୁର୍ଗାମାଧବ ପଟ୍ଟନାୟକ ଜାତୀୟ ଭାବାପନ୍ନ ଲୋକ । ସେ କହିଲେ ''ଦେଖିଲୁ, ଆନ୍ଦୋଳନରେ ଯୋଗ ଦେବାପାଇଁ ଛାଡୁନାହାନ୍ତି । ଚାକିରି ଆଶାରେ ସୁଦୂର ଛତ୍ରପୁରକୁ ଏକୁଟିଆ ଯିବାକୁ ଛାଡୁଛନ୍ତି । ଯା, କିଛି ନ ହେଲେ ଆନ୍ଦୋଳନରେ ଯୋଗ ଦେ ।'' ମୋର ତ ସେଇ ଉଦ୍ଦେଶ୍ୟ । ତାଙ୍କର ଏହି ପରାମର୍ଶ ମତେ ଅଧିକ ଉତ୍ସାହିତ କଲା ।

ଖଲିକୋଟ ଗଲି । ଗାଁରୁ ସେଠାକୁ କେଉଁ ବାଟ ଦେଇ କିପରି ଗଲି ମନେ ନାହିଁ ।

ଦିନ ପ୍ରାୟ ଏଗାରଟା, ବାରଟା ବେଳେ ସେଠାରେ ପହଞ୍ଚିଥିଲି । ଦେବାଳୟକୁ ଖାଇବାପାଇଁ ଗଲି । ଘଣ୍ଟା ବାଜିଲା । ଖାଇବାପାଇଁ ବସିଲା ବେଳକୁ ପୂଜାରୀ କହିଲେ ଖଲିଟିଏ ଆଣିଲେ ତହିଁରେ ଖାଇବ । ସେ ଦେଉଳରେ ଭୋଗରାଗ ଖଜା ପିଠା ସବୁ ଖଞ୍ଜା ଅଛି କିନ୍ତୁ ଖଲି ଖଞ୍ଜା ହୋଇନାହିଁ । ବଡ଼ ଅସୁବିଧାରେ ପଡ଼ିଲି । ଖରାବେଳ, ଦୋକାନ ବଜାର ସବୁ ବନ୍ଦ । ବୁଲି ବୁଲି ବହୁ କଷ୍ଟରେ ଖଲିଟିଏ ପାଇଲି । ଆସି ଦେଖିଲି ଲୋକେ ସବୁ ଚାନ୍ଦିନୀ ଉପରେ ପଥର ଝାଡ଼ ଝୁଡ଼ କରି ତା ଉପରେ ପ୍ରସାଦ ସେବନ କରୁଛନ୍ତି । ସେ ପଥରମାନଙ୍କ ଉପରେ ଲୋକେ କେଉଁକାଳୁ ଖାଇ ଖାଇ ପଥର ଗୁଡ଼ିକ ଖାଲୁଆ ହୋଇ କି ସୁନ୍ଦର ଥାଳି ଓ ଗିନାପରି କାମ କରୁଛି । ଖାଇସାରି ସଙ୍ଗେ ସଙ୍ଗେ କେଶପୁର ଷ୍ଟେସନ୍ ଆଡ଼କୁ ଗଲି । ଭାରି ଶୋଷ ହେଲା । ଦେଖିଲି ଗୋଟିଏ ଶଙ୍ଖ ତଳେ କି ସୁନ୍ଦର ନୀଳ ଜଳ । ଧୂଆ ଧୋଇ ହୋଇ ପାଟିରେ ପାଣି ଦେଇଛି ଲୁଣିଆ ଲାଗିଲା । ଖରାରେ ଆସିବାରୁ ମୋ ଦେହ କ'ଣ ହୋଇଗଲା କି ? ପାଣି ଲୁଣିଆ ଲାଗୁଛି କାହିଁକି ? ବଡ଼ ସନ୍ଦେହରେ ପଡ଼ିଲି । ଜଣେ ଲୋକକୁ ଦେଖି ବୁଝିଲି ଉକ୍ତ ପାଣି ଚିଲିକା ହ୍ରଦରୁ ବହି ଆସୁଛି । ଆଶ୍ୱସ୍ତ ହେଲି । ସମୁଦ୍ରର ଲୁଣି ପାଣି ବୋଲି ବୁଝିଲି ।

ଷ୍ଟେସନ୍‌ରେ ଗାଡ଼ିଧରି ଛତ୍ରପୁର ଗଲି । ସେଠାରେ ମୋର ପୂର୍ବ ପରିଚିତ କେତେଜଣ ବନ୍ଧୁଙ୍କ ବସାରେ ରାତିଟି କଟାଇ ବ୍ରହ୍ମପୁରରେ ସ୍ୱରାଜ୍ୟାଶ୍ରମ ଅନୁସନ୍ଧାନ କରି ହିଲ୍‌ପାଟଣାରେ ଥିବା ଆଶ୍ରମକୁ ଗଲି ।

## ସ୍ୱରାଜ୍ୟାଶ୍ରମରେ ଯୋଗଦାନ

ଶ୍ରୀ ନିରଞ୍ଜନ ପଟ୍ଟନାୟକ ଆଶ୍ରମର ଅଧକ୍ଷ । କଲିକତାରେ M.A.B.L ପଢୁଥିଲେ । ପଢ଼ାଛାଡ଼ି ଆନ୍ଦୋଳନରେ ଯୋଗ ଦେଇଛନ୍ତି । ପତଳା ଦେହ ଗୌରବର୍ଣ୍ଣ, ଦାଢ଼ି ନିଶ ଟିକିଏ ଟିକିଏ ବଢ଼ାଇଛନ୍ତି । ପ୍ରତି ମୁହୂର୍ତ୍ତରେ କାର୍ଯରତ । ତାଙ୍କ ସାଙ୍ଗକୁ ଶ୍ରୀ ଦିବାକର ପଟ୍ଟନାୟକ । T.D.L.A. ରୁ କିରାନୀ ଚାକିରି ଛାଡ଼ି ଆସିଛନ୍ତି । କଥାରେ ସବୁବେଳେ ତେଜ, ଦୀର୍ଘକାୟ, ସୁଗଠିତ ବପୁ, ତୀକ୍ଷ୍ଣଦୃଷ୍ଟି, ଦୀର୍ଘ ପଦକ୍ଷେପ କରି ଚାଲନ୍ତି । ସେ ମଧ ନିଶ ଦାଢ଼ି ଛାଡ଼ିଛନ୍ତି । ଇମିତି ଆଉ କେତେକ କର୍ମୀଙ୍କୁ ମଧ ଦେଖିଲି । ବୋଧହୁଏ ପଣ୍ଡିତ ଗୋପବନ୍ଧୁଙ୍କ ଅନୁସରଣରେ ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ କୃପାସିନ୍ଧୁ ମିଶ୍ର, ପଣ୍ଡିତ କୃପାସିନ୍ଧୁ ହୋତା ଏବଂ ଆଚାର୍ଯ୍ୟ ହରିହର ଦାଶ ଦାଢ଼ି ରଖିଛନ୍ତି । ପରବର୍ତ୍ତୀ କାଳରେ ଦେଖିଛି ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀ ନବକୃଷ୍ଣ ଚୌଧୁରୀ ଏପରି ଅନେକ ଦାଢ଼ି ଛାଡ଼ିଥିଲେ । ଦିବାକର ବାବୁ ହାତ ହଲାଇ ହଲାଇ ଦୀର୍ଘ ପଦକ୍ଷେପରେ ଚାଲିବା ବେଳେ ଦେଖିବା ଲୋକେ ଡ଼ରି ଯାଇଥାନ୍ତି । ସବୁବେଳେ

ହସ ହସ ମୁହଁ । କଉତୁକିଆ କଥା । ବଡ଼ ଭାବ ପ୍ରବଣ । ବକ୍ତୃତା ବଡ଼ ଓଜସ୍ୱିନୀ ।

ଶରତ୍ ଚନ୍ଦ୍ର ମହାପାତ୍ର, ବୈକୁଣ୍ଠ ନାଥ ନାୟକ, ଅର୍ଜ୍ଜୁନ ଦାସ, ଭରତ ବେହେରା ଏପରି ଅନେକ କର୍ମୀ । ମୁଁ ତାଙ୍କ ସାଙ୍ଗରେ ମିଶି ଉତ୍ସାହ ସହ କାମ କରିବାରେ ଲାଗିଲି ।

## ଗାଁକୁ ଫେରିଲି

ଦିନେ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ଏକ ଅଧିବେଶନ ହେଲା । ନିରଞ୍ଜନ ବାବୁ ବାଛି ବାଛି କେତେକ ଜାତୀୟ ଭାବାପନ୍ନ ଓକିଲ ଓ ଅନ୍ୟାନ୍ୟ ଭଦ୍ରବ୍ୟକ୍ତିଙ୍କୁ କମିଟୀର ସଭ୍ୟ କରିଥାନ୍ତି । ସଂସ୍କାରକ ଶ୍ରୀବସ ପଣ୍ଡା ଏ କମିଟୀର ସଭାପତି । ସେ ଆସିଥିଲେ । ମତେ ଦେଖି ନନାଙ୍କର ଅସୁସ୍ଥତା କଥା କହିଲେ ଏବଂ ଗାଁକୁ ଯିବାପାଇଁ ପରାମର୍ଶ ଦେଲେ । ତାଙ୍କରି କଥାନୁସାରେ ମୁଁ ଗାଁକୁ ଆସିଲି ।

## କରଣ କାମ ଗ୍ରହଣ ଓ ତ୍ୟାଗ

ନନା ଅସୁସ୍ଥ । ଦଦା ଜଗନ୍ନାଥ ପଟ୍ଟନାୟକ କରଣ ଲେଖା ଲେଖନ୍ତି । ନନା ଛୁଟି ନେଇ ମୋ ନାମରେ କରଣ କାମ କରାଇଲେ । ସେ ସମୟରେ ରସୁଲକୋଣ୍ଡାରେ କରଣ କାର୍ଯୀମାନଙ୍କର ଜମାବନ୍ଦୀ ଆରମ୍ଭ ହୋଇଥାଏ । ମୁଁ ଜମାବନ୍ଦୀ ପାଇଁ ସେଠାକୁ ଗଲି । ଏଣେ ସ୍ୱରାଜ୍ୟାଶ୍ରମ ବ୍ରହ୍ମପୁରଠାରୁ ରସୁଲକୋଣ୍ଡାକୁ ସ୍ଥାନାନ୍ତରିତ ହୋଇଛି । ବଜାର ସାହିରେ ଗୋଟିଏ ଘର ନିଆଯାଇ ସେଠାରେ ଆଶ୍ରମ ସ୍ଥାପିତ ହୋଇଥାଏ । ଏପ୍ରେଲ୍ ମାସ, ପ୍ରଚଣ୍ଡ ଖରା । କର୍ମୀମାନେ ସବୁ ରାତିରେ ଯା ପିଣ୍ଡା ତା ପିଣ୍ଡାରେ ଶୁଅନ୍ତି । ନିରଞ୍ଜନ ବାବୁ ରାତି ୪ଟାରୁ ଉଠି ସମସ୍ତଙ୍କୁ ଉଠାଇ କଠଉ ଖଡ଼ଖଡ଼ କରି ଗାଧୋଇ ଯା'ନ୍ତି । ତା'ପରେ ସମୂହ ପ୍ରାର୍ଥନା ହୁଏ । ସାମାନ୍ୟ ଜଳପାନ ପରେ କର୍ମୀମାନଙ୍କୁ ନିରଞ୍ଜନ ବାବୁ ରାଜନୈତିକ ଶିକ୍ଷା ଦାନ କରନ୍ତି । ତା'ପରେ କର୍ମୀମାନେ ଝୁଲି ମୁଣାଧରି ରସୁଲକୋଣ୍ଡା ଓ ଆଖପାଖ ଗାଁମାନଙ୍କୁ ଭିକ୍ଷା କରିବାକୁ ଯା'ନ୍ତି । ଅନ୍ୟ ଏକ ସାହିରେ ଗୋଟିଏ ଘରେ ରୋଷେଇ ହୁଏ । ପାଳିକରି ସମସ୍ତେ ରୋଷେଇ କରିବା, ପାଣି ଆଣିବା, ବାସନ ମାଜିବା ଇତ୍ୟାଦି କାମ କରନ୍ତି । ଭିକ୍ଷାଲବ୍ଧ ଚାଉଳ, ଗୋଡି ମାଟି ଧାନ ସବୁ ଏମନ୍ତକି ପୋକ ସହ ଗୋଟିଏ ବଡ଼ ମାଟି ହାଣ୍ଡିରେ ପାକ କରାଯାଏ । ଗୋଟାଏ ଡାଲମା ହୁଏ । କେତେ ଧନୀଘର ପିଲା ଆନ୍ଦୋଳନରେ ଯୋଗ ଦେଇଛନ୍ତି । ଘରେ କେତେ ଅଲିଅଳରେ, ସୁଖ ସ୍ୱାଚ୍ଛନ୍ଦ୍ୟରେ, ଭଲମନ୍ଦ ଖାଇ ବଢ଼ି ଆସିଥିଲେ । ଏଠାରେ ସମସ୍ତେ ମହା ଆନନ୍ଦରେ ଆଖିବୁଜି ଖାଇଯାନ୍ତି ଏବଂ ଦିନସାରା ନିରଞ୍ଜନ

ବାବୁଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ କାମରେ ଯୋଗ ଦିଅନ୍ତି ।

ମୁଁ ଆଉ ଜମାବନ୍ଦୀରେ ବନ୍ଦୀ ହୋଇ ରହୁଛି କେତେକ ? ଦିନେ ଯାଇ ନିରଞ୍ଜନ ବାବୁଙ୍କୁ ପୁଣି ଆନ୍ଦୋଳନରେ ଯୋଗଦେବାକୁ କହିଲି । ସତେ ଯେପରି ଉତ୍କଣ୍ଠା ସହ ସେ ମତେ ଚାହିଁ ରହିଥିଲେ । ଆଗ୍ରହର ସହ ଗ୍ରହଣ କଲେ ଏବଂ ସାଙ୍ଗେ ସାଙ୍ଗେ କୁଲାଡ ଅଞ୍ଚଳକୁ ପ୍ରଚାର କରିବାପାଇଁ ପଠାଇଲେ ।

ପ୍ରଥମେ କୁଲାଡ଼ ଗ୍ରାମକୁ ଗଲି । ପାଠ ପଢିବା ବେଳେ ଦୋଳପୂର୍ଣ୍ଣିମା ଉତ୍ସବ ଦେଖିବାପାଇଁ ସହପାଠୀ ମାନଙ୍କ ସହ ପ୍ରତିବର୍ଷ ଯାଇଥାଏ । ଆଉ କୌଣସି ଉଦ୍ଦେଶ୍ୟରେ ଅନ୍ୟ କୌଣସି ସମୟରେ ଯାଇନାହିଁ । ଅପରିଚିତ ଜାଗା ! ସେଠା ଚାଟଶାଳୀକୁ ଗଲି । କସ୍ତୁରୀ ମିଶ୍ର ନାମକ ଅବଧାନଙ୍କ ସହ ପରିଚୟ ଲାଭ କଲି । ଗାନ୍ଧୀ ଲୋକ ବୋଲି ସେ ମୋ ପରିଚୟ ନେଲେ । ସେ ଗାଁର ଇପାରି ରଘୁନାଥ ପାତ୍ର ଓ ସୋମନାଥ ରାଜୁଙ୍କୁ ଡ଼କାଇଲେ । ସେମାନେ ନନାଙ୍କୁ ଜାଣନ୍ତି । ସେଇ ହିସାବରେ ମୋର ପରିଚୟ ପାଇ ଆଗ୍ରହର ସହ ଖାଦ୍ୟ ପେୟର ବ୍ୟବସ୍ଥା ସେଇ ଅବଧାନଙ୍କ ରୋଷେଇରେ ଯୋଗାଡ଼ କଲେ । ଆନ୍ଦୋଳନ ସମ୍ପର୍କରେ ସମସ୍ତ ବିଷୟ ବୁଝାଇଲି ।

## ଶଙ୍ଖିଆ ଭୟ

ସେ ସମୟରେ ସେ ଅଞ୍ଚଳରେ ତଥା ଘୁମୁସରର ସର୍ବତ୍ର ଶଙ୍ଖିଆ ଭୟ ହୋଇଥାଏ । ପ୍ରତିବର୍ଷ ଘମୁସରର ପଲ୍ଲୀ ଅଞ୍ଚଳରେ ଏଇ ଖରାଦିନେ ଶଙ୍ଖିଆ ଭୟ ସଞ୍ଚରିଥାଏ । କୌଣସି ପୋଇ କିମ୍ବା ବନ୍ଧ ବାନ୍ଧିବା ବେଳେ ତାହା ନିର୍ବିଘ୍ନରେ ସମ୍ପନ୍ନ ହେବା ଉଦ୍ଦେଶ୍ୟରେ କୌଣସି ଲୋକ ବା ପିଲାକୁ ନେଇ ଶଙ୍ଖିକାଟି ବଳି ଦିଆଯାଏ ବୋଲି ଗୋଟିଏ ଜନରବ ହୋଇଥାଏ । ଏଇ ଗୁଜବ ଯୋଗୁଁ ଲୋକେ ଆତଙ୍କିତ ହୋଇ ଏକୁଟିଆ ଯା'ଆସ କରନ୍ତି ନାହିଁ । ରାତିରେ ବାହାରେ ଶୁଅନ୍ତି ନାହିଁ । ମୁଁ ତ ଏକୁଟିଆ ଗାଁ ଗାଁ ବୁଲିଲି । କାହିଁ କେଉଁ ଶଙ୍ଖିଆ ମତେ ତ ନେଲା ନାହିଁ । କୁଆଡୁ ବୁଲି ବୁଲି ଆସି ସନ୍ଧ୍ୟାରେ ଚାଟଶାଳୀ ପିଣ୍ଡାରେ ବସି କଥାବାର୍ତ୍ତା ହେଉଛୁ ଏତେ ବଡ଼ ଗାଁର ଦୁଇ ସାହି ଯାକର କବାଟ ଗୋଟିକ ପରେ ଗୋଟିଏ ଧଡ଼ ଧାଡ଼ ପଡ଼ିବା ଶବ୍ଦ ହେଲା । ବୁଝିବାରେ ଜଣାଗଲା ଯେ ଗାଁର ଗୋଟିଏ ମୁଣ୍ଡରେ ଜଣେ କେହି ଶଙ୍ଖିଆ ଆସିଲା ବୋଲି ରଡ଼ିଛାଡି କବାଟ ପକାଇ ଦେଲା । ତା'ର ଦେଖା ଦେଖି ପଡ଼ିଶାକୁ ପଡ଼ିଶା ହୋଇ ଗାଁ ଯାକର କବାଟ ପଡ଼ିବାକୁ ଲାଗିଲା । ଏ କବାଟ ପକା ଦେଖି ରାମାୟଣ ସମ୍ପର୍କୀୟ ଏକ କୌତୁହଳ ମନଗଢା ଗପ ମନେ ପଡ଼ିଗଲା । ରାମଚନ୍ଦ୍ର ଲଙ୍କାରୁ ଅଯୋଧ୍ୟାକୁ ଫେରିବା ପରେ ଏକ ଭୋଜି ଦିଆଗଲା । ମାଙ୍କଡ଼, ରାକ୍ଷସ ଯେତେସବୁ

ଆସିଥିଲେ ଧାଡ଼ି ଧାଡ଼ି ହୋଇ ଭୋଜି ଖାଇ ବସିଛନ୍ତି ତରକାରୀରେ ପଡ଼ିଥିବା ୫ଟା ମଞ୍ଜିଟିଏ ଗୋଟିଏ ମାଙ୍କଡ଼ ଧରି ଚିପିଦେଲା । ମଞ୍ଜିଟି ଡ଼େଇଁ ପଡ଼ିଲା । ମାଙ୍କଡ଼ ଭାବିଲା 'ହାଁ ୫ଟା ମଞ୍ଜି ଡ଼େଇଁ ପଡ଼ିଲା, ମୁଁ କ'ଣ ଡେଇଁ ପାରିବି ନାହିଁ ।'' ଏହାଭାବି ସେ ଡ଼ିଆଁ ମାରିଲା । ତା ପାଖ ମାଙ୍କଡ଼ ତାକୁ ଦେଖି, ତା ପାଖ ମାଙ୍କଡ଼ ତାକୁ ଦେଖି, ଏପରି କ୍ରମାନ୍ୱୟରେ ସମସ୍ତେ ଡ଼ିଆଁ ମାରିଲେ । ଡ଼ିଆଁ ଡ଼େଇଁରେ ଖାଦ୍ୟ ପଦାର୍ଥ ସବୁ ନଷ୍ଟ ହେଲା । ଏକଥା ରାଚନ୍ଦ୍ରଙ୍କ କାନକୁ ଗଲା । ଘଟଣା କ'ଣ ବୁଝିବାରେ ୫ଟା ମଞ୍ଜି ଡ଼େଇଁବା ଦେଖି, ଏ କାଣ୍ଡ ହୋଇଥିବା ଜଣାଗଲା । ଏ କବାଟ ପକା ଘଟଣା ମଧ ସେହିପରି । ତହିଁ ଆରଦିନ ନିକଟସ୍ଥ କୋଟି-ବିରାଡି ଗ୍ରାମକୁ ଗଲି । ଜଣେ କୁରୁମ ବୁଢା ଆଗ୍ରହରେ ମତେ ଗ୍ରହଣ କଲେ । ଗାଁ ଚାଟଶାଳୀରେ ଜାଗା ଦେଲେ । ରୋଷେଇ ଆସୁଛିକି ପଚାରିଲେ । ମୁଁ କିଛି ବିଚାର ନ କରି ହଁ ଟିଏ ମାରିଦେଲି । ପୁରୁଣା ଉସୁନା ଚାଉଳ ଓ କାହ୍ନୁଲ ଡ଼ାଲି ଆଣି ଦେଲେ । ତାକୁ ଚୁଲିରେ ବସେଇ ଯେତେ ପାଣି ଦେଉଛି ଆଉ ଶିଝିବାକୁ ନାହିଁ । ଖରାବେଳ, ଲୋକେ ସବୁ ଶୋଇ ପଡ଼ିଲେଣି । ଦରସିଝା ଭାତ ଡ଼ାଲି ଓହ୍ଲାଇ ଦେଲି । ଖାଇ ବସିଲି, କାହିଁକି ଖାଇ ହୁଅଚା ! ଇଆଡେ ସିଆଡେ ସବୁତକ ବାରିଆଡେ ଅଜାଡି ଦେଲି । ଖରା ଭାଙ୍ଗିବା ପରେ ବୁଢା ଆସିଲେ । ମୋ ମୁହଁକୁ ଦେଖି କହିଲେ ''ତମେ କିଛି ଖାଇ ନଥିଲା ପରି ଦିଶୁଛ । ରୋଷେଇ ଆସୁଛି କି ନାହିଁ କେଜାଣି ?'' ଗାଁର କେତେଜଣ ଲୋକ ଆସି ଜମା ହେଲେ । ଭୋକ ତ ଭୋକ, ସେମାନଙ୍କ ସହ ଦି ଚାରିପଦ କଥାବାର୍ତ୍ତା କରି ଅନ୍ୟ ଗାଁକୁ ବାହାରିଲି । ଗାଁ ମୁଣ୍ଡ ଦେକାନରୁ ମୁଢ଼ି ଦି ଚାରି ପଇସାର କିଣି ବାଟରେ ଚୋବାଉ ଚୋବାଉ କ୍ଷୁଧା ନିବାରଣ କଲି । ରୋଷେଇର ଏ ପ୍ରଥମ ଅନୁଭୂତି ।

## ଚନ୍ଦ୍ରଶେଖର ବ୍ରହ୍ମା ଓ ଗୋଦାବରୀଶ ଦାଶଙ୍କ ସହ ସାକ୍ଷାତ

ବାରୁଡ଼ା, ତିଲିସିଙ୍ଗି ପ୍ରଭୃତି କେତେ ଖଣ୍ଡ ଗାଁ ବୁଲି ପୁଣି କୁଲାଡ଼ ଫେରୁଛି ବାଟରେ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମାଙ୍କ ସହ ଦେଖା ହେଲା । ତାଙ୍କର ଜଣେ ଅନୁରକ୍ତ ଶିଷ୍ୟ ଶ୍ରୀ ଗୋଦାବରୀଶ ଦାଶ ପଣ୍ଡିତଙ୍କ ବୁଜୁଳା ବୁଜୁଳି କାନ୍ଧରେ ପକାଇ ତାଙ୍କ ସାଙ୍ଗରେ ଚାଲିଛନ୍ତି । ବ୍ରହ୍ମା ତ ଆମ ଗାଁ ନିକଟ ଲୋକ । ଅନେକ ଥର ଆମ ଘରକୁ ଆସି ନନା, ଦଦାଙ୍କ ସହ ଦେଖା କରିଥିବା ଆଗରୁ ଦେଖିଛି । ସଂସ୍କୃତ ପଢ଼ିବାପାଇଁ ମୋର ପ୍ରବଳ ଇଚ୍ଛା ଥାଏ । ତାଙ୍କୁ ଥରେ କହିବାରୁ ସେ ଲଘୁସିଦ୍ଧାନ୍ତ କୌମୁଦୀ ବହିଟିଏ ଦେଇ ଘୋଷିବାକୁ କହିଥିଲେ । ଅର୍ଥ ନ ବୁଝି ଖାଲି ଘୋଷିବା ଅଭ୍ୟାସ ନ ଥିଲା । କେତେ ପୃଷ୍ଠା ଘୋଷି ବନ୍ଦ କରି ଦେଇଥିଲି । ପଣ୍ଡିତେ ଗୋଦାବରୀଶ ଦାଶଙ୍କ ସହ

ପରିଚୟ କରାଇ ଦେଲେ । ପରିଚୟ ଦେବାବେଳେ ଦାଶଙ୍କର ହସ ହସ ମୁହଁ ଏବଂ ଆଗ୍ରହର ସହ କଥାବାର୍ତ୍ତା କରିବା ଦେଖି ବିମୋହିତ ହୋଇଥିଲି । କିନ୍ତୁ ଜଣେ କେହି ଚୁକୁଟା ବୁଢ଼ା ବ୍ରାହ୍ମଣ ବୋଲି ତାଙ୍କ ପ୍ରତି ସେତେ ଦୃଷ୍ଟି ଦେଇ ନଥିଲି । ପରବର୍ତ୍ତୀ କାଳରେ ସେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ, ପରାମର୍ଶ ଦାତା, ଓ ସହକର୍ମୀ ହୋଇଥିଲେ । ଯଥା ସ୍ଥାନରେ ତାଙ୍କ କଥା ବିସ୍ତୃତ ଭାବେ ବର୍ଣ୍ଣନା କରାଯିବ ।

## ଅୟମାରମ୍ଭ-ଗ୍ରେପ୍ତାର ଓ କାରାଦଣ୍ଡ

ପୁଣି ବାରୁଡ଼ା କୁଲାଡ଼ ହୋଇ ରସୁଲକୋଣ୍ଡା ଫେରିଲି । ମଦ ଦୋକାନ ପିକେଟିଂ ଆରମ୍ଭ । ମୁଁ ପ୍ରଥମ ଦଳରେ ଯୋଗଦେଲି । ୧୯୨୨ ଏପ୍ରେଲ୍ ୧୩ ତାରିଖ ମେଷ ସଂକ୍ରାନ୍ତି, ଜାତୀୟ ସପ୍ତାହ ଆରମ୍ଭ ଦିବସରେ ରସୁଲକୋଣ୍ଡା ନଦୀତଟ ନିକଟସ୍ଥ ମଦ ଦୋକାନ ପିକେଟିଂ କରି ଆମେ ଛ ଜଣ ଗ୍ରେପ୍ତାର ହେଲୁ । ସତ୍ୟ ନାରାୟଣ ପଟ୍ଟନାୟକ, ଭିକାରୀ ଚରଣ ହୋତା, ଶ୍ୟାମ ସୁନ୍ଦର ସାହୁ, ଅବଦୁଲ୍ଲ ରହମନ୍, ରଘୁନାଥ ମିଶ୍ର ଓ ମୁଁ । ତହିଁ ଆରଦିନ ସବ-ମାଜିଷ୍ଟ୍ରେଟ୍ କୋର୍ଟରେ ବିଚାରଣା ହେଲା । ନିରଞ୍ଜନ ବାବୁ ପ୍ରଭୃତି ଆସି ବସିଥାନ୍ତି । ଆତ୍ମପକ୍ଷ ସମର୍ଥନ କରିବା ତ ନଥିଲା । ତଥାପି ସାକ୍ଷୀମାନଙ୍କୁ ଏଣୁ ତେଣୁ ପଚାରି ହଇରାଣ କରିବାକୁ କୌତୁହଳ ଲାଗେ । ପୋଲିସ୍ ସବ୍ ଇନ୍‌ସପେକ୍ଟର ଦିବାକର ପଟ୍ଟନାୟକ ମୋର ମାଉସୀ ପୁଅ ଭାଇ । ସେ ଜଣେ ସର୍କାରୀ ସାକ୍ଷୀ, ତାଙ୍କୁ ପଚାରିଲି "ଆମେ କ'ଣ କରୁଥିଲୁ ?" ସେ କହିଲେ "ମଦ ଦୋକାନ ଆଗରେ ଗୋଳମାଳ କରୁଥିଲ ।" "କେତେବେଳେ ?" ସେ କହିଲେ "ସନ୍ଧ୍ୟାବେଳେ" "କେବେ ?" ସେ କହିଲେ "ପ୍ରତିଦିନ ।" "ଆପଣ କିମିତି ଦେଖିଲେ ? ପ୍ରତିଦିନ ସନ୍ଧ୍ୟାରେ ସେଠାକୁ ଯିବାର ଆପଣଙ୍କର ଅଭ୍ୟାସ ଥାଏ କି ?" ସେତିକିରେ ସେ ଲଜ୍ଜିତ ହୋଇ ମୁଣ୍ଡ ତଳକୁ ପୋତିଦେଲେ । ପରେ ସେ କୋର୍ଟ ବାହାରେ କହିବା ଶୁଣିଲି "ଦେଖହେ ବାଞ୍ଛାନିଧି ଭାଇ ହୋଇ ମତେ କିମିତି ପ୍ରଶ୍ନ କଲେ ।" ବିଚାରଣା ସରିଲା । ଆମେ ସମସ୍ତଙ୍କୁ ବର୍ଷେ ଲେଖାଏଁ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା ।

## କାରାଗାର ଜୀବନ

ଜେଲ୍ ଭିତରେ ପଶିଲୁ । ଆମର ଲୁଗାପଟା ବୁଜୁଳାବନ୍ଧା ହୋଇ ନାମ ଲେଖାଯାଇ ରଖାଗଲା । ଜେଲ ପୋଷାକ ଦିଆଗଲା, ଦୁଇଖଣ୍ଡ ଜଙ୍ଘିଆ, ଦୁଇ ଖଣ୍ଡି କୁରୁତା, ଦୁଇଖଣ୍ଡି ଚାଦର, ଦୁଇଖଣ୍ଡି କୌପୀନ । ସବୁଥିରେ କଳାକଳା ଆୟତାକାର

ଦାଗ, ଗୋଟିଏ କମ୍ବଳ, ଗୋଟିଏ ମୋଟା ମୋଟା ବାରବର୍ଷିଆ ଦଉଡ଼ିରେ ବୁଣାଯାଇଥିବା ପଟି, ଗୋଟିଏ କଳସୀ, ଗୋଟିଏ ମାଟି ମାଣ୍ଡି (ଖାଇବା ବାସନ) । ଆମର ଗୋଡ଼ରେ ଗୋଟିଏ ଲୁହାବଳା ପିନ୍ଧାଗଲା । ନମ୍ବର ଲେଖା ହୋଇଥିବା କାଠପଟା ଦଉଡ଼ିରେ ବନ୍ଧାହୋଇ ବେକରେ ଝୁଲାଇ ଦିଆଗଲା; ଗୋ ବଧ କରି ବେକରେ ପାଳ ଦଉଡ଼ି ପକେଇ ଦାଣ୍ଡରେ ଭିକ ମାଗୁଥିବା ଲୋକପରି ଦିଶିଲୁ । ଗୋଟିଏ ଘରେ ଆମକୁ ରଖାଗଲା । ସେଥିରେ ଇଟା ଓ ମାଟିରେ ତିଆରି ହୋଇଥିବା ସାତ ଆଠଟି ଖଟ । ଘରର କୋଣରେ ରାତିରେ ପ୍ରସ୍ରାବ କରିବାପାଇଁ ଗୋଟିଏ ବଡ଼ ମାଟି ହାଣ୍ଡି ଥାଏ ।

## ଜେଲ ଖାଦ୍ୟ

ସକାଳେ ଗେଞ୍ଜି (ପେଜ ଥିବା ଅନ୍ନ ଭାତରେ ଲୁଣ ପକାଇ ଘାଣ୍ଟି ଜାଉ ଭଳି କରାଯାଇଥିବା ପାଣିଆ ଜିନିଷ) ଏକ ଗ୍ଲାସ୍, ତା ସହିତ ସାମାନ୍ୟ ଚଟଣୀ । ୧୧ଟା ବେଳେ ଭାତ ମୁଦାଟାଏ ଓ କୋଳମ୍ବ (ହରଡ ଡାଲିରେ ଫଳ ମୂଳ, ଶାଗ ପକାଇ ଖଟା ଦିଆଯାଇଥିବା ତର୍କାରୀ) ଏକ ଗ୍ଲାସ । ସନ୍ଧ୍ୟାରେ ୫/୬ଟା ମଧରେ ଓ ଦିନ ୧୧ଟାରେ ଖାଦ୍ୟ ଦିଆଯାଏ । ଖାଇବା ପରେ ଗୋରୁ ଗାଈଙ୍କୁ ଗୁହାଳ ଘରେ ଭରତି କରି ପଦାରୁ ଦ୍ୱାର ବନ୍ଦ କଲାପରି ଆମକୁ ଉପରୋକ୍ତ ଘରେ ପୁରାଇ ପଦାରେ ତାଲା ଦିଆଯାଏ । ଦ୍ୱାର, ଝରକା ସବୁ ଲୁହା ଖାଡ଼ିରେ ତିଆରି । କାଠ ପଟାର କବାଟ ନାହିଁ । ଖରା ବର୍ଷା ଶୀତ ସବୁବେଳେ ଖୋଲା । ଖରାଦିନରେ ମୁଁ କେବଳ କୌପୀନ ମାରି ରହେ । ସମୟେ ସମୟେ ଧିଃ ଧିଃ କରି ନିତମ୍ବରେ ଚାପୁଡ଼ା ମାରି ମେର୍କୋୟା ନାଚ କରେ । କେତେ ଗୀତ କେତେ ହସ କେତେ କୌତୁହଳ ଓ ରହସ୍ୟ ଚାଲିଥାଏ । ପାଠ ପଢ଼ା ମଧ ହୁଏ । ରାତିରେ ଯେପରି ଝାଡ଼ା ନ ମାଡ଼େ ସେଥିପାଇଁ ସମସ୍ତେ ସତର୍କ । କାରଣ ସେ କଥା କରିବାପାଇଁ କିଛି ବ୍ୟବସ୍ଥା ନଥାଏ । ସକାଳେ ୬ଟା ବେଳେ ଦ୍ୱାର ଖୋଲାଗଲେ ଯାଇ, ଶୌଚ କର୍ମ କରିବାକୁ ପଡ଼େ । ନୂଆଁ ମାଟି ବାସନରେ (ମାଣ୍ଡି)ରେ ଭାତ ଲାଗିଯାଏ । ତାକୁ ଛଡ଼େଇବା ପାଇଁ ଗୋଟିଏ ଖପରା ଧରି ମାଜିବାକୁ ପଡ଼େ । ନଚେତ୍ ସେଥିରେ ମାଛି ଭଣ ଭଣ ପିମ୍ପୁଡ଼ି ପଣ ପଣ ।

ଜେଲ ଖାଦ୍ୟ ପରିମାଣ- ସକାଳେ ୪ଆଉନ୍ସ ଚାଉଳର ଗେଞ୍ଜୀ, ମଧାହ୍ନରେ ଭାତ ୯ ଆଉନ୍ସ, ସନ୍ଧ୍ୟାରେ ଭାତ ୭ ଆଉନ୍ସ । ସକାଳେ ଗେଞ୍ଜୀ ସାଙ୍ଗରେ ଟିକିଏ ଚଟଣୀ, ସନ୍ଧ୍ୟା ଓ ସାୟଂ ଭୋଜନରେ କୋଳମ୍ବ । ଏ ଖାଦ୍ୟ ଖାଉଣ୍ଟିଆ ଲୋକଙ୍କୁ ଅଣ୍ଟେ ନାହିଁ । ମୋ ପରି କେତେକଙ୍କର ବଳିଯାଏ । ମାଣ୍ଡିକୁ ପୋଛା ପୋଛି କରି ଖାଇ ହୁଏ ନାହିଁ । ସମସ୍ତଙ୍କର ଅଧା ଅଧି ଭୋଜନ, ଅଜୀର୍ଣ୍ଣ ହେବାର ଆଶଙ୍କା ନାହିଁ ।

ଆମର ସଶ୍ରମ କାରାବାସ । କାମ କରିବାକୁ ପଡ଼େ । ରସୁଲକୋଣ୍ଡା ଜେଲ୍ ଗୋଟିଏ ଛୋଟିଆ ସବ୍ ଜେଲ୍ ହେତୁ କାମ ବେଶି ନ ଥାଏ । ଆମକୁ କେତେଦିନ ବାରମାସିଆ ପତ୍ର ବାଡ଼େଇ ଝୋଟ ବାହାର କରିବା କାମ ଦିଆଗଲା । କଞ୍ଚା ବାରମାସିଆ ପତ୍ର ବାଡ଼େଇବା ବେଳେ ସେଥିରୁ ଦୋର ଛିଟିକି ହାତରେ ପଡ଼େ, କଣ୍ଡୁ ହୁଏ । ଗିବି ଗିବି ହୋଇ ଘିମିରି ଭଳି ଘା' ହୁଏ । ଡାକ୍ତର ଓ ସୁପରିଟେଣ୍ଡେଣ୍ଟଙ୍କୁ ଦେଖାଇଲୁ । ଆମକୁ ସେ କାମ ଦେବାକୁ ମନା କଲେ । ୮/୧୦ ଟା ମଲ୍ଲୀଗଛ ଥାଏ । ସେଥିରେ ପାଣିଦେବା କାମ ଆମ ଛ' ଜଣକୁ ଦିଆଗଲା । ୪/୬ ଢ଼ାଳ ପାଣି ସେଥିପାଇଁ ଯଥେଷ୍ଟ । କିନ୍ତୁ ନିର୍ଦ୍ଦିଷ୍ଟ ସମୟ ଯାଏ ତ କାମ କରିବାକୁ ପଡ଼ିବ । ମୁଁ ଗୋଟିଏ ପନ୍ଥା ବାହାର କଲି । ଦୁଇଜଣ ବ୍ରହ୍ମା ହେବେ ମଳା କରିବେ । ଦୁଇଜଣ ବିଷ୍ଣୁ ହେବେ ପାଣି ଦେବେ ଆଉ ଦୁଇଜଣ ମହେଶ୍ୱର ହେବେ ମଳା ସବୁ ଭାଙ୍ଗି ଦେବେ । ଇମିତି ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ସୃଷ୍ଟି, ପାଳନ, ସଂହରଣ କାମ ଚାଲିଛି ୭/୮ ଦିନ ମଧ୍ୟରେ ସବୁ ଗୁଡ଼ିକ ଗଛ ଚୁଡ଼ୁ ଚୁଡ଼ା ହୋଇ ମରିଗଲା । ଆଉ କିଛି କାମ ନାହିଁ । ଖାଲି ବସିବା, ପୋଥି ପଢ଼ିବା, ଗପସପ କରିବା ଇତ୍ୟାଦି ।

କେତେଦିନ ପରେ ଆଉ କେତେଜଣ ମାସେ ମାସେ ଲେଖାଏଁ କାରାଦଣ୍ଡ ପାଇ ଆସିଲେ । ମଦନମୋହନ ମହାପାତ୍ର, ଗଦାଧର ଦାସ, ବଡ଼ଗଡ଼ ରାଜସଭା ପଣ୍ଡିତ ରାଜଗୁରୁ ଉଜ୍ଜ୍ୱଳେଶ୍ୱର ପାଟଯୋଶୀ ଏବଂ ବଡ଼ଗଡ଼ର ଆଉ କେତେଜଣ । ପାଟଯୋଶୀ ମହାଶୟ କେତେ ଭୋଗ ବିଳାସରେ ବଢ଼ିଛନ୍ତି । ଆମ ସମସ୍ତଙ୍କ ଠାରୁ ବୟୋଜ୍ୟେଷ୍ଠ, ପ୍ରାୟ ୪୦/୫୦ ବର୍ଷ ବୟସ ହେବ । ମାଟି ବାସନରେ ଖାଇ ପାରିଲେ ନାହିଁ । ଅସୁବିଧା ହେଲେ । ବିଧିରେ ନୈଷ୍ଠିକ ବ୍ରାହ୍ମଣ, ମାଟି ବାସନରେ ଖାଇବେ ବା କିମିତି ? ଜେଲ ଭିତରେ ଥିବା ଗୋଟିଏ ବରଗଛରୁ ଆମେ ପତ୍ର ତୋଳି ଆଣି ତାଙ୍କ ପାଇଁ ଖଲି ତିଆରି କରି ଦେଉ । ପୃଥୁଳକାୟ, ଏଡ଼େବଡ଼ ପେଟ ଦୁଇ ତିନିଦିନ ମଧ୍ୟରେ କୁଆଡ଼େ ଶୁଖିଗଲା । ତାଙ୍କୁ ଦେଖିଲେ ବିକଳ ଲାଗେ । ଦେଶାତ୍ମବୋଧର ଜ୍ୱଳନ୍ତ ଉଦାହରଣ ତାଙ୍କଠାରେ ଦେଖିବାକୁ ପାଇଲୁ । ଜପ, ତପ, ମାଳା ତିଳକ ସବୁ ତ୍ୟାଗକରି ''ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ''ର ଉଦ୍ଧାର ପାଇଁ ମହା ଆନନ୍ଦରେ କାରାଗାର ବରଣ କଲେ । ସେ ଥିବା ସମୟରେ ଆମକୁ ଗୀତା, ଭାଗବତ ପଢ଼ି ଶୁଣାନ୍ତି, ସେଥିର ଗୂଢ଼ାର୍ଥ ସବୁ ବୁଝାନ୍ତି । ତାଙ୍କ ସହିତ ମୋର ବିଶେଷ ଘନିଷ୍ଠତା ହୋଇଥିଲା । ଜେଲରୁ ମୁକ୍ତହେବା ପରେ ସେ ପ୍ରତ୍ୟକ୍ଷ ରାଜନୀତି ତ୍ୟାଗକରି ଗୌଡ଼ୀୟ ବୈଷ୍ଣବ ମତାବଲମ୍ବୀ ତ୍ରିଦଣ୍ଡୀ ସନ୍ନ୍ୟାସୀ ହୋଇ ଜୀବନରେ ଶେଷକାଳଯାଏଁ ନିଷ୍ଠାର ସହ ଧର୍ମାଚରଣ କରିଥିଲେ ।

ମଦନମୋହନ ମହାପାତ୍ର ମଧ୍ୟ ବଡ଼ ନୈଷ୍ଠିକ, ସାନଖେମଣ୍ଡୀ ରାଜସଭା ପଣ୍ଡିତଙ୍କ ପୁଅ । ଆମ ସାଙ୍ଗରେ ରସଲକୋଣ୍ଡା ହାଇସ୍କୁଲରେ ପଢୁଥିଲେ । ସେ ସାଙ୍ଗରେ ଚନ୍ଦନ

ଆଣିଥିଲେ । ଆମେ ସବୁ କପାଳରେ ବଡ଼ ବଡ଼ ଚନ୍ଦନ ଟୋପା ମାରି, ସର୍ବାଙ୍ଗ ଚନ୍ଦନ ଚର୍ଚ୍ଚିତ ହୋଇଥାଉଁ । ଜେଲର୍ ମହାଶୟ ଜଣେ ନୈଷ୍ଠିକ ବମ୍ଭାଳି କରଣ । ଆମ ଚିତା ଚନ୍ଦନ ଦେଖି କହନ୍ତି "ଜେଲ ତ ହେଲ । ମାଣ୍ଡିରେ ଖାଇଲ, ଜାତି ବୁଡ଼ାଇଲ ଆଉ ଏ ଚିତା ପଇତାରେ କି ଲାଭ ?" କେତେ ଦିନପରେ ଆମ ଛ' ଜଣଙ୍କୁ ଅନ୍ୟତ୍ର ବଦଳି ଆଦେଶ ଆସିଲା, ସୁଦୂର ସାଉଥ୍ ଆରକଟ୍ ଜିଲ୍ଲା, କାଡ଼ାଲୋର୍ (ପଣ୍ଡିଚେରୀ ନିକଟ) ଜେଲକୁ ଯିବାକୁ ହେବ । ଯିବାଦିନ ଆମ ଗୋଡ଼ର ଲୁହାବଳା କଢ଼ାଗଲା । ଆମ ନିଜର ଲୁଗାପଟା ଦିଆଗଲା । ଚାରିଜଣ ପୋଲିସ୍‌କନଷ୍ଟେବଳ ଆସିଲେ ଆମକୁ ନେବାପାଇଁ । ଜେଲ ଫାଟକରୁ ବାହାରିବା ବେଳେ ଜେଲ୍ ୱାର୍ଡ଼ରମାନେ କାନ୍ଦି ପକାଇଥିଲେ । ରସଲକୋଣ୍ଡାରୁ ବ୍ରହ୍ମପୁର ଯାଏଁ ୫୦ ମାଇଲ ବାଟ ଚାଲି ଚାଲି ଯିବାକୁ ହେବ । ଗାଡ଼ିର ବ୍ୟବସ୍ଥା ନାହିଁ । ବାଟ ସିନା ଏତେ, ଚାଲି ଚାଲି ଯିବା ମଉଜ ଉପଭୋଗ କରିବା ଆନନ୍ଦରେ ଆମ ମନ ଉତ୍‌ଫୁଲ୍ଲ । ଦୁଇ ଦୁଇ ଜଣଙ୍କର ଗୋଟିଏ ଗୋଟିଏ ହାତକୁ ମିଶାଇ ଗୋଟିଏ ହାତକଡ଼ି ପଡ଼ିଥାଏ । ଭଞ୍ଜନଗର ଦାଣ୍ଡରେ ଚାଲିଗଲା ବେଳେ ଲୋକେ ପିଣ୍ଡାମାନଙ୍କ ଉପରେ ଠିଆହୋଇ ଦେଖୁଥାନ୍ତି । ସମସ୍ତେ ମୁହଁ ଶୁଖାଇ ଆମକୁ ଚାହିଁ ରହିଥାନ୍ତି । ସେ ଦୃଶ୍ୟ ବଡ଼ ଉପଭୋଗ୍ୟ ଏବଂ କରୁଣ । ଆମେ ଜେଲ୍‌ରୁ ବାହାରି ଚାଲି ଚାଲି ଯାଉଥିବା ଖବର ଚାରିଆଡ଼େ ବ୍ୟାପିଗଲା । ସଡ଼କ କଡ଼ ଗାଁ ମାନଙ୍କରେ ଲୋକେ ରୁଣ୍ଡ ହୋଇ ଦେଖୁଥାନ୍ତି । ପରିଚିତ ଲୋକମାନେ ପଦେ ଅଧେ କଥା ହୁଅନ୍ତି । କନେଷ୍ଟବଳ୍‌ମାନେ ବାଧା ଦିଅନ୍ତି ନାହିଁ । ସବୁଠାରୁ କରୁଣ ଦୃଶ୍ୟ ହେଲା ମୋରି ଗାଁ ଗୋବରାଠାରେ ।

ଆମ ଗାଁରେ ପହଞ୍ଚିଲା ବେଳକୁ ଆଖପାଖ ପ୍ରାୟ ୮/୧୦ ଖଣ୍ଡ ଗାଁର ଶହ ଶହ ଲୋକ ଜମା ହୋଇଛନ୍ତି । ଗାଁ ଆଡ଼ୁ ମୋର ରୁଗ୍‌ଣ ପିତା ବାଡ଼ିଖଣ୍ଡେ ଧରି ଅନ୍ୟଜଣଙ୍କ ଉପରେ ଭରାଦେଇ ନଇଁ ନଇଁ ଆସୁଛନ୍ତି । ଦଦାମାନେ ଓ ଗାଁର ସାଙ୍ଗସାଥୀ ସମସ୍ତଙ୍କ ଆଖିରେ ଲୁହ । ନନାଙ୍କ ଅବସ୍ଥା ଦେଖି କୋହ ଉଠିଲା, ଆଖିରୁ ଧାର ଧାର ହୋଇ ଲୁହ ଗଡ଼ିବାକୁ ଲାଗିଲା । ସାନଦଦା ମତେ ସାନ୍ତ୍ୱନା ଦେଉଥାନ୍ତି । କାହାକୁ କିଛି କହିବା ପାଇଁ ପାଟି ଫିଟିଲା ନାହିଁ । ସମସ୍ତେ ଅନୁରୋଧ କଲେ ଘରକୁ ଯାଇ ବୋଉ, ଖୁଡ଼ୀ ଓ ଭଉଣୀମାନଙ୍କୁ ଦେଖି ଆସିବାପାଇଁ, ଯାଉଛି କିମିତି ? ଯାହାହେଉ କନେଷ୍ଟବଳମାନେ ରାଜିହେଲେ । ଦୁଇଜଣ କନେଷ୍ଟବଳଙ୍କ ସହ ଘରକୁ ଗଲି । ବୋଉ ଖୁଡ଼ୀ ଓ ଭଉଣୀମାନେ ତଥା ସାଇପଡ଼ିଶା ସ୍ତ୍ରୀ ଲୋକମାନେ ଭୋ ଭୋ ହୋଇ ରଡ଼ି ଛାଡ଼ିଲେ । ସମସ୍ତଙ୍କୁ ନିର୍ବାକ ପ୍ରଣାମ କରି ତରତର ହୋଇ ବାହାରି ଆସିଲି । ଅନ୍ୟାନ୍ୟ ସମସ୍ତଙ୍କଠାରୁ ବିଦାୟ ନେଇ ଗାଙ୍ଗପୁର ଅଭିମୁଖେ ଗଲୁ । କେତେଜଣ ପଛେ ପଛେ ଗୋଡ଼ାଇଥାନ୍ତି । ରାମଚନ୍ଦ୍ରଙ୍କ ବନ ଗମନ କାଳରେ ଅଯୋଧ୍ୟା ବାସୀ ପଛେ ପଛେ ଗୋଡ଼ାଇଥିବା ତୁଳସୀଦାସଙ୍କ ବର୍ଣ୍ଣନା ମନେ ପଡ଼ିଲା । କାହାକୁ କିଛି କହିବାକୁ ପାଟିରୁ

କଥା ବାହାରୁ ନଥାଏ । ଖାଲି କୋହ ଉଠୁଥାଏ । କ୍ଷତ୍ରିୟ ବଗପୁରଠାରେ ସେହିପରି ବହୁତ ଲୋକ ରୁଣ୍ଡ । ରାତିରେ ରାଙ୍ଗପୁର ପୋଲିସ ଷ୍ଟେସନରେ ଏକ ଛୋଟିଆ କୋଠରୀରେ ଖୁନ୍ଦିହୋଇ ରହିବାକୁ ହେଲା । ହୋଟେଲ୍ ତ ନଥାଏ କାହା ଘରେ ରନ୍ଧାଇ କିଛି ଭାତ ତରକାରୀ ଆସିଲା । ତା' ଖାଇ ରାତିସାରା ସେ କୋଠରୀ ଭିତରେ । ଦୁର୍ଗନ୍ଧ ଯେ ଦୁର୍ଗନ୍ଧ । ଆମ ଆଗରୁ ଜଣେ ଚୋର ବନ୍ଦୀକୁ ସେଠାରେ ରଖାଯାଇଥିଲା । ଆମକୁ ଦେଖି ସେ କାକୁଡ଼ି ହୋଇ ଗୋଟେ କୋଣରେ ଚିପିହୋଇ ରହିଲା । ଆମର ଭଦ୍ରବେଶ ଓ ଆନନ୍ଦରେ କଥାବାର୍ତ୍ତା କରୁଥିବା ଦେଖି ସେ ଆମକୁ ତା'ରି ପରି ବନ୍ଦୀ ବୋଲି ଭାବି ନାହିଁ । ଆମକୁ ରାତିସାରା ନିଦ ନାହିଁ । ଦୁର୍ଗନ୍ଧରୁ ରକ୍ଷା ପାଇବା ପାଇଁ ଗେଟ୍ ପାଖରେ ମୁହଁଟି ମାନ ରଖି ରହିଥାଉଁ । ଛୋଟିଆ ଗେଟ୍ ସମସ୍ତଙ୍କ ପାଇଁ ଜାଗା ହୁଏ ନାହିଁ । ପାଳିକରି ଦୁଇ ତିନିଜଣଙ୍କ ପରେ ଆଉ ଦୁଇ ତିନିଜଣ ବଦଳା ବଦଳି ହୋଇ ରାତିଟି କଟେଇଲୁ । ସକାଳେ କନଷ୍ଟେବଲ୍ ଆସି ଗେଟ୍ ଖୋଲିଲେ । ଶୌଚାଦି କର୍ମ ଶେଷକରି ପୁଣି ଗନ୍ତବ୍ୟ ପଥରେ ବାହାରିଲୁ । ମଧ୍ୟାହ୍ନରେ ବାଲିସିରା ଗାଁର ସଡ଼କ ତଡ଼ ଘରେ ବିଶ୍ରାମ ଓ ଭୋଜନାଦି କରି ସନ୍ଧ୍ୟାରେ ଆସିକାରେ ପହଞ୍ଚିଲୁ । ପୋଲିସ୍ ଷ୍ଟେସନ୍‌ରେ ଆବଦ୍ଧ । ସେଠାରେ ଖାଇବାକୁ ଦିଆଗଲା । ସକାଳେ ଆଉଁ ଚାଲିପାରିବୁ ନାହିଁ ବୋଲି କହିଲୁ । ଦୁଇଟି ଶଗଡ଼ ଦେବାପାଇଁ ଦାବୀ କଲୁ । ସେଠାର ଡାକ୍ତର ସୁବିଖ୍ୟାତ ଚିକିତ୍ସକ ଶ୍ରୀ ବ୍ରଜ ସୁନ୍ଦର ପଟ୍ଟନାୟକ (ସର୍ବତ୍ର କାଲା ଡାକ୍ତର ନାମରେ ପରିଚିତ) ଆସିଲେ । ଗୋଟିଏ ଶଗଡ଼ ଦେବାକୁ ସ୍ଥିର କଲେ । ଆମେ ଆଉ ଖଣ୍ଡେ ପାଇଁ ଅଡି କଲୁ । ସେ କହିଲେ "ଆରେ ବାପ, ତମକୁ ଆଉ ଗୋଟିଏ ଶଗଡ଼ ଦେଲେ ମତେ ମଧ ତମରି ପରି ବାନ୍ଧି ନେଇଯିବେ ।" ଆମେ ସେ ଗୋଟିକରେ ସନ୍ତୁଷ୍ଟ ହୋଇ ବାହାରିଲୁ । ଆମେ କାହିଁକି ଶଗଡ଼ରେ ବସନ୍ତୁ ? ବୁଢ଼ା କନେଷ୍ଟବଳ ମାନଙ୍କୁ ବସିବାପାଇଁ କହିଲୁ । ଆମେ ଗୀତ ନାଟକରି ମଉଜରେ ଚାଲିଥାଉଁ । ଦୁଇ ଦୁଇ ଜଣଙ୍କୁ ହାତକଡ଼ି ଏକାଠି ପଡ଼ିଥାଏ । ମୋ ସରୁଆ ହାତରୁ ଗଳିପଡ଼େ । ମୁଁ ଖାଲି ହାତରେ ଚାଲିବା ଦେଖି କନେଷ୍ଟବଳମାନେ ହାତକଡ଼ିଟି ପିନ୍ଧିବାକୁ ବିନୟରେ କହନ୍ତି । ବାଧହୋଇ ବେଳେ ବେଳେ ଲଗାଇ ପକାଏ । ଏହିପରି ଭାବରେ ଚାଲି ଚାଲି ମଧ୍ୟାହ୍ନରେ ଗୋଟିଏ ଗାଁରେ ବିଶ୍ରାମ ଓ ଭୋଜନ କରି ସନ୍ଧ୍ୟାରେ ବ୍ରହ୍ମପୁରରେ ପହଞ୍ଚିଲୁ । ଆମକୁ କ୍ୱାରେଣ୍ଟାଇନ୍‌ରେ ରଖାଗଲା । ଗ୍ରେପ୍ତାର କିମ୍ବା ସ୍ଥାନାନ୍ତରିତ ହୋଇ ଆସିଥିବା କଏଦୀମାନଙ୍କୁ ସାଙ୍ଗେ ସାଙ୍ଗେ ଜେଲ ଭିତରକୁ ନ ନେଇ କୌଣସି ସଂକ୍ରାମକ ରୋଗ ନେଇ ଆସିଥିବା ଭୟରେ କ୍ୱାରେଣ୍ଟାଇନ୍‌ରେ ଏକ ସପ୍ତାହ ଯାଏଁ ରଖାଯାଏ । ଆମର ଦୁଇ ତିନିଦିନ ପରେ କାଡ଼ାଲୋର ଅଭିମୁଖେ ଯାତ୍ରା କରିବାକୁ ହେଲା । ଏଣୁ ବ୍ରହ୍ମପୁର ଜେଲ୍ ଭିତର ଦେଖିବା ସୁଯୋଗ ପାଇଲୁ ନାହିଁ । ବ୍ରହ୍ମପୁର ରେଳଷ୍ଟେସନ୍‌ରେ ଟ୍ରେନ୍‌ରେ ବସିଲୁ । ବାହାରର ଦୃଶ୍ୟ ଦେଖି ଦେଖି

ବଡ଼ ଆନନ୍ଦରେ ସମୟ କଟିଯାଉଥାଏ । ବିଶାଖାପାଟଣାରେ ଶ୍ରୀ ବିଶ୍ୱନାଥ ଦାଶଙ୍କୁ ଦେଖିଲୁ । ସେ ସେତେବେଳେ ମାନ୍ଦ୍ରାଜ ବ୍ୟବସ୍ଥାପକ କାଉନ୍‌ସିଲ୍‌ର ସଭ୍ୟ ଥିଲେ । ସେଇ ଗାଡ଼ିରେ ମାନ୍ଦ୍ରାଜ ଯାଉଥିଲେ । ଆମକୁ ଗୋଟିଏ ସାନ ଡ଼ାଲରେ ଡ଼ାଲେ ଘିଅ ଦେଇଥିଲେ । ଆମେ ତାକୁ ବାଟଯାକ ଖାଇବା ବେଳେ ବ୍ୟବହାର କଲୁଁ । ମାନ୍ଦ୍ରାଜରେ ପହଞ୍ଚିଲୁ । ଆମକୁ ପୋଲିସ୍ ଷ୍ଟେସନକୁ ନେଇ ଏକ ବିଶାଳ ବିସ୍ତୃତ କକ୍ଷରେ ଆବଦ୍ଧ କରାଗଲା । ବନ୍ଦବସ୍ତର ପୋଲିସ୍ ଷ୍ଟେସନ୍ ।

ମାନ୍ଦ୍ରାଜ ସହରର ଦାଣ୍ଡରେ ଗଲାବେଳେ ଆମକୁ ବନ୍ଧା ଯାଇଥିବା ଶିକୁଳିର ଋଣଝଣ ଶବ୍ଦରେ ଲୋକଙ୍କ ଦୃଷ୍ଟି ଆକର୍ଷିତ ହୁଏ । ଦଳ ଦଳ ହୋଇ ଲୋକେ ଦେଖୁଥାନ୍ତି । ହାଜତ ଭିତରେ ଅଛୁଁ ଜଣେ ଇଂରେଜୀ ସର୍ଜଣ୍ଟ ଆସି ବାହାରୁ ତାଙ୍କର ପିସ୍ତଲ ଆମ ଆଡ଼କୁ ଲକ୍ଷ୍ୟ କରାଇ ଗୁଳି କରିବା ଅଭିନୟ କଲେ । ଆମେ କାହିଁକି ଡ଼ରନ୍ତୁ ? ବରଂ ଛାତି ଦେଖାଇ ଦେଲୁ । ବାପୁଡ଼ା ଲଜ୍ଜିତ ହୋଇ ମୁରୁକି ହସା ଦେଇ ଚାଲିଗଲେ । ମାନ୍ଦ୍ରାଜ ଖାଦ୍ୟ- ଭାତ, ସମ୍ବର, ଚଟଣୀ, ଚହ୍ଲା ଓ ଭଜା ଦିଆଯାଇଥିଲା । ରାତିରେ ଗାଡ଼ିଧରି କାଡ଼ାଲୋର ଅଭିମୁଖେ ବାହାରିଲୁ । କାଡାଲୋର୍ ମାନ୍ଦ୍ରାଜଠାରୁ ଦକ୍ଷିଣକୁ ୧୩୦ ମାଇଲ । ସମୁଦ୍ର ନିକଟ । ଗାଡ଼ିରୁ ଓହ୍ଲାଇ ପ୍ରାୟ ମାଇଲେ ବାଟ ଜେଲ ଆଡ଼କୁ ଚାଲି ଚାଲି ଯିବାକୁ ପଡ଼ିଲା । ଚାରିଆଡ଼େ କି ସୁନ୍ଦର ଦୃଶ୍ୟ । ଯହିଁ ଦେଖିବ ଖାଲି ନଡ଼ିଆ ଗଛ । ତଳ ଉପର ସବୁ ଶ୍ୟାମଳ ବର୍ଣ୍ଣ । ଦୂରରୁ ଜେଲ୍ ଦେଖାଗଲା । ଏକ ଅତ୍ୟୁଚ୍ଚ ସ୍ଥଳରେ ଅବସ୍ଥିତ । ସୁନ୍ଦର ନାଲିଆ ବର୍ଣ୍ଣ ପାଚେରୀ ଭିତରେ ପ୍ରବେଶ କଲୁ । କି ସୁନ୍ଦର ପରିବେଶ । ସମସ୍ତଙ୍କର ଏକ ବଖରିଆ କୋଠରୀ । ଜେଲର କେନ୍ଦ୍ର ସ୍ଥଳରେ ଏକ ଟୱାର । ତା ଚତୁର୍ଦ୍ଦିଗରେ ଆଠ ଧାଡ଼ିରେ ୩୦ଟି ଲେଖା ଏକ ବଖରିଆ ଘର ଲମ୍ବହୋଇ ରହିଛି । ଏହାର ଚତୁର୍ଦ୍ଦିଗରେ ମଣ୍ଡଳାକାର ସଡ଼କ । ତା'ପରେ ଏକ ପାଖରେ ହସ୍‌ପିଟାଲ, ଅନ୍ୟ ପାଖରେ Children's ward । କେଉଁଠାରେ ବିଶାଳ work shop, ଆଉ କେଉଁଠାରେ ବିଶାଳ ରୋଷେଇ ଶାଳ । ଗେଟ୍‌କୁ ଲାଗି ଜେଲ୍ ଅଫିସ୍, ଭଣ୍ଡାର ଘର ଓ ଆଉ କେତୋଟି ଏକ ବଖରିଆ ବଡ଼ ବଡ଼ ବନ୍ଦୀଶାଳା । Shower bath ର ବ୍ୟବସ୍ଥା । ବୋଧହୁଏ ଏହି ସବୁ ସୁବିଧା ଥିବାରୁ ପ୍ରଦେଶ ଯାକର ବହୁ ରାଜନୈତିକ ବନ୍ଦୀମାନଙ୍କୁ ଏଠାକୁ ଅଣାଯାଇଛି ।

ଆମର ଲୁଗାପଟା ବଦଳାଇ ପୁଣି ସେ ଜେଲ୍ ପୋଷାକ ଦିଆଗଲା । ବାଁ ଗୋଡ଼ରେ ଲୁହାବଳା ପିନ୍ଧାଇ ଦିଆଗଲା ଓ ବେକରେ ମୋଟା ଦଉଡ଼ିରେ ବନ୍ଧା ନମ୍ବର ପଟା ଲମ୍ବାଇ ଦିଆଗଲା । ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ବଖରା, ବଖରାର ଗୋଟିଏ କୋଣରେ ଗୋଟିଏ ଛୋଟ ନଳା, ତାକୁ ଲାଗି କାଛ ସହିତରେ ଖଣ୍ଡେ ଜାଗାରେ ତାରୁ ବୋଳା ଯାଇଥାଏ । ପାଣି ପଡ଼ିବା ମାତ୍ରେ ଯେପରି ଗଡ଼ି ପଡ଼ିବ । ସେଠାରେ ରାତିରେ

ଝାଡ଼ା ଫେରିବା ପାଇଁ ଓ ପରିସ୍ରା କରିବାପାଇଁ ଗୋଟିଏ ମାଟି ହାଣ୍ଡି, ଏବଂ କଳସି ଘୋଡ଼ାଇବା ପାଇଁ ଗୋଟିଏ ବଡ଼ ସରା । ଗୋଟିଏ ମାଠିଆ ଏବଂ ପିଇବାପାଇଁ ଆଉ ଗୋଟିଏ କଳସି । ନଡ଼ିଆ କତାରେ ସରୁ ସରୁ ଦଉଡ଼ିରେ ବୁଣା ଯାଇଥିବା ଗୋଟିଏ ପଟି । ଦୁଇଟି କମ୍ବଳ । କମ୍ବଳରୁ ନିତି ଆଞ୍ଜୁଳେ ଲେଖାଏଁ ଲୋମ ଝଡେ । ରାତିରେ ଶୋଇଥିବା ବେଳେ ଅସତର୍କରେ ମୁହଁ ଘୋଡ଼ାଇ ଦେଲେ ନାକ କାନରେ କମ୍ବଳର ଲୋମ ସବୁ ପଶିଯାଏ । ଖାଲି ପଟିରେ ଶୋଇହୁଏ ନାହିଁକି ବସି ହୁଏ ନାହିଁ । କତା ଦଉଡ଼ି ଦେହରେ ପଶିଯାଇ ଦାଗ ହୋଇଯାଏ । ରାତିରେ ଅଗତ୍ୟା ଝାଡ଼ାଗଲେ ସେଥିରେ ବାଲି ପକାଇ ସରା ଘୋଡ଼ାଇ ରଖିବାକୁ ପଡ଼େ । ସେତେ ଦୁର୍ଗନ୍ଧ ହୁଏ ନାହିଁ । ନିଜ ପଇସାରେ ଇନ୍ଧନ କିଣାଯାଏ । କେରୋସିନ୍ ଜେଲ୍ ପକ୍ଷରୁ ଦିଆଯାଏ । ରସଲକୋଣ୍ଡା ଜେଲ୍‌ରେ ଯେପରି ଖାଦ୍ୟ ଏଠାରେ ମଧ୍ୟ ସେହିପରି । ଟିକିଏ ହେଲେ ପରିବର୍ତ୍ତନ ନାହିଁ । ଆଉ ସବୁ ବଡ଼ ମଉଜ, ବଡ଼ ଆନନ୍ଦ ।

ମାନ୍ଦ୍ରାଜ ପ୍ରଦେଶର ପ୍ରାୟ ପ୍ରତ୍ୟେକ ଜେଲରୁ ବିଶିଷ୍ଟ ରାଜନୈତିକ ବନ୍ଦୀମାନଙ୍କୁ ଏଠାରେ ଠୁଳ କରାଯାଇଥିଲା । ଉପର୍ଯ୍ୟୁକ୍ତ ସୁବିଧା ଦୃଷ୍ଟିରୁ କି ଆଉ କେଉଁ କାରଣରୁ କେଜାଣି ?

ପ୍ରଥମେ ଆମେ ଛ' ଜଣ ଓଡ଼ିଆ ଥିଲୁ । ପରେ ପରେ ଆଉ କେତେଜଣ ଆସିଲେ- ଶ୍ରୀ ଦିବାକର ପଟ୍ଟନାୟକ, ଶ୍ରୀ ରାଧାକାନ୍ତ ପାଢ଼ୀ, ଶ୍ରୀ ଅର୍ଜୁନ ଦାସ, ଶ୍ରୀ ଭରତ ବେହେରା, ଶ୍ରୀ ବୃନ୍ଦାବନ ପଣ୍ଡା, ଶ୍ରୀ ଦୀନବନ୍ଧୁ ବେହେରା ପ୍ରଭୃତି ।

ଦିବାକର ବାବୁଙ୍କ ନିଶ ଦାଢ଼ି, ସୁଦୀର୍ଘ ଶରୀର, ଆଜାନୁ ଲମ୍ବିତ ବାହୁ ନାଡ଼ି ନାଡ଼ି ଦୀର୍ଘ ପଦକ୍ଷେପରେ ଚାଲିବା, ତୀକ୍ଷ୍ଣ ଦୃଷ୍ଟି, ରହସ୍ୟପୂର୍ଣ୍ଣ ବାକ୍ୟ ପ୍ରୟୋଗ ଶୁଣିଲେ ଜେଲ କର୍ତ୍ତୃପକ୍ଷ ଆତଙ୍କିତ ହୁଅନ୍ତି । ଯେତେବେଳେ ଯାହା ମାଗିବେ ଜେଲର୍, ୱାଡର ଓ ଡ଼ାକ୍ତର ପ୍ରଭୃତି ସାଙ୍ଗେ ସାଙ୍ଗେ ଦେଇ ପକାନ୍ତି । ବିଶେଷତଃ ଜେଲ ଡ଼ାକ୍ତର ତାଙ୍କୁ ଦେଖି ଦେଖି ଛାନିଆ । ଆମେ କଏଦୀମାନେ ଡ଼ାକ୍ତରଖାନାକୁ ଯାଇ ତୁଚ୍ଛାକୁ ହେଲେ ମଧ୍ୟ ଔଷଧ ମାଗି ହଇରାଣ କରୁ ବୋଲି ଡ଼ାକ୍ତର କମ୍ପାଉଣ୍ଡର୍ ଗେଟ୍ ବନ୍ଦ କରି ଦିଅନ୍ତି । କେବଳ ଦିବାକର ବାବୁଙ୍କ ଭିତରକୁ ପ୍ରବେଶ ନିଷିଦ୍ଧ ନଥାଏ । ସେ ସମସ୍ତଙ୍କ ପାଇଁ ଔଷଧ ଆଣି ବିତରଣ କରନ୍ତି । ତାଙ୍କର ସେ ରୂପ ଓ ଚାଲି ଦେଖି ସାଙ୍ଗକୁ ଏକ ବିଚିତ୍ର ଶବ୍ଦ ଉଚ୍ଚାରଣରୁ ତ୍ରସ୍ତ ହୋଇପଡ଼ନ୍ତି । ସେ ଯାହା ପାଖକୁ ଯା'ନ୍ତି ପ୍ରଥମେ ସେ ଶବ୍ଦ ଉଚ୍ଚାରଣ କରି ପରେ କଥାବାର୍ତ୍ତା ଆରମ୍ଭ କରନ୍ତି । ଯେପରି ଆରମ୍ଭରେ 'ନମସ୍ତେ' 'ଗୁଡ୍‌ମାର୍ଣ୍ଣିଙ୍ଗ' ଇତ୍ୟାଦି କହି ସେ ''ସାଇଁ ସାଇଁ'' ବୋଲି ଗୋଟିଏ ଶବ୍ଦ ଉଚ୍ଚାରଣ କରନ୍ତି । ଯଥା -"Well Doctor, ''ସାଇଁ ସାଇଁ'', Well Jailor "ସାଇଁ ସାଇଁ'' । ଯାହାକୁ ଦେଖନ୍ତି ପ୍ରଥମେ ଏହି ଶବ୍ଦ ବ୍ୟବହାର କରି କଥା ଆରମ୍ଭ କରନ୍ତି । ''ସାଇଁ ସାଇଁ''ର ଅର୍ଥ ନ ବୁଝି ସେମାନେ

ଆତଙ୍କିତ ହେବା ଦେଖି ହସି ହସି ଆମର ପେଟ ଫାଟିଯାଏ । ଦିନେ କ'ଣ ହେଲା କି କୟେଦୀ ସଂଖ୍ୟାରୁ ଜଣେ ଊଣା ପଡ଼ିଗଲା । ସୁପରିଣ୍ଟେଣ୍ଡେଣ୍ଟ, ଜେଲ୍‌ର ଓ ୱାର୍ଡରମାନେ ପ୍ରତି ବଖରା ଗଣତି କରି ଯାଉଛନ୍ତି, ଦିବାକର ବାବୁ ଓ ମୁଁ ଅଡ଼ିସା ପଡ଼ିଶା ଥାଉଁ । ସେମାନେ ଦିବାକର ବାବୁଙ୍କ ବଖରା ଡେଇଁବା ମାତ୍ରେ ଶବ୍ଦ ହେଲା ''ସାଇଁ ସାଇଁ'' । ସେମାନେ ସଙ୍ଗେ ସଙ୍ଗେ ଫେରି ପଚାରିଲେ"What is the matter with you" ? ପୁଣି ଶବ୍ଦ ହେଲା 'ସାଇଁ ସାଇଁ' । ମୋ ପାଖକୁ ଆସି ପଚାରିଲେ "What is the matter with your friend" । ଏକଥା ଦେଖି ହସରେ ମୋ ପେଟ ଫାଟିଗଲାଣି । ଉତ୍ତର କଣ ଦେବି । ବଡ଼ କଷ୍ଟରେ କହିଲି "I don't know." ସେମାନେ ଦିବାକର ବାବୁଙ୍କ ଘର ନମ୍ବରଟି ଟିପି ଚାଲିଗଲେ । ଆମେ ଦୁହେଁ ହସି ହସି ଥେୟା । ସକାଳେ ସେହି ଘର ନମ୍ବର ବ୍ୟକ୍ତିକୁ ଅଫିସକୁ ଯିବାକୁ ଡ଼ାକରା ଆସିଲା । ଦିବାକର ବାବୁ ଡ଼ାକରା ହେବ ବୋଲି ଆଗରୁ ଅନୁମାନ କରି ଘର ବଦଳାଇ ଦେଇ ଅନ୍ୟ ଜଣଙ୍କୁ ସେ ଘରେ ରଖି ଦେଇଛନ୍ତି । ଘର ନମ୍ବର ବାଲା ଗଲେ । ସେ ନୁହନ୍ତି ବୋଲି ତାଙ୍କୁ ଫେରାଇ ଦିଆଗଲା ।

ସେଠାରେ ଆମ ଓଡ଼ିଆମାନଙ୍କର ସ୍ୱାସ୍ଥ୍ୟ କେବେହେଲେ ଖରାପ ହୋଇନାହିଁ । କେବଳ ଭିକାରୀ ଚରଣ ହୋତାଙ୍କୁ ଥରେ ନିମୋନିଆ ହୋଇଥିଲା । ଦିବାକର ବାବୁଙ୍କ ଅକ୍ଳାନ୍ତ ଓ ଅକୃତ୍ରିମ ସେବା ଫଳରେ ସେ ଆରୋଗ୍ୟ ଲାଭ କଲେ । ଦିନେ ସକାଳେ ସେ ଦିବାକର ବାବୁଙ୍କ ସାଙ୍ଗରେ ବୁଲି ଯାଉଛନ୍ତି ସୁପେରିନ୍‌ଟେଣ୍ଡେଣ୍ଟ ଡ଼ାକି କହିଲେ "Hota, don't take violent walks with that man",ଜେଲ କର୍ମଚାରୀମାନେ ଅନ୍ୟ କୟେଦୀମାନଙ୍କ ପ୍ରତି ବଡ଼ ନିଷ୍ଠୁର ବ୍ୟବହାର କରନ୍ତି, କିନ୍ତୁ ଆମ ରାଜନୈତିକ ବନ୍ଦୀମାନଙ୍କ ପ୍ରତି ସେମାନଙ୍କର ସ୍ନେହ ମମତା ଓ ସହାନୁଭୂତି ଥିବା ଦେଖା ଯାଇଥାଏ ।

ଦୀନବନ୍ଧୁ ବେହେରା ଅତି ଅଳ୍ପ ବୟସ୍କ । ୬ଷ୍ଠ ଶ୍ରେଣୀରେ ପଢିବା ବେଳେ ପାଠ ଛାଡ଼ି ଆନ୍ଦୋଳନରେ ଯୋଗ ଦେଇ ୬ ମାସ କାରାବାସ ଦଣ୍ଡ ଭୋଗ କରିଥିଲେ । ତାଙ୍କର ପଢିବା ସ୍ପୃହା ଥିଲା । ଇଂରେଜୀ ବହି ମଗାଇ ଆଣି ମୁଁ ତାଙ୍କୁ ଘଡ଼ିଏ ଘଡ଼ିଏ ଇଂରେଜୀ ଶିକ୍ଷା ଦେଇଥାଏ । ସେ ବଡ଼ ସରଳ, ଶିଷ୍ଟ, ମୃଦୁଭାଷୀ ଓ ଅଳ୍ପ କଥାକେ ତାଙ୍କର ଖିଲିଖିଲି ହସ ।

## ମୋର ସଂସ୍କୃତ ପଢ଼ା

୬ଷ୍ଠ ଶ୍ରେଣୀରେ ପଢିବାବେଳୁ ସଂସ୍କୃତ ପଢିବାପାଇଁ ବିଶେଷ ଆଗ୍ରହ ଥିଲା । ପଣ୍ଡିତ ଚନ୍ଦ୍ର ଶେଖର ବ୍ରହ୍ମା ନନା ଓ ଦଦାଙ୍କୁ ଦେଖା କରିବା ପାଇଁ ଆସନ୍ତି । ତାଙ୍କ ନିକଟରେ ମୋ ଆଗ୍ରହ ପ୍ରକାଶ କରନ୍ତେ ସେ ଏକ ଲଘୁ ସିଦ୍ଧାନ୍ତ କୌମୁଦୀ ବ୍ୟାକରଣ

ବହି ଦେଇ ଘୋଷିବାକୁ କହିଲେ । ରସଲକୋଣ୍ଡା ହାଇସ୍କୁଲ୍ ପଣ୍ଡିତ ଶ୍ରୀ ସତ୍ୟବାଦୀ ବେଦାନ୍ତ ବାଗୀଶ (କଣି ପଣ୍ଡିତ- ପିଲେ ତାଙ୍କୁ ଏହି ନାମରେ ଡ଼ାକନ୍ତି । କାରଣ ତାଙ୍କ ଠାରୁ ବଡ଼ ପଣ୍ଡିତ ଆଉ ଜଣେ ଥାନ୍ତି ) ଗୋଟିଏ ସାରସ୍ୱତ ବ୍ୟାକରଣ ଦେଇ ଘୋଷିବାପାଇଁ କହିଲେ । ଅବଶ୍ୟ ତାହା ଲଘୁ ସିଦ୍ଧାନ୍ତ କୌମୁଦୀଠାରୁ ସରଳ କିନ୍ତୁ ଅର୍ଥ ନ ବୁଝି ଘୋଷିବା ହେଲା ନାହିଁ । ସେତେବେଳ ରସଲକୋଣ୍ଡାରେ ପ୍ରାଇମେରୀ ପାସ୍ ନ କରିଥିବା ଶିକ୍ଷକମାନଙ୍କୁ ୫ମ ଶ୍ରେଣୀ ଶିକ୍ଷା ଦେବାପାଇଁ ଗୋଟିଏ ସ୍କୁଲ ଖୋଲା ଯାଇଥାଏ । ସେଠାରେ ଶିକ୍ଷକ ପୋଲସରାର ଆନନ୍ଦ ରଘୁନାଥ ତତ୍ତ୍ୱନିଧିଙ୍କ ପରାମର୍ଶରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପ୍ରଣୀତ "ଋଜୁପାଠମ୍" ପ୍ରଭୃତି ଛୋଟ ଛୋଟ ସଂସ୍କୃତ ବହି ମଗାଇ ପଢ଼ିଲି । ଆମେ ପଢ଼ିବା ବେଳେ ସ୍କୁଲରେ ସଂସ୍କୃତ ପଢ଼ାଇବା ବ୍ୟବସ୍ଥା ନଥିଲା । ବହୁଦିନ ପରେ ଆମେ ଉଚ୍ଚତର ଶ୍ରେଣୀକୁ ଗଲାବେଳକୁ ଆରମ୍ଭ ହେଲା । ପଣ୍ଡିତ ରଘୁନାଥ ବର୍ମା କାବ୍ୟତୀର୍ଥ ସଂସ୍କୃତ ପଣ୍ଡିତ ଭାବରେ ନିଯୁକ୍ତ ହୋଇ ଆସିଲେ । କିନ୍ତୁ ସେତେବେଳେ ସଂସ୍କୃତ ନେଇ ପଢ଼ିବା କଷ୍ଟକର ବୋଲି ଭାବି ପଢ଼ିଲି ନାହିଁ । କିନ୍ତୁ କାଡ଼ାଲୋର ଜେଲରେ ସେ ସ୍ପୃହା ଚରିତାର୍ଥ ହେଲା । ଭାଗ୍ୟକ୍ରମେ କର୍ଣ୍ଣାଟକର ସଂସ୍କୃତ ଓ ଇତିହାସ ଉଭୟ ବିଷୟରେ ଗ୍ରାଜୁଏଟ୍ ଶ୍ରୀ ଦତ୍ତାତ୍ରେୟ କୃଷ୍ଣଭାରଦ୍ୱାଜଙ୍କୁ ଶିକ୍ଷକ ରୂପେ ପାଇଲି । ସେ ବମ୍ବେରୁ ଓ ତାଙ୍କ ଘରୁ ପୁସ୍ତକ ମଗାଇଲେ । ମୋର ସଙ୍ଗୀ ଶ୍ରୀ ରଘୁନାଥ ମିଶ୍ର ମୋ ସାଙ୍ଗରେ ଯୋଗ ଦେଲେ । କିନ୍ତୁ ସେ ପାରିଲେ ନାହିଁ । ମୁଁ ବରାବର ପଢ଼ିବାରେ ଲାଗିଲି । ତ୍ରିବେଦୀଙ୍କ The Sanskrit Teacher ୧ମ ଓ ୨ ୟ ଭାଗ ଏକମାସ ମଧ୍ୟରେ ନିୟମିତ ଭାବରେ ପଢ଼ି ଶେଷ କଲି । ସଂସ୍କୃତ ଶ୍ଳୋକ ଓ ଗଦ୍ୟ ବୁଝି ପାରିବା ଭଳି ସାଧାରଣ ଜ୍ଞାନ ହୋଇ ପାରିଲା । ସେ ଅଣାଇ ଥିବା ଅନ୍ୟାନ୍ୟ ପୁସ୍ତକ ଦଶକୁମାର ଚରିତ, କୁମାରସମ୍ଭବଂ, ଉଟ୍ଟି କାବ୍ୟଂ ମାନଙ୍କରୁ କିଛି କିଛି ପଢ଼ିଲି ।

ଦତ୍ତାତ୍ରେୟ କୃଷ୍ଣଭାରଦ୍ୱାଜ ଜଣେ ମହା ଜ୍ଞାନୀ ବ୍ୟକ୍ତି, ବଡ଼ କୌତୁହଳ ପ୍ରିୟ । ସେ ନାନା ପ୍ରକାର ରହସ୍ୟପୂର୍ଣ୍ଣ କଥା କହି ସମସ୍ତଙ୍କର ମନୋରଞ୍ଜନ କରିଥାନ୍ତି । ଏତେ ବିଷୟ ମନେ ରଖିଥାନ୍ତି ଯେ ତାଙ୍କୁ କର୍ଣ୍ଣାଟକର The Living Encyclopaedia ଆଖ୍ୟା ଦିଆ ଯାଇଥାଏ । ବେଲ୍‌ଗାମ୍ କଂଗ୍ରେସ୍ ଅଧିବେଶନର Guide ପୁସ୍ତକରେ ତାଙ୍କର ପରିଚୟ ଏହି ନାମରେ ଦିଆଯାଇଥିଲା ।

ଥରେ ମୁଁ ତାଙ୍କୁ ଆଧାତ୍ମିକ, ସାମାଜିକ ଏବଂ ରାଜନୈତିକ କେତେକ ପୁସ୍ତକର ତାଲିକା ଦେବାକୁ କହିଲି । ସେ ସଙ୍ଗେ ସଙ୍ଗେ ପ୍ରାୟ ୧୦୦ ଖଣ୍ଡ ବହିର ନାମ, ଦାମ, ପ୍ରାପ୍ତିସ୍ଥାନ ଇତ୍ୟାଦି ଲେଖି ଏକ ତାଲିକା କରି ଦେଇଥିଲେ । ସେ ଥିଲେ ଶ୍ରୀ ବାଳ ଗଙ୍ଗାଧର ତିଳକଙ୍କ ଅନୁଗତ ଜଣେ ବିପ୍ଳବୀ । ମହାତ୍ମା ଗାନ୍ଧୀଙ୍କ ଅହିଂସା ନୀତିରେ

ତାଙ୍କର ସେତେ ବିଶ୍ୱାସ ନଥିଲା । ଆନିବେସାଣ୍ଟଙ୍କର ସେ ଘୋର ବିରୋଧୀ ଥିଲେ । ଭାରଦ୍ୱାଜ ମହାଶୟଙ୍କ ସାନ୍ନିଧରେ ଜେଲ ଜୀବନ ମଧୁମୟ ହୋଇ ଉଠିଥିଲା । ଆନ୍ଧ୍ର ନେତା କୋଣ୍ଡ ବେଙ୍କଟା ପାପୟା, କଳେଶ୍ୱର ରାଓ, ଡ଼କ୍ଟର ସୁବ୍ରମଣ୍ୟଂ ଆଦି ବହୁ ବଡ଼ ବଡ଼ ବିଶିଷ୍ଟ ନେତାମାନେ ଥାନ୍ତି । ମାନ୍ଦ୍ରାଜର ୟାକୁବ୍ ହୁସେନ୍ ଜଣେ ବଡ଼ ଲୋକ । ତାଙ୍କର Simple imprisonment ହୋଇଥିଲା । ତାଙ୍କୁ ଦୁଇ ବଖରା ଘର ଦିଆଯାଇଥାଏ, ଏବଂ ତାଙ୍କ ପାଇଁ ସ୍ୱତନ୍ତ୍ର ଭାବେ ରୋଷେଇ କରିଦେବାପାଇଁ ଜଣକୁ ନିଯୁକ୍ତ କରାଯାଇଥାଏ । ସେ ପରବର୍ତ୍ତୀ କାଳରେ ମାନ୍ଦ୍ରାଜ କଂଗ୍ରେସ ମନ୍ତ୍ରୀ ମଣ୍ଡଳରେ ଶିକ୍ଷାମନ୍ତ୍ରୀ ଆସନ ଗ୍ରହଣ କରିଥିଲେ । ଆମ ସାଙ୍ଗରେ ରସଲକୋଣ୍ଡାର ଅବଦୁଲ୍ ରହମନ ନାମକ ଜଣେ ମୁସଲମାନ୍ ଥାନ୍ତି । ତାଙ୍କରି ଯୋଗୁ ଆମର ୟାକୁବ୍ ହୁସେନ୍‌ଙ୍କ ସହ ପରିଚୟ ହେଲା ଓ ଘନିଷ୍ଠତା ହୋଇଥିଲା । ଦିନେ ସେ ଆମ୍ଭମାନଙ୍କୁ ତାଙ୍କ ସହ ଭୋଜନ କରିବା ପାଇଁ ନିମନ୍ତ୍ରଣ କଲେ । ଖାଇବା ବେଳେ ସେ କହିଲେ, ''ମୁଁ ଆଫଗାନିସ୍ଥାନର ଅମୀର୍ ଏବଂ ତୁର୍କୀର ସୁଲତାନଙ୍କ ସହ ଭୋଜନ କରିଛି । କିନ୍ତୁ ଆଜିର ପରି ଆନନ୍ଦ କେବେ ଉପଭୋଗ କରି ନଥିଲି ।''

## ମୋର ଦୈନନ୍ଦିନ କାର୍ଯ୍ୟକ୍ରମ

ସକାଳେ ୪ଟା ବେଳେ ଉଠି ଘର କୋଣରେ ନିର୍ଦ୍ଦିଷ୍ଟ ଜାଗାରେ ଶୌଚାଦି କର୍ମ ସମାପନ କରି ଅଣ୍ଡାପାଣି କରି ପକାଏ । ମଳ ଉପରେ ଭଲ ଭାବରେ ବାଲି ପକାଇ ଢାକୁଣୀ ଘୋଡାଇ ଦିଆଯାଇଥାଏ ଯେପରି ଦୁର୍ଗନ୍ଧ ନ ଆସେ । ଠିକ୍ ଦୁଆର ମୁହଁରେ କତା ପଟିଟି ପକାଇ ଦିଏ, କମ୍ବଳ ଦୁଇଟି ଚଉତି ତା ଉପରେ ଥୋଇଦିଏ, ସେହି ଆସନ ଉପରେ ବସି ସୂର୍ଯ୍ୟୋଦୟ ପ୍ରାର୍ଥନା କରେ । ୬ଟା ବେଳେ କବାଟ ଖୋଲାଯାଏ । ମଳ, ମୂତ୍ର ପାତ୍ରଟିମାନ ବାହାରେ ଥୋଇ ଦେଇ ପ୍ରାତଃ ଭ୍ରମଣରେ ବାହାରେ । ଉପର ବର୍ଣ୍ଣିତ ଗୋଲାକାର ରାସ୍ତାରେ ଘେର ମାରି ବୁଲିବାକୁ ହୁଏ । ଫେରିଲା ବେଳକୁ ଗେଞ୍ଜି ଓ ଚଟଣୀ ଆସି ହାଜର । ସେଥିରୁ ଏକ ପିଣ୍ଟ ବା ଗୋଟିଏ ବଡ଼ ଗ୍ଲାସ୍‌ରେ ଗ୍ଲାସେ । ଚଟଣୀ ଟିକିଏ ଚାଟି ଚାଟି ପିଇଦିଏ । ତାପରେ ପଢାପଢି । କିଛି ସମୟ ପରେ ଭାରଦ୍ୱାଜଙ୍କଠାକୁ ସଂସ୍କୃତ ପଢିବାକୁ ଯାଏ । ସେଠାରୁ ଫେରି ଦୀନବନ୍ଧୁଙ୍କୁ ଇଂରାଜୀ ପଢାଏ । ସ୍ନାନପରେ ୧୧ଟା ବେଳେ ପୁଣି ଏକ ପ୍ରାର୍ଥନା ! ଖାଦ୍ୟ ଆସେ ଏକ ଭାତ ମୁଦା ଏବଂ କୋଳମ୍ବ । ଠିକ୍ ରସଲକୋଣ୍ଡା ଜେଲପରି । ତା'ପରେ ପଢାପଢି । ଯେତେ ଲୋକ ଜେଲକୁ ଆସିଥିଲେ ସମସ୍ତଙ୍କ ପାଖରେ କିଛି ନା କିଛି ପୁସ୍ତକ ଥାଏ । ଆଧାତ୍ମିକ, ସାମାଜିକ, ରାଜନୈତିକ ସବୁ ପ୍ରକାରର, ସେ ସବୁ ଏକାଠିକଲେ ଏକ ବିଶାଳ ପାଠାଗାର ହେବ । ବିବେକାନନ୍ଦଙ୍କ

ଜୀବନୀ ( By his Eastern and Western Disciples) ବିବେକାନନ୍ଦଙ୍କ ପ୍ରଣୀତ ଭକ୍ତିଯୋଗ, କର୍ମଯୋଗ, ଜ୍ଞାନଯୋଗ ଇତ୍ୟାଦି, ''ମ'' (ମହେନ୍ଦ୍ର ନାଥ ଗୁପ୍ତ) ପ୍ରଣୀତ ରାମକୃଷ୍ଣ କଥାମୃତ, ହରବିଳାସ ସାରଦାଙ୍କ ପ୍ରଣୀତ "The Hindu Superiority" ଇମିତି ଅନେକ ବହି । ପଢ଼ିବାକୁ ସମୟ ଅଣ୍ଟେ ନାହିଁ । ଅପରାହ୍ନ ୩ଟା ବେଳେ ଶୌଚାଦି କର୍ମ ସମାପନାନ୍ତେ ପଢ଼ାପଢ଼ି ଓ ପ୍ରାର୍ଥନା । ୫ଟା ବେଳେ ସେଇ ଭାତ ମୁଦା କୋଳମ୍ବ ଆସିଯାଏ । ଖାଇସାରି କିଛି ସମୟ ଭ୍ରମଣ କରି ଆସି ପୋଡ଼, ଗୋରୁପରି ଗୁହାଳ ଭିତରେ ଢୁକିବାକୁ ହୁଏ । ବାହାରୁ ତାଲା ପଡ଼ିଯାଏ । ପୁଣି ପ୍ରାର୍ଥନା ଓ ରାତି ୧୧ଟା ଯାଏ ପଢ଼ାପଢ଼ି । (ଲଣ୍ଠନ ଆମ ପଇସାରେ କିଣା ହୋଇଥାଏ । କିରାସିନୀ କିନ୍ତୁ ଜେଲ ପକ୍ଷରୁ ମିଳେ) ପୁଣି ଶୋଇବା ପୂର୍ବରୁ ପ୍ରାର୍ଥନା ।

ଇଗ୍ନେସିୟସ୍ ନାମକ ଜଣେ କ୍ୟାଥଲିକ୍ ଖ୍ରୀଷ୍ଟିଆନ୍ କେରଳୀ ବନ୍ଦୀ, ପ୍ରତ୍ୟେକ ବ୍ଲକ୍ଷରାରେ ଥିବା ବ୍ୟକ୍ତି କିଏ କିମିତି ସମୟ କଟାନ୍ତି ଲକ୍ଷକରି ଟିପି ରଖିଥାନ୍ତି । ମୋ ସମ୍ପର୍କରେ ଲେଖିଥିଲେ ''ଜଣେ ଆଧ୍ୟାତ୍ମିକ ସାଧକ ।'' ଜଣେ ପୁରୋହିତ ଜେଲ ଯାଇଥିଲେ । ଭାରି କର୍ମକାଣ୍ଡୀ । ପ୍ରତ୍ୟେକ ପର୍ବପର୍ବାଣୀ ତାଙ୍କ ପରାମର୍ଶରେ ପାଳିତ ହୁଏ । ପ୍ରାର୍ଥନା, ପୂଜା, ସଙ୍ଗୀତ ଓ ଭାଷଣମାନ ହୁଏ । ଜଣେ ମୁସଲମାନ ବାଦ୍ୟକାର ଥାନ୍ତି । ଜେଲରେ ବାଦ୍ୟ କାହୁଁ ମିଳିବ ? ଗୋଟିଏ ମାଟି ମାଠିଆର ମୁହଁକୁ ପେଟକୁ ଲଗାଇ ତା'ରି ଉପରେ ବିଚିତ୍ରବାଦ୍ୟ ବଜାନ୍ତି । ପୁରୋହିତ ମହାଶୟ ବୃଦ୍ଧ, ସଂସ୍କୃତରେ ଶାସ୍ତ୍ରୀ ଉପାଧିଧାରୀ, ନାଭିସ୍ପର୍ଶୀ ଧବଳ ଶ୍ମଶ୍ରୁ । ସାକ୍ଷାତ୍ ବଶିଷ୍ଠ ଋଷିପରି । ହିନ୍ଦୁ ମୁସଲମାନ, ଖ୍ରୀଷ୍ଟିୟାନ ଭେଦଭାବ ଶୂନ୍ୟ । ତାଙ୍କରି ଯୋଗୁଁ ନାନାପ୍ରକାର ପୂଜା ସାମଗ୍ରୀ ଖାଇବାକୁ ମିଳେ ।

ଜେଲ ଭିତରେ ବହୁତ ନିୟଗଛ ଥାଏ । ପାଚିଲା ନିମ୍ବକୋଳି ଯଥେଷ୍ଟ ଖାଉ, ରଙ୍ଗାଳିଆ ତୁଣ୍ଡ ତ । ଆମକୁ ବର୍ଷେ ଲେଖାଏ ଜେଲ ଦଣ୍ଡ ହୋଇଥିଲା । କେତେଜଣଙ୍କୁ ତଦୁର୍ଦ୍ଧ୍ୱ ମଧ୍ୟ । କାହାକୁ ୬ମାସ ଓ କେତେକଙ୍କୁ ୩ମାସ ମଧ୍ୟ । ସେମାନେ ଖଲାସ ହେଲା ବେଳେ ଆମ ସମସ୍ତଙ୍କଠାରୁ ଘର ଘର ବୁଲି ବିଦାୟ ନେଇଥାନ୍ତି । ଦିନକର ଘଟଣା । ମାନ୍ଦ୍ରାଜର ବାପ, ପୁଅ ଦୁଇଜଣ ଉଭୟେ B.A.B.L ଓକିଲ । ଏକା ଦିନରେ, ଏକା ସମୟ ପାଇଁ ଜେଲ ଆସିଥିଲେ । ତାଙ୍କର ଖଲାସ ହେବା ଦିନ ସେ ଦୁହେଁ ବୁଲି ବୁଲି ବିଦାୟ ନେଉଥାନ୍ତି । ଆମେ ସବୁ ଅଳ୍ପ ବୟସ୍କ ବୋଲି ଆମକୁ Children ward ରେ ରଖାଯାଇଥିଲା । ଓକିଲ ବୁଢ଼ା ଆସି ଆମକୁ କୁଣ୍ଢେଇ ପକାଇଲେ । ଆଖିରୁ ଲୁହ ଧାର ଧାର ଗଡ଼ି ଯାଉଥାଏ, କହିଲେ ''ଆମର ଯୌବନାବସ୍ଥାରେ ଯଦି ଆମେ ଲଢ଼ି ସ୍ୱାଧୀନତା ଲାଭ କରିଥାନ୍ତୁ ତା' ହେଲେ ଏପରି ଛୋଟ ଛୋଟ ପିଲାମାନେ ଏ କୋମଳ ବୟସରେ କାହିଁକି କାରାବାସ କଷ୍ଟ ଭୋଗିଥାନ୍ତେ ?'' ତାଙ୍କର କି ଦେଶାତ୍ମବୋଧ, କି

ଅନୁରାଗ, କି ସହାନୁଭୂତି ଓ ବାତ୍ସଲ୍ୟ ପ୍ରେମ !

କାଡ଼ାଲୋର୍ ଜଳବାୟୁ ବଡ଼ ସୁଖପ୍ରଦ । ପ୍ରାୟ ସମୁଦ୍ରକୂଳ ନିକଟ, ପଣ୍ଡିଚେରୀରୁ ଅଳ୍ପ ବାଟ । ଖରା ସେତେ ଟାଣ ନୁହେଁ । ବର୍ଷା ତ ରାମରାଜ୍ୟ ବର୍ଷା । ରାତିରେ ଝଡ଼ଝଡ଼ ହୋଇ ବର୍ଷା ହୁଏ । ସକାଳେ ନିର୍ମଳ ସୂର୍ଯ୍ୟକିରଣ । ଦିନ ବେଳେ ଆକାଶରେ ମେଘଥିବା ଆମେ କେବେ ଦେଖିନାହୁଁ, କି ବର୍ଷାରେ ତିନି ନାହୁଁ । ସକାଳେ ଝଡ଼ି ପୋକ ସବୁ ଯୋଡ଼ି ଯୋଡ଼ି ହୋଇ ଅଗଣାଯାକ ଚାଲୁଥାନ୍ତି । ସାଧାରଣ କୟେଦୀମାନେ ସକାଳେ ଆସି ଝାଡୁଦିଅନ୍ତି । ଝଡ଼ିପୋକ ଗୁଡ଼ାକୁ ଆଞ୍ଜୁଳା ଆଞ୍ଜୁଳା ଅଣ୍ଟିରେ ପୁରାଇ ଖାଇବାପାଇଁ ନେଇଯାନ୍ତି । ଜୀଅନ୍ତା ପୋକ ଖାଇ ପକାନ୍ତି । ଖଲାସ ହେବାପରେ କାଡ଼ାଲୋର୍ ବଜାରରେ ଝଡ଼ିପୋକ ଶୁଖୁଆ ପାହାଡ଼ ପରି ଗଦା ହୋଇଥିବା ଦେଖିଲୁ । ଆମେ ଗଞ୍ଜାମୀ ଲୋକମାନଙ୍କୁ ପୁରୀ ପଣ୍ଡାମାନେ ଦକ୍ଷିଣୀ ଝଡ଼ିପୋକ ଖିଆ ବୋଲି ଚୁଗୁଲି କରନ୍ତି । ସତରେ ତ ଦକ୍ଷିଣୀମାନେ ଝଡ଼ିପୋକ ଖିଆ । ତା' ବୋଲି ଦକ୍ଷିଣ ପ୍ରାନ୍ତର ସବୁ ଜାତିର ଲୋକ କ'ଣ ଝଡ଼ିପୋକ ଖା'ନ୍ତି ? ସୁଦୂର ଦକ୍ଷିଣର ନୀଚ ଜାତିର ଲୋକେ ଝଡ଼ିପୋକ ଖା'ନ୍ତି ବୋଲି ସମସ୍ତ ଦକ୍ଷିଣୀ ଝଡ଼ିପୋକ ଖିଆ ହୋଇଗଲେ । ପୁରୀ ପଣ୍ଡାଙ୍କର ଏହା ଏକ ଧୃଷ୍ଟତା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କୋରାପୁଟ ଜିଲ୍ଲାର କେତେଜଣ ସାଧାରଣ କୟେଦୀ ଦିନେ ଆମ ଅଗଣା ଝାଡୁ କଲାବେଳେ ଓଡ଼ିଆରେ କଥାବାର୍ତ୍ତା ହେବା ଶୁଣି ତାଙ୍କୁ ଡ଼ାକି ପାଖରେ ବସାଇ କେତେ ସମୟ କଥାବାର୍ତ୍ତା ହେଲୁ । ଆହା ! ମାତୃଭାଷାର କି ମାଦକତା ! ଅନ୍ୟ ଭାଷାଭାଷୀ ଅଞ୍ଚଳରେ ନିଜ ମାତୃଭାଷାରେ କଥାହେବା ଶୁଣିଲେ କି ଆନନ୍ଦ ଲାଗେ । ସେମାନଙ୍କୁ ନିଜର ଆତ୍ମୀୟ ବୋଲି ମନେହୁଏ । ପ୍ରତିଦିନ ସେମାନଙ୍କୁ ଦେଖିବାକୁ ଯାଉ । ସେମାନେ ମଧ୍ୟ ବେଳେ ବେଳେ ଆମମାନଙ୍କ ନିକଟକୁ ଆସି କଥାବାର୍ତ୍ତା କରିଯା'ନ୍ତି । ତାଙ୍କୁ ଦେବାପାଇଁ ଆମ ପାଖରେ କ'ଣ ବା ଅଛି ? ଖାଲି ନୁଖୁରା କଥା ପଦେ । ଆମେ ଖଲାସ ହେବା ଦିନ ସେମାନଙ୍କଠାରୁ ବିଦାୟ ନେଲା ବେଳେ ବହୁତ କାନ୍ଦିଲେ । ଆମ ଆଖିରୁ ମଧ୍ୟ ଲୁହ ବୋହିଗଲା ।

ଜେଲ ଭିତରେ ମୁଁ ଗୋଟିଏ ଦୁଃଖମୟ ଦାରୁଣ ସମ୍ବାଦ ପାଇଲି, ମୋର ସାନଦଦା ଦୁର୍ଗାମାଧବ ପଟ୍ଟନାୟକ ଇହଧାମ ତ୍ୟାଗ କଲେ । ସେ ଏକାଧାରରେ ମୋର ଦଦା, ଗୁରୁ ଓ ରାଜନୈତିକ ଭାବଧାରାର ପ୍ରେରଣା ଦାତା ଥିଲେ । ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାପାଇଁ ତାଙ୍କର ମଧ୍ୟ ଇଚ୍ଛା ଥିଲା । କିନ୍ତୁ କେତେକ ଅପରିହାର୍ଯ୍ୟ କାରଣରୁ ସେ ସୁଯୋଗ ପାଇ ନଥିଲେ । ତାଙ୍କର ଏ ଅକାଳ ବିୟୋଗ ସମ୍ବାଦରେ ମୁଁ ମର୍ମାହତ ହୋଇପଡ଼ିଲି । ୨/୪ ଦିନ ପର୍ଯ୍ୟନ୍ତ ଆହାର, ନିଦ୍ରା ଓ ଅନ୍ୟାନ୍ୟ କୌଣସି କଥାରେ ମନ ଲାଗିଲା ନାହିଁ । ବହୁ ଦୂରରେ ତଥା ବନ୍ଦୀଶାଳାରେ

ଆବଦ୍ଧ ରହିଥିବା ହେତୁ ପରିବାର ବର୍ଗଙ୍କ ସହ ସମଦୁଃଖୀ ହୋଇପାରିଲି ନାହିଁ ।

ଦେଖୁ ଦେଖୁ ଦୀର୍ଘ ଏକ ବର୍ଷ କୁଆଡ଼େ ସରିଗଲା । ମୁକ୍ତି ସମୟ ଆସି ନିକଟରେ । ମନରେ କେତେ ଉଦ୍‌ବେଗ । ଏକବର୍ଷ ପରେ ଆମ୍ଭେମାନେ ମୁକ୍ତବାୟୁ ସେବନ କରିବୁ । ମୁକ୍ତାକାଶ ଦେଖିବୁ, ପ୍ରକୃତି ମାତାଙ୍କର ଅପୂର୍ବ ଶୋଭା ଦର୍ଶନ କରି ଆତ୍ମହରା ହେବୁ ।

ବ୍ରହ୍ମପୁର କାଡ଼ାଲୋରଠାରୁ ୮୦୦ ମାଇଲ । ପ୍ରତ୍ୟେକ ୧୦୦ ମାଇଲ ପରେ ବାଟରେ ଯେ କୌଣସି ସ୍ଥାନରେ ଦିନେ ମାତ୍ର ରହି ବିଶ୍ରାମ ନେବା ସୁଯୋଗ ମିଳିଥିଲା । ଏହି ସୁଯୋଗରେ ୭/୮ଟି ସ୍ଥାନରେ ରହି କେତେ ନୂଆଁ ନୂଆଁ ଜାଗା ଓ ଦର୍ଶନୀୟ ସ୍ଥାନ ଦେଖିବା ଆଶାରେ ମନରେ ମହା ଉଦ୍‌ବେଗ ଓ କଳ୍ପନା ଜଳ୍ପନା । ବାଟରେ କେଉଁ ଜାଗାରେ ରହିବା ଓ କ'ଣ କ'ଣ ଦେଖିବା ଏହା ସ୍ଥିର କରାଗଲା ।

୧୨/୩/୧୯୨୩ ରେ ଜେଲରୁ ଖଲାସ ହୋଇ ନିଜ ନିଜର ପୋଷାକ ପିନ୍ଧି ଭଦ୍ରଲୋକ ପରି ଜେଲ ଫାଟକରୁ ବାହାରି ମୁକ୍ତବାୟୁ ସେବନ କଲୁ । କାଡ଼ାଲୋର୍ ଏକ



୧୯୨୩ରେ ଜେଲ୍‌ରୁ ମୁକ୍ତ ହେଲା ପରେ ସ୍ୱାଧୀନତା ସଂଗ୍ରାମୀ ବାଞ୍ଛାନିଧି ପଟ୍ଟନାୟକ

ବଡ଼ ସହର । ଚତୁର୍ଦ୍ଦିଗରେ କେବଳ ନଡ଼ିଆ ବଗିଚା ଓ ଶସ୍ୟ ଶ୍ୟାମଳା କ୍ଷେତ୍ରରାଜି । ସୁକୋମଳ ମଧୁମୟ ପବନ । ସବୁ ଯିମିତି ନୂଆଁ ନୂଆଁ ବୋଧ ହେଉଥାଏ । ଜେଲ ପାଚେରୀ ଭିତରେ ଏକ ବଖରିଆ ଘରେ ଗୃହପାଳିତ ପଶୁଭଳି ଆବଦ୍ଧ ରହିଥିଲୁ । ଏହି ସବୁ ସୁନ୍ଦର ଦୃଶ୍ୟ ଦୃଷ୍ଟି ପଥାରୂଢ଼ ହେବାମାତ୍ରେ ଅପୂର୍ବ ଆନନ୍ଦ ସଂଚାର ହେଲା । ସହରର ବିଭିନ୍ନ ସ୍ଥାନ ବୁଲି ଦେଖିଲୁ । ବିଶାଳ ଶିବମନ୍ଦିର । ଚାରି ଦିଗରେ ୪ଗୋଟି ଉତ୍ତୁଙ୍ଗ ଗୋପୁରମ୍ । ଦ୍ରାବିଡ଼ ଦେଶରେ ଆମ ଓଡ଼ିଶା ପରି ଗଗନସ୍ପର୍ଶୀ ମନ୍ଦିର ନାହିଁ । କେବଳ ନାନା କାରୁକଳା ମଣ୍ଡିତ ଗୋପୁରମ୍ ଗୁଡ଼ିକ ଦେଖାଯାଏ । ମନ୍ଦିରର ଭିତର ଗମ୍ଭୀରାରେ ଶିବଲିଙ୍ଗ ବିରାଜିତ । ଦିନବେଳେ ମଧ ଦୀପ ଆଲୁଅରେ ଦେଖିବାକୁ ହୁଏ । ବଜାର ବୁଲିବାକୁ ଗଲୁ । ଆଶ୍ଚର୍ଯ୍ୟର ଜିନିଷ ହେଲା ପାହାଡ଼ ପରି ଝଡ଼ିପୋକ ଶୁଖୁଆ ଗଦା । ଆମ ଇଆଡ଼ର ଛୋଟ ଚିଙ୍ଗୁଡ଼ି ଶୁଖୁଆ ଗଦାପରି । ପୁରୀ ପଣ୍ଡାମାନଙ୍କର ଦକ୍ଷିଣୀ ଝଡ଼ିପୋକ ଖିଆ ବୋଲି କଥାର ସାର୍ଥକତା ଏଠାରେ ଅନୁଭବ କରାଗଲା ।

ମାନ୍ଦ୍ରାଜ-ମାନ୍ଦ୍ରାଜର ସୁବିଖ୍ୟାତ ସମ୍ବାଦପତ୍ର 'ଆନ୍ଧ୍ର' ପତ୍ରିକାର ସମ୍ପାଦକ ଓ ଆନ୍ଧ୍ର ପ୍ରଦେଶର ଅନ୍ୟତମ ନେତା ଶ୍ରୀ ନାଗେଶ୍ୱର ରାଓଙ୍କ ଠାକୁ ଆଶ୍ରୟ ଦେବାପାଇଁ ତାର କଲୁ । ସେ ମହାଶୟ ଷ୍ଟେସନକୁ ତାଙ୍କର ଲୋକ ପଠାଇ ଥିଲେ ଓ ତାଙ୍କର ବିଶାଳ ଆନ୍ଧ୍ର ପତ୍ରିକା କାର୍ଯ୍ୟାଳୟରେ ଆମ୍ଭର ରହିବାର ସୁବନ୍ଦୋବସ୍ତ କରିଥିଲେ । ସେ ନିଜେ ଆସି ଆମ୍ଭମାନଙ୍କ ସହ ସାକ୍ଷାତ୍ କରି ଆଳାପ କରିଥିଲେ ଏବଂ ଗଭୀର ସ୍ନେହ ଓ ସହାନୁଭୂତି ପ୍ରକାଶ କରିଥିଲେ । ସେ ସମୟରେ ମାନ୍ଦ୍ରାଜ ବ୍ୟବସ୍ଥାପକ କାଉନ୍‌ସିଲ୍ ବସିଥାଏ । ଆମ ଗଞ୍ଜାମର ତିନିଜଣ ସଭ୍ୟଙ୍କ ମଧରୁ ଶ୍ରୀ ପର୍ଶୁରାମ ପାତ୍ର ମନ୍ତ୍ରୀ ହୋଇଥିଲେ । ଶ୍ରୀ ଶଶୀଭୂଷଣ ରଥ ଏବଂ ଶ୍ରୀ ବିଶ୍ୱନାଥ ଦାଶ ଅନ୍ୟ ଦୁଇଜଣ ସଭ୍ୟଙ୍କୁ ଦେଖିବାକୁ ଗଲୁ । ଶଶୀଭୂଷଣ ବାବୁ ଟିକିଏ ବଡ଼ଲୋକିଆ ଭାବ ଦେଖାଇଲେ । ସେତେ ଆଗ୍ରହର ସହ ଆମ ସହିତ କଥାଭାଷା କରିବା ଦେଖାଗଲା ନାହିଁ । ଗମ୍ଭୀର ଭାବରେ ଏକ ଆରମ୍ ଚୌକିରେ ବିଶାଳ ଉଦର ପ୍ରଦର୍ଶନ ପୂର୍ବକ ବସିଥାନ୍ତି । ବିଶ୍ୱନାଥ ବାବୁଙ୍କ ସହ ଦେଖା ହେଲା । ସେ ବଡ଼ ସରଳ ନିରାଡ଼ମ୍ବର ଜୀବନ କଟାଉଥାନ୍ତି । କେତେଜଣ ଓଡ଼ିଆ ଛାତ୍ରଙ୍କ ବସାରେ ସାଧାରଣ ଏକ ବଖରାରେ ରହନ୍ତି । Cooker ରେ ଦିଟା ରୋଷେଇ କରି ଖାନ୍ତି । କୌଣସି ଜଣେ କାଉନ୍‌ସିଲ୍‌ର୍ ବନ୍ଧୁଙ୍କ ଗାଡ଼ିରେ କାଉନ୍‌ସିଲ୍ ଅଧିବେଶନକୁ ଯିବା ଆସିବା କରନ୍ତି, ହୋଟେଲ୍‌ରେ ଖାଇଲେ କିମ୍ୱା ସ୍ୱତନ୍ତ୍ର ଘରଭଡ଼ା ନେଇ ଚାକର ବାକର ରଖିଲେ ବୃଥା ଖର୍ଚ୍ଚାନ୍ତ ହେବାକୁ ପଡ଼ିବ । ଯାନବାହାନ ଖର୍ଚ୍ଚ ମଧ ବନ୍ଧୁଙ୍କ ସହୃଦୟତାରୁ ବଞ୍ଚିଯାଏ । ଆମକୁ ଭାରି ଆଦର କଲେ । ହୋଟେଲ୍‌ରୁ ଖାଦ୍ୟ ମଗାଇ ନିଜେ ପରଶି ପରଶି କରି ଖାଇବାକୁ ଦେଲେ । କାଉନ୍‌ସିଲ ଓ ହାଇକୋର୍ଟ ଦେଖିବା ବନ୍ଦୋବସ୍ତ କରିଦେଲେ । ମାନ୍ଦ୍ରାଜର ସୁଦୀର୍ଘ ସୁନ୍ଦର ସମୁଦ୍ର ଉପକୂଳ, ବଜାର

ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନମାନ ଦେଖି ଚିଦାୟରମ୍ ଗଲୁ ।

ଚିଦାମ୍ବରମ୍ - ଚିଦାୟରମ୍‌ରେ ନଟରାଜଙ୍କ ବିଶାଳ ମନ୍ଦିର । ସହସ୍ର ସ୍ତମ୍ଭ ବିଶିଷ୍ଟ ଏକ ମଣ୍ଡପ । ଅତ୍ୟୁଚ୍ଚ ଗୋପୁରମ୍ । କଥିତଅଛି ଏହି ଗୋପୁରମ୍ ଉପରୁ ଜଗଦ୍‌ଗୁରୁ ରାମାନୁଜାଚାର୍ଯ୍ୟ ସର୍ବ ସାଧାରଣଙ୍କ ମୁକ୍ତି ବିଧାନ କରିବାପାଇଁ ଗୁରୁଙ୍କ ଆଦେଶ ଅମାନ୍ୟ କରି ଗୋପନୀୟ କର୍ଣ୍ଣମନ୍ତ୍ର ଉଚ୍ଚସ୍ୱରରେ ତ୍ରିବାର ଉଚ୍ଚାରଣ କରିଥିଲେ । କି କାରୁଣିକ ହୃଦୟ ! ଗୁରୁ ଆଦେଶ ଅମାନ୍ୟ କରିବାଦ୍ୱାରା ତାଙ୍କର ଯେଉଁ ଅପରାଧ ହେବ ସେଥିପ୍ରତି ଭ୍ରୂକ୍ଷେପ ନକରି ପାପୀ ତାପୀଙ୍କ ଉଦ୍ଧାର ଉଦ୍ଦେଶ୍ୟରେ ସେ ଏହା କରିଥିଲେ । ନଟରାଜଙ୍କ ତାଣ୍ଡବନୃତ୍ୟ ଭଙ୍ଗୀ ବଡ଼ ଚିତ୍ତାକର୍ଷକ । ତାରି ନିକଟରେ ବିଶାଳ ଅନନ୍ତଶୟନ ବିଷ୍ଣୁ ମୂର୍ତ୍ତି । ଏକ ମନ୍ଦିର ମଧ୍ୟରେ ଶିବ ଓ ବିଷ୍ଣୁ ବିରାଜମାନ । ତଥାପି ଏ ଦକ୍ଷିଣ ପ୍ରାନ୍ତରେ ଶୈବ ଓ ବୈଷ୍ଣବ ସଂପ୍ରଦାୟ ମଧ୍ୟରେ ନାନାପ୍ରକାର ବାଦ, ବିସଂବାଦ, କଳିଗୋଳ ଲାଗି ରହିଥିବା ଶୁଣାଯାଏ । ସନ୍ଧ୍ୟା ଆରତି ସମୟର ଦୃଶ୍ୟ ବଡ଼ ବିଚିତ୍ର ଓ ଚିତ୍ତାକର୍ଷକ । ନଟରାଜଙ୍କ ସମ୍ମୁଖରେ ଆଡବଟ୍ଟ ତିଳକଧାରୀ କେବଳ ଶିବଭକ୍ତ ଏବଂ ଅନନ୍ତଶୟନଙ୍କ ସମ୍ମୁଖରେ ରାମାନନ୍ଦୀ ତିଳକଧାରୀ ବିଷ୍ଣୁଭକ୍ତଙ୍କ ସମାବେଶ । ଏ ଦୃଶ୍ୟ ବଡ କୌତୁକାବହ । ଶଙ୍ଖ, ଘଣ୍ଟା, ମୃଦଙ୍ଗ ପ୍ରଭୃତି ବାଦ୍ୟମାନ, ଆଲଟ ଚାମର ଚାଳନ ଓ ସ୍ତୋତ୍ର ପାଠରେ ଉଭୟ ମନ୍ଦିର ମୁଖରିତ । ଏ ଦୃଶ୍ୟ ଦେଖିଲେ ନାସ୍ତିକ ହୃଦୟରେ ସୁଦ୍ଧା ଦେବ ଭକ୍ତି ଜାଗ୍ରତ ହୋଇଉଠେ ।

ସେଠାରୁ ଗଲୁ ବେଜୱାଡ଼ା । ଆନ୍ଧ୍ର ପ୍ରଦେଶର ଅନ୍ୟତମ ନେତା ଶ୍ରୀ କାଳେଶ୍ୱର ରାଓଙ୍କୁ ତାର କରିଥିଲୁ । ସେ ଆମ ସାଙ୍ଗରେ ଜେଲରେ ଥିଲେ । ତାଙ୍କରି ଦ୍ୱାରରେ ପହଞ୍ଚିଲୁ । ସେତିକିବେଳକୁ ସେ ଆନ୍ଧ୍ର ପ୍ରଦେଶ କଂଗ୍ରେସ କମିଟୀରେ ଯୋଗ ଦେବାପାଇଁ ଗୁଣ୍ଟୁର୍ ଯିବାକୁ ପ୍ରସ୍ତୁତ । ଆମକୁ ମଧ୍ୟ ତାଙ୍କ ସାଙ୍ଗରେ ନେଇଗଲେ । ଗୁଣ୍ଟୁର୍ ଗଲାବେଳେ ଆମ ଡ଼ବାରେ ବସିଥିଲେ ଆନ୍ଧ୍ରର ବିଶିଷ୍ଟ ନେତା ଡକ୍ଟର ପଟ୍ଟାଭି ସୀତାରାମାୟା । ସେ ବଡ଼ ଗମ୍ଭୀର ଓ ଅହଙ୍କାରୀ । ଆନ୍ଧ୍ର ଓଡ଼ିଆ ଭେଦଭାବ ତାଙ୍କ ଭିତରେ ଥାଏ । ଆମର ପରିଚୟ ନେଇ କହିଲେ " Do you Know Telugu" ? ମୁଁ ଗର୍ବରେ ଉତ୍ତର ଦେଲି "No" । ସତେ ଯେପରି ତେଲୁଗୁ ଜାଣିବା ଆମ ପକ୍ଷରେ ଏକ ଅପମାନର କଥା । ସେ ମୋର ଉତ୍ତର ଭଙ୍ଗୀରୁ ମୋର ଭାବ ଠଉରାଇ କହିଲେ "No, no, I donot say from any other point of view. I simply say that you should know at least the languages of your adjacent provinces" । ମୁଁ କହିଲି, "Yes, we may learn it when occasion comes." ସେତିକିରେ ସେ ତୁନି ହୋଇଗଲେ । କାଡ଼ାଲୋର୍ ଜେଲରେ ଥିବାବେଳେ ଠିକ୍ ଏହିପରି ଏକ ପ୍ରଶ୍ନ ଶ୍ରୀ କାଳେଶ୍ୱର ରାଓ କରିଥିଲେ । ତେଲୁଗୁ ଜାଣି

ନଥିବା କଥା ବୁଝିପାରି ସେ କହିଥିଲେ "Dont you know Telugu ?" ମୁଁ କହିଲି "No" ସେ କହିଲେ "Then how do you work in Ganjam ?" ସେ ଭାବିଥିଲେ ଗଞ୍ଜାମ ଏକ ତେଲୁଗୁ ବହୁଳ ଅଞ୍ଚଳ । ମୁଁ କହିଲି "Please ask your Telugu friends how they work in Ganjam without knowing Oriya?" ସେ କହିଲେ "Is it thickly populated with Oriyas?" ମୁଁ କହିଲି "Being such a great leader have you not got this much of geographical knowledge ?" ସେତିକିରେ ସେ ତୁନି ରହିଥିଲେ ।

ସେତେବେଳେ ଗଞ୍ଜାମରେ ତେଲୁଗୁ ଓଡ଼ିଆ ବିବାଦ ଏତେ ପ୍ରବଳ ଥିଲା ଯେ, ଆମ୍ଭେମାନେ ତେଲୁଗୁ ଓ ସେମାନଙ୍କର ଭାଷା ପ୍ରତି ଅତିଶୟ ଘୃଣାଭାବ ପୋଷଣ କରୁଥିଲୁ । ଯେତେ ସୁବିଧା ମିଳିଥିଲା ଶିଖିଥିଲେ ତେଲୁଗୁ ଭାଷାରେ ସୁନ୍ଦର ସ୍ଥାନ ଲାଭ ହୋଇ ପାରିଥାନ୍ତା । ରସଲକୋଣ୍ଡା ସ୍କୁଲରେ ପ୍ରତ୍ୟେକ କ୍ଲାସ୍‌ରେ ପ୍ରାୟ ଅଧାଅଧି ତେଲୁଗୁ ପିଲାଥାନ୍ତି । ଜେଲରେ ତ ବହୁତ ତେଲୁଗୁ ବନ୍ଧୁ ମିଳିଥିଲେ । ତଥାପି ଶିଖିବାପାଇଁ ଗୋଟାଏ ଉକ୍‌ଟ ବିତୃଷ୍ଣା ଭାବ ଥିଲା । ମୁଁ ଛାତ୍ର ଜୀବନରେ ସେମାନଙ୍କ ସହିତ ସର୍ବଦା ରହିବା ଫଳରେ ତେଲୁଗୁ ବୁଝିଯାଏ । ''ଏଉଣ୍ଡି'' ''ଏନ୍ଦୁକୁ'' କରି ଦିପଦ କହିପାରେ ।

ଗୁଣ୍ଟୁରୁ- ଗୁଣ୍ଟୁରୁରେ ସେଦିନ ଆନ୍ଧ୍ର ପ୍ରାଦେଶିକ ସମ୍ମିଳନୀ । କୋଣ୍ଡା ଭେଙ୍କଟାପ୍‌ପାୟା ଜେଲରୁ ଖଲାସ ହୋଇ ସେହିଦିନ ସେଠାରେ ପହଞ୍ଚିଥାନ୍ତି । ତାଙ୍କର ଅଭ୍ୟର୍ଥନା ପାଇଁ ବିପୁଳ ଆୟୋଜନ । ତାଙ୍କର ବିଶାଳ ବାସଗୃହରେ ସମସ୍ତଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା । ଆମେ ଦୁଇଜଣ ମାତ୍ର ଓଡ଼ିଆ । ଭେଙ୍କଟାପ୍‌ପାୟା ଗାରୁ (ମହାଶୟ) ଜେଲ ଭିତରେ ଆମେ ରାଗ ଖାଇ ପାରୁ ନଥିବା ଜାଣିପାରି ଥିଲେ । ଏତେବଡ଼ ଗହଳି ମଧରେ ସେ ସେକଥା ଭୁଲି ପାରି ନଥିଲେ । ସେ ଘର ଭିତରୁ ଆମେ ଖାଇ ବସିଥିବା ଜାଗାକୁ ଧାଇଁ ଆସି କହିଲେ "O my Oriya friends can not take so hot things". ଏହା କହି ସେ ଦୁଇଜଣ ବୟସ୍କା ଆନ୍ଧ୍ର ମହିଳାଙ୍କୁ ଆମ ଖାଇବା କଥା ଦେଖିବାକୁ କହିଗଲେ । ସେ ଦୁହେଁ ଗୋଟିଏ ଘିଅ ଗଡୁ ଧରି ଆମ ପାଖରେ ବସିଥାନ୍ତି । ଆମେ ଯେକୌଣସି ତର୍କାରୀ ଗୋଳାଇ ଖାଇଲା ବେଳେ ରାଗ ଜଣା କରିବାପାଇଁ ଗଡୁରୁ ଘିଅ ଢ଼ାଳି ଗୋଳାଇ ଗୋଳାଇ ଖାଅ ବୋଲି କହନ୍ତି । ଆମେ ଦୁହେଁ ସମସ୍ତଙ୍କ ଅପେକ୍ଷା ଅତି ଛୋଟ । ଅଜାତ ସ୍ମଶ୍ରୁ ଯୁବକ । ଆମକୁ ଖୁଆଇବା ବେଳେ ସେ ଦୁହେଁ କହିଥାନ୍ତି ''ଆୟୋ ୟୋ ଏନ୍ତା ଚିନ୍ନା କୁରୁଭ୍ୱାଡୁ । ଏନ୍ତା କଷ୍ଟଂ''- (ଆହା କେତେ ଛୋଟ ପିଲା । କେତେ କଷ୍ଟ-) । ସମ୍ମିଳନୀ ଦେଖିଲୁ । ସେ ଉତ୍ସାହ, ସେ ଦେଶାତ୍ମ ବୋଧ, ସେ ଉଦ୍ଦୀପନା ଦେଖି ଆମ ମନରେ ଅଧିକ ଉତ୍ସାହ ଓ ଉନ୍ମାଦନା ଜାତ ହୋଇଥିଲା ।

ଗୁଣ୍ଟୁରରୁ ଫେରି ବେଜୱାଡ଼ାରେ ଶ୍ରୀ କାଳେଶ୍ୱର ରାଓଙ୍କ ଘରେ ରହିଲୁ । ସହର ବୁଲିଲୁ । କୃଷ୍ଣାନଦୀରେ ସ୍ନାନ କଲୁ ।

ମସୁଲିପଟ୍ଟମ୍ - ମସୁଲିପଟ୍ଟମ୍‌ରେ "ଆନ୍ଧ୍ରଜାତୀୟ କଳାଶାଳା" ଦେଖିବାକୁ ଗଲୁ । ମସୁଲିପଟମ୍ ଏକ ବନ୍ଦର ସ୍ଥଳ । ବିଶାଳ ବାଲୁକାମୟ ପ୍ରାନ୍ତରରେ କଳାଶାଳା ପ୍ରତିଷ୍ଠିତ । ତିନି ଚାରିଫୁଟ ଉଚ୍ଚର ଗୋଟିଏ ଗୋଟିଏ ଗୋଲାକାର ବେଦୀ, ତା ମଧ୍ୟରେ ଗୋଟିଏ ଗୋଟିଏ ଖୁଣ୍ଟି । ଉପରେ ତାଳପତ୍ର ଛପର । ଏହିପରି ମଣ୍ଡପରେ କ୍ଲାସ ହୁଏ । ଚୌକି ଟେବୁଲ୍ ନାହିଁ । ଶିକ୍ଷକ, ଛାତ୍ର ସମସ୍ତେ ତଳେ ବସନ୍ତି । ପ୍ରାର୍ଥନା ମନ୍ଦିର, ବିଜ୍ଞାନ ମନ୍ଦିର ଓ ପାଠାଗାର ଗୃହ ପକ୍କା । ସେଠାର ନିରାଡ଼ମ୍ବର ଶିକ୍ଷାଦାନ ପ୍ରଣାଳୀ ମନରେ ଗଭୀର ରେଖାପାତ କଲା । ଡକ୍ଟର ପଟ୍ଟାଭିସୀତାରାମୟାଙ୍କ ଏ ଅନୁଷ୍ଠାନ ପ୍ରତି ବିଶେଷ ଅବଦାନ । ପରବର୍ତ୍ତୀ କାଳରେ ବେଲଗୁଣ୍ଠାରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ଏହି ଉଦ୍ଦେଶ୍ୟରେ କରାଯାଇ ଥିଲା । ସେ ବିଷୟ ପରେ ଉଲ୍ଲେଖ କରାଯିବ ।

ରାଜ ମେହନ୍ଦ୍ରୀ - ରାଜମେହନ୍ଦ୍ରୀ ଆସିଲୁ । ଡକ୍ଟର ସୁବ୍ରମଣ୍ୟମ୍‌ଙ୍କ ଅତିଥି । ସେ ମଧ୍ୟ ଜେଲ ସାଙ୍ଗ ଥିଲେ । ଆମେ ଖଲାସ ହେବା ପୂର୍ବରୁ ସେ ଖଲାସ ହୋଇ ଆସିଥିଲେ । ବଡ଼ ଆଦରରେ ଆମର ଚର୍ଚ୍ଚାକଲେ । ଗୋଦାବରୀ ନଦୀରେ ସ୍ନାନ କଲୁ । ରାଜମହେନ୍ଦ୍ରୀରେ ବହୁତ ଓଡ଼ିଆ, ବିଶେଷତଃ ଭଣ୍ଡାରି ବାସ କରନ୍ତି । ସେମାନେ ସେଠାର ଅଧିବାସୀ ହୋଇଗଲେଣି । କମା ବ୍ରାହ୍ମଣ ଘର ମାନଙ୍କରେ ଚାକିରି କରନ୍ତି । ଘରର ସମସ୍ତ ପରିଚାଳନା ଭାର ଏମାନଙ୍କ ହାତରେ । ଏପରିକି ଘରର ଚାବି ଏମାନଙ୍କ ହାତରେ । ଆଉ ଏମାନେ ମଧ୍ୟ ବଡ଼ ବିଶ୍ୱସ୍ତ ।

ବିଶାଖାପାଟଣା - ବିଶାଖାପାଟଣା ଆସିଲୁ । ଏଠାରେ ମଧ୍ୟ ବହୁତ ଓଡ଼ିଆ ବାସ କରନ୍ତି । ମୋର ସହପାଠୀ ଶ୍ରୀ କାଶୀନାଥ ପାଳ ଏଠାରେ ଡାକ୍ତରୀ ପଢ଼ନ୍ତି । ସେତେବେଳେକୁ ସେ ୨ୟ ବର୍ଷ ଛାତ୍ର । ସ୍କୁଲର ପ୍ରତ୍ୟେକ ବିଭାଗ ବୁଲାଇ ବୁଲାଇ ଦେଖାଇଲେ । ଅନେକ ଓଡ଼ିଆ ଅଧିବାସୀଙ୍କ ସହ ପରିଚୟ କରାଇଲେ ।

ବିଜୟ ନଗର - ସେଠାରୁ ବିଜୟ ନଗର । ସେଠାରେ କିଛି ସମୟ ରହି ସିଂହାଚଳ ପର୍ବତକୁ ଗଲୁ । କାରୁକାର୍ଯ୍ୟ ମଣ୍ଡିତ ନୃସିଂହ ମନ୍ଦିର । ଗଜ ସିଂହ ମନ୍ଦିର (ଏକ ପ୍ରସ୍ତର ହସ୍ତୀ ଉପରେ ବିଶାଳ ସିଂହ ମାଡ଼ିବସିଛି, ତାରି ଉପରେ ଏକ ମନ୍ଦିର) । ନୃସିଂହ ମୂର୍ତ୍ତି ଦେଖାଯାନ୍ତି ନାହିଁ । ସର୍ବାଙ୍ଗରେ ଏତେ ବହଳରେ ଚନ୍ଦନ ଲେପନ କରାଯାଇଛି ଯେ ଗୋଟିଏ ଶୁଭ୍ର ଉଚ୍ଚ ଶିବଲିଙ୍ଗ ପରି ଦେଖାଯାନ୍ତି । ପାହାଡ଼ ଉପରେ ଲୋକ ବସତି । ସପୁରୀ, କଦଳୀ ପ୍ରଭୃତି ନାନା ଫଳ ଓ ପୁଷ୍ପ ଉଦ୍ୟାନ । ପାହାଡ଼ ଉପରୁ ଏକ ସ୍ୱଚ୍ଛ ସୁନିର୍ମଳ, ସୁମଧୁର ଜଳ ଝରଣା, ପାହାଡ଼ରୁ ପାହାଡ଼ର ପାଦ ଦେଶ ପର୍ଯ୍ୟନ୍ତ ପଡ଼ିଥିବା ସୋପାନ ଶ୍ରେଣୀର କଡ଼େ କଡ଼େ ଏକ ପ୍ରସ୍ତର ନିର୍ମିତ ନାଳରେ କଳ

କଳ ନାଦରେ ଅହର୍ନିଶ ପାଣି ବହି ଚାଲିଥାଏ । ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ କୁଣ୍ଡ । କୁଣ୍ଡ ମାନଙ୍କରୁ ଛୋଟ, ବଡ଼ ନଳାଦ୍ୱାରା ପାଣି ନିର୍ଗତ ହୋଇ ଉପରୁ ଝରଝର ଶବ୍ଦରେ ପଡୁଥାଏ । ସେଥିରେ ସ୍ନାନ କରିବା ବଡ଼ ଆନନ୍ଦପ୍ରଦ ଓ ସୁଖକର ।

ସିଂହାଚଳ ମନ୍ଦିର ଓଡ଼ିଶା ମନ୍ଦିରମାନଙ୍କ ପରି । ଏଠାରେ ଦକ୍ଷିଣ ମନ୍ଦିରମାନଙ୍କରେ ଥିବା ଗୋପୁରମ୍ ନାହିଁ । କଥିତ ଅଛି ଓଡ଼ିଆ ରାଜାମାନଙ୍କ ରାଜତ୍ୱ କାଳରେ ଓଡ଼ିଆ ଶିଳ୍ପୀମାନଙ୍କ ଦ୍ୱାରା ଏହି ମନ୍ଦିର ନିର୍ମାଣ କରାଯାଇଥିଲା । ଏଠାରେ ଅନ୍ନ ଭୋଗରେ ଗୋଲ ମରିଚ ଗୁଣ୍ଡ ଗୋଳାଇ ଗୋଟିଏ ପେଣ୍ଡୁଳାକାର କରି, ଡାଲି ଓ ତର୍କାରୀ ସହ ଭୋଗ ହୁଏ । ଖିରି ଓ ଲଡୁ ମଧ ଭୋଗ ହୁଏ ।

ବ୍ରହ୍ମପୁର - ସିଂହାଚଳରୁ ବ୍ରହ୍ମପୁର ଆସିଲୁ । ଭାଗ୍ୟବଶରୁ ଆମେ ସେଠାରେ ପହଞ୍ଚିବା ବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସ୍ କମିଟୀର ଅଧିବେଶନ ଆରମ୍ଭ ହୋଇଛି । ପ୍ରଦେଶର ବିଭିନ୍ନ ଜିଲ୍ଲାରୁ ନେତା, ସ୍ଥାନୀୟ ବ୍ୟକ୍ତି ଓ କର୍ମୀମାନଙ୍କର ସମାବେଶ ହୋଇଛି । ଆମ୍ଭମାନଙ୍କର ଚିହ୍ନା ଅଚିହ୍ନା ବହୁ ନେତା ଓ କର୍ମୀ ଆମ୍ଭମାନଙ୍କର ସ୍ୱାଗତ କରିଥିଲେ । ଆଚାର୍ଯ୍ୟ ହରିହର ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ହରିହର ପଟ୍ଟନାୟକ ପ୍ରଭୃତି । ପଣ୍ଡିତ ଗୋପବନ୍ଧୁ ଦାଶ, ପଣ୍ଡିତ ନୀଳକଣ୍ଠ ଦାଶ ପ୍ରଭୃତି ଅନ୍ୟାନ୍ୟ ନେତା ଜେଲରେ ଥିବା ହେତୁ ଯୋଗଦେଇ ପାରି ନଥିଲେ । ମୁଁ ଜେଲରେ ବାଳ ନ କାଟି ବଢ଼ାଇ ଦେଇଥିଲି । ଶ୍ରୀ ରାଜକୃଷ୍ଣ ବୋଷ ମୋ ମୁଣ୍ଡରେ ହାତ ବୁଲାଇ 'ଜେଲରୁ ଏତକ ଆଣିଛନ୍ତି' ବୋଲି କହି ବୁଲନ୍ତି ।

ଗାଁକୁ ଯାଇ ନନା, ବୋଉ, ଦଦା, ଖୁଡ଼ୀ ଓ ଗ୍ରାମର ସାଙ୍ଗ ସାଥୀଙ୍କୁ ଦେଖିବା ପାଇଁ ମନ ଉଚ୍ଛନ୍ନ । ତଥାପି ବ୍ରହ୍ମପୁର ସମ୍ମିଳନୀରେ ଯୋଗଦେବା ପାଇଁ ଦୁଇ ଦିନ ସେଠାରେ ରହିଗଲି । ତେଣେ ଘର ଲୋକେ ଓ ଗାଁର ସମସ୍ତେ କିମିତି ଶୀଘ୍ର ଦେଖିବୁ ବୋଲି ଉଦ୍‌ବିଗ୍ନ ।

## ଗାଁରେ ପ୍ରବେଶ

ସମ୍ମିଳନୀ ଶେଷ ହେଲା । ଗାଁରେ ଆସି ପହଞ୍ଚିଲି । ଯା'କୁ ଦେଖୁଛି ତା' ଆଖିରେ ଲୁହ । ବର୍ଷେ କାଳ ପରେ ମତେ ଦେଖିବା ଆନନ୍ଦ ଏବଂ ଜେଲରେ କେତେ କଷ୍ଟ ଓ ଯନ୍ତ୍ରଣା ଅନୁମାନ କରି ଦୁଃଖ, ଏପରି ଉଭୟ ଭାବର ଅଶ୍ରୁ ବହି ଯାଉଥାଏ । ଘରେ ବୋଉ ପ୍ରଭୃତିଙ୍କ କାନ୍ଦଣା ବଡ଼ ଅସହ୍ୟ ଓ ହୃଦୟ ବିଦାରକ । ମୋ ଆଖିରୁ ଧାର ଧାର ହୋଇ ଲୁହ ଗଡ଼ି ଯାଉଥାଏ । କିଏ କିଛି ପଚାରି ପାରୁନାହାନ୍ତି କି ମୁଁ କିଛି କହିପାରୁ

ନାହିଁ । କେବଳ ନିର୍ବେଦ କ୍ରନ୍ଦନ । ବର୍ଷକ ପରେ ଘରର ଭାତ ଡାଲି ତର୍କାରୀ ବୋଉ ପରଶିବେ । ଜେଲରେ ବର୍ଷେକାଳ ଏକାପରି ଖାଦ୍ୟ ପ୍ରତିଦିନ ଖାଇ ଖାଇ ଗୋଟିଏ ପ୍ରକାର ଅଭ୍ୟାସ ହୋଇ ଯାଇଥିଲା । ବାଟରେ ବନ୍ଧୁମାନଙ୍କ ଘରେ ଓ ହୋଟେଲରେ ଖାଇ ଟିକିଏ ବଦଳି ଥିଲା ସତ, ଘରେ କିନ୍ତୁ ଏକ ପ୍ରକାର ନୂଆଁ ବୋଧ ହେଲା । ଯେତେ ହେଲେ କଥାରେ ଅଛି ମା' ପରଶା । ଖିଆପିଆ ପରେ ଜଣ ଜଣ କରି, ଦଳ ଦଳ କରି ଲୋକଙ୍କ ସହ ଦେଖା ସାକ୍ଷାତ୍ । ସମସ୍ତଙ୍କୁ ଜେଲ ଖବର କହିବାକୁ ହୁଏ । ଗାଁରେ କେତେଦିନ କଟିଲା ।

ତା' ପରେ ''କିଂ କରୋମି, କ୍ୱ ଯାମି ।''

ନିରଞ୍ଜନ ବାବୁ ବ୍ରହ୍ମପୁରରେ ଖଦୀ ମନ୍ଦିର ପ୍ରତିଷ୍ଠା କରି ଖଦୀ ମାଧ୍ୟମରେ କଂଗ୍ରେସ ବାର୍ତ୍ତା ପ୍ରଚାର କରିବା ଉଦ୍ଦେଶ୍ୟରେ ଜିଲ୍ଲାର କର୍ମୀମାନଙ୍କୁ ସଂଗଠିତ କରିଅଛନ୍ତି । ମୋର ସେ ଦିଗରେ ମନ ବଳିଲା ନାହିଁ । ଜେଲ ବରଣ କରିବା ପୂର୍ବରୁ ବାରୁଡ଼ା ଆଡୁ ପ୍ରଚାର କାମରୁ ଫେରିଲା ବେଳେ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମାଙ୍କ ସହ ଯେଉଁ ଅପରିଚିତ ବନ୍ଧୁଙ୍କ ସହ ଦେଖା ହୋଇଥିଲା ସେହି ଗୋଦାବରୀଶ ଦାଶଙ୍କ ଅନୁସନ୍ଧାନରେ ବେଲଗୁଣ୍ଠା ଗଲି । ସେ ଜଗନ୍ନାଥ ମନ୍ଦିର ନିକଟରେ ''ଜଗନ୍ନାଥ ପାଠାଗାର'' ନାମକ ଏକ ଅନୁଷ୍ଠାନ କରିଥିଲେ । ସେଇ ପାଠାଗାରରେ ତାଙ୍କରି ସାଙ୍ଗରେ ରହିଲି ।

✓ ତାଙ୍କ କଥା : ତାଙ୍କ ଘର ଆଠଗଡ଼ ତାଲୁକା ଶ୍ରୀବାପୁର ଶାସନ । ସେ ପିଲାଦିନୁ ତାଙ୍କ ମାମୁଁ ଘର ବେଲଗୁଣ୍ଠାରେ ରହି ସଂସ୍କୃତ ପଢ଼ାପଢ଼ି କରି ଦରପାଠୁଆ ହୋଇ ମାମୁଁ ଘରର କୌଳିକ ବୃତ୍ତି ପୌରୋହିତ୍ୟ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ପଣ୍ଡିତ ବନ୍ଧୁବନ୍ଧୁ ତ୍ରିପାଠୀ ଓ ପଣ୍ଡିତ ରଘୁନାଥ ଶାସ୍ତ୍ରୀଙ୍କ ସହାଧାୟୀ ଥିଲେ । ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ଏହାଙ୍କ ଗୁରୁ । ଥରେ ସେ ତୀର୍ଥ ଯାତ୍ରାରେ ଯାଇଥିଲେ । ସେତେବେଳକୁ ପୃଥିବୀରେ ପ୍ରଥମ ମହାସମର (୧୯୧୪-୧୯୧୮) ଚାଲିଥାଏ । କଲିକତାରେ ବୁଲୁଛନ୍ତି ଏପରି ସମୟରେ ଯୁଦ୍ଧ ପାଇଁ ଲୋକ ସଂଗ୍ରହ କରୁଥିବା ବ୍ୟକ୍ତି ଯାଙ୍କୁ ଏକାକୀ ବୁଲୁଥିବା ଦେଖିଲେ । ଏ ତ ହୃଷ୍ଟପୁଷ୍ଟ ସ୍ୱାସ୍ଥ୍ୟବାନ ଓ ବଳଶାଳୀ ଲୋକ, ସେ ଯାଙ୍କୁ ଧରି ନେଇ ଯୁଦ୍ଧ ପାଇଁ ଲୋକ ସଂଗ୍ରହ କରୁଥିବା କର୍ମଚାରୀଙ୍କ ନିକଟରେ ହାଜର କରାଇଲେ ଏବଂ ଯୁଦ୍ଧକୁ ଯିବା ପାଇଁ ପ୍ରଥମେ ରାଜି ହୋଇ ପୁଣି ନାହିଁ କରୁଛନ୍ତି ବୋଲି କହିଲେ । ସେତିକିରେ ତାଙ୍କୁ ଯୁଦ୍ଧ କ୍ଷେତ୍ରକୁ ଚାଲାନ୍ କରାଗଲା । ବାପୁଡ଼ା କ'ଣ କରିବେ । କର୍ମକୁ ଆଦରି ରହିଲେ । କି କାମ କରିବ ବୋଲି ତାଙ୍କୁ ପଚରାଗଲା । ସେଠାରେ ଜଣେ ପାଟକ ବ୍ରାହ୍ମଣ ଥିଲେ । ସେ ପରାମର୍ଶ ଦେଇଥିଲେ ଯେ ପଚାରିଲେ ଲାଙ୍ଗରୀ କାମ କରିବାକୁ କହିବ । ଏ ତ ଲାଙ୍ଗରୀର ଅର୍ଥ ଜାଣି ନଥିଲେ । ଲାଙ୍ଗରୀ କାମ ମାଗିଲେ । ତାଙ୍କୁ ରୋଷେଇ ଶାଳାକୁ ପଠାଗଲା । ସେ ଅବାକ୍ । ପରେ



ବାଞ୍ଛାନିଧି ପଟ୍ଟନାୟକଙ୍କ ସହକର୍ମୀ ସ୍ୱାଧୀନତା ସଂଗ୍ରାମୀ ୰ ପଣ୍ଡିତ ଗୋଦାବରୀଶ ଦାଶ

ଅଫିସରଙ୍କ ପାଖକୁ ଯାଇ ଅନ୍ୟ କୌଣସି କାମ ଦେବା ପାଇଁ ଗୁହାରି କଲେ । ଅଫିସର ଦୟା ପରବଶ ହୋଇ ତାଙ୍କୁ ଭଣ୍ଡାର ରକ୍ଷକ କାମ ଦେଲେ । ଏହିପରି ଭାବେ ସେ ମେସୋପଟାମିଆ, ଫ୍ରାନସ୍ ପ୍ରଭୃତି ରଣକ୍ଷେତ୍ର ମାନଙ୍କରେ କାମ କଲେ । ସେ ବଡ଼ ଖାଉଣ୍ଡିଆ । ଥରେ ଦୁଇଜଣ ୟୁରୋପିଆନ୍ ଅଫିସର ଭାରତୀୟମାନେ ଘିଅ ଖାଇପାରନ୍ତି ନାହିଁ ବୋଲି ତାଙ୍କ ଆଗରେ କହିଲେ । ତା ଶୁଣି ସେ ଗୋଟିଏ ସାନ ତସଲାରେ ଥିବା ପ୍ରାୟ ଦୁଇସେର ଯାଏ ଘିଅ ସେମାନଙ୍କ ଆଗରେ ଢକ ଢକ ପିଇଦେଲେ । ଦୁଇଦିନ ଯାଏ ଆଉ କିଛି ନ ଖାଇ ଘିଅତକ ଜୀର୍ଣ୍ଣ କରିଦେଇଥିଲେ । ନାନା ସ୍ଥାନ ବୁଲି ନାନା କଷ୍ଟ ସହ୍ୟକରି ଯୁଦ୍ଧ ଶେଷରେ ସ୍ୱସ୍ଥାନକୁ ଫେରି ଆସିଥିଲେ । ତାଙ୍କର ଖାଉଣ୍ଡିଆ ପଣ ଯଥା ସ୍ଥାନରେ ବର୍ଣ୍ଣିତ ହେବ । ସେ ବଡ ଦାନଶୀଳ ଏବଂ ପରୋପକାରୀ । ଯୁଦ୍ଧରୁ ଫେରିବା ବେଳେ ଯାହାସବୁ ଲୁଗାପଟା, କମ୍ବଳ ଓ ଅନ୍ୟାନ୍ୟ ବିଦେଶୀ ଜିନିଷ ଧରି ଆସିଥିଲେ ଯେ ଯାହା ମାଗିଲା ତାହା ଅକାତରେ ଦେଇଥିଲେ । ଟଙ୍କା ପଇସା ମଧ ଯାହା ଧରି ଆସିଥିଲେ ଅକୁଣ୍ଠିତ ଚିତ୍ତରେ ବିତରଣ କରୁଥିଲେ ।

ତାଙ୍କର ଏ ଅକାତର ବିତରଣ ସୁଯୋଗ ନେଇ ଧନୀ ଘର ପିଲେ ମଧ କିଛି ନା କିଛି ମାରିନେବାର ସୁଯୋଗ ଛାଡ଼ି ନଥିଲେ ।

ତାଙ୍କ ସହ ପରାମର୍ଶ କରି ବେଲଗୁଣ୍ଠାକୁ ମୋର କର୍ମକ୍ଷେତ୍ର ରୂପେ ବାଛି ନେଲି । ଗାଁର ମୁଖିଆ ଲୋକଙ୍କୁ ନେଇ ଗୋଟିଏ ଖଦୀ ଦୋକାନ ଖୋଲା ଗଲା । ସେ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟୀର ସଭ୍ୟ ଥିଲେ । ବ୍ରହ୍ମପୁରରେ ଜିଲ୍ଲା କଂଗ୍ରେସ କମିଟୀର ଅଧିବେଶନରେ ପ୍ରଥମେ ଜିଲ୍ଲା କଂଗ୍ରେସ ସମ୍ମିଳନୀ କେଉଁଠାରେ କରାଯିବ ବିଚାର ହେଲା ବେଳେ, ଗୋଦାବରୀଶ ବାବୁ କାହା ସହିତ ପରାମର୍ଶ ନ କରି ବେଲଗୁଣ୍ଠାରେ ସମ୍ମିଳନୀ କରାଯାଉ ବୋଲି ପ୍ରସ୍ତାବ ଦେଲେ । ପ୍ରସ୍ତାବ ଗୃହୀତ ହେଲା । ସମସ୍ତ ଆୟୋଜନର ଭାର ସେ ନିଜେ ବହନ କରିବେ ବୋଲି ପ୍ରତିଶ୍ରୁତି ଦେଇ ଫେରିଲେ ।

## ଗଞ୍ଜାମ ଜିଲ୍ଲା କଂଗ୍ରେସ ସମ୍ମିଳନୀ

ବେଲଗୁଣ୍ଠା ଗ୍ରାମ୍ୟ କଂଗ୍ରେସ ଅଧିବେଶନ ଡକାଗଲା । ସେଥିରେ ସମ୍ମିଳନୀ କଥା ବିଚାର ହେଲା । ସମ୍ମିଳନୀରେ କେତେ ଖର୍ଚ୍ଚ ହେବ, ଟଙ୍କା କେଉଁଠୁ ଆସିବ ଇତ୍ୟାଦି ଆଲୋଚନା ହେଲା । ଅନେକ ଆପତ୍ତି ମଧ କଲେ । ଶେଷରେ ସ୍ଥିର ହେଲା ଗ୍ରାମବାସୀ ଅଧା ବ୍ୟୟ ବହନ କରିବେ । ଆଉ ଅଧା ଆମେ ଦୁହେଁ– ଗୋଦାବରୀଶ ବାବୁ ଓ ମୁଁ– ସଂଗ୍ରହ କରିବୁ ।

ଆମେ ଦୁହେଁ ଝୁଲା ମୁଣି ଧରି ବାହାରିଗଲୁ । ଆମ୍ଭ ବିଶ୍ୱାସ ପ୍ରବଳ, ଅବଶ୍ୟ ଚାନ୍ଦା ସଂଗ୍ରହ କରି ଆଣିବୁ । ଗୋଦାବରୀଶ ବାବୁ ପ୍ରାୟ ପ୍ରତ୍ୟେକ ଗ୍ରାମରେ ପରିଚିତ । ମତେ କେହି ଜାଣନ୍ତି ନାହିଁ । କେବଳ ଗୋବରା କରଣ ଘର ପିଲା, ଜେଲ ଯାଇଥିଲେ ଏତିକି ମାତ୍ର ପ୍ରତ୍ୟେକ ଗାଁର ଜଣାଶୁଣା ଲୋକେ ଜାଣିଥାନ୍ତି । ଘୁମୁସର ଏମୁଣ୍ଡରୁ ସେ ମୁଣ୍ଡ ଯାଏ ଗାଁକୁ ଗାଁ ବୁଲିଲୁ । ଗୋଦାବରୀଶ ବାବୁଙ୍କ ସହ ବାଟ ଚାଲିବା ବଡ଼ ବିରକ୍ତିକର । ବାଟରେ ତାଙ୍କୁ ବହୁତ ନମସ୍କାର ମିଳେ । ପ୍ରତ୍ୟେକ ଲୋକ ସାଙ୍ଗରେ ତାଙ୍କର ଦଣ୍ଡେ କଥାବାର୍ତ୍ତା । ବାଟରେ ଯାଉଥିବା ଲୋକର ନାଁ ଗାଁ, କେଉଁଠାକୁ ଯାଉଛି ଇତ୍ୟାଦି ପଚାରି ଦୀର୍ଘ ସମୟଯାଏଁ କଥାବାର୍ତ୍ତା କରନ୍ତି । ମୁଁ ଅପେକ୍ଷା କରିପାରେ ନାହିଁ । ମୋର ସ୍ୱଭାବ ଶୀଘ୍ର ଶୀଘ୍ର ଚାଲିବା ଏବଂ ଶୀଘ୍ର ଶୀଘ୍ର କାମ ଶେଷ କରିବା । ମୁଁ ତାଙ୍କୁ ଛାଡ଼ିଦେଇ ଆଗକୁ ଚାଲିଯାଏ । ସେ ଲସର ପସର ହୋଇ ଧାଇଁ ଧାଇଁ ମୋ ସାଙ୍ଗରେ ମିଶନ୍ତି । ଯେଉଁ ଗାଁକୁ ଯିବେ ସେଠାରେ ଲୋକଙ୍କ ସହ ସମ୍ମିଳନୀ ବିଷୟ କଥା ହେବେ କ'ଣ ତାଙ୍କର ସୁଦୀର୍ଘ ଯୁଦ୍ଧ ବୃତ୍ତାନ୍ତ ବାଢ଼ି ବସନ୍ତି । ସମ୍ମିଳନୀ କଥା ପାସୋରି ଦିଅନ୍ତି । ଅନ୍ୟଗାଁକୁ ଯିବାପାଇଁ ବାହାରିପଡ଼ନ୍ତି । କେତେ ଟଙ୍କା ଚାନ୍ଦା ସଂଗ୍ରହ

ହେଲା ବୋଲି ପଚାରିଲେ, "ଆରେ ସେକଥାତ କହିନାହିଁ।" ପୁଣି ଫେରିଆସି ଚାନ୍ଦା ସ୍ୱୀକୃତି ଆଣୁ। ସବୁବେଳେ ସ୍ୱୀକୃତି। ନଗଦ ଏକ ପଇସା ମଧ ମିଳିବାକୁ ନାହିଁ। ଏପରିଭାବେ ଅନେକ ଗାଁ ବୁଲି ବୁଲି ନିର୍ଦ୍ଦିଷ୍ଟ ଦିନ ଫେରି ଆସିଲୁ। ଗାଁ ଲୋକେ ଆମକୁ ଚାହିଁ ବସିଥାନ୍ତି। ସଙ୍ଗେ ସଙ୍ଗେ ଗ୍ରାମ୍ୟ କମିଟୀ ବସିଲା। କେତେ ଚାନ୍ଦା ସଂଗ୍ରହ ହୋଇଛି ଦେଖିବା ପାଇଁ ସମସ୍ତେ ଆତୁର। ଗୋଦାବରୀଶ ବାବୁ ଯୁଦ୍ଧରୁ ଗୋଟିଏ ପିତଳର ତୋପ ନଳା ଆଣିଥିଲେ। ସେଥିରେ ଚାନ୍ଦା ପଇସା ରଖିଥିଲେ। ସଭା ମଧରେ ସେ ନଳାରୁ ଚାନ୍ଦା ପଇସା ଢ଼ାଳି ଗଣିଲା ବେଳକୁ କେବଳ ମାତ୍ର ଟ ୨ଙ୍କା ଓ ସାମାନ୍ୟ କେତେ ପଇସା। ସମସ୍ତେ ହତାଶ ଓ ବିରକ୍ତ। ସମ୍ମିଳନୀ ପାଇଁ ସ୍ଥିର ହୋଇ କାମ ଆରମ୍ଭ ହେଲାଣି। ନିରଞ୍ଜନ ବାବୁଙ୍କ ନିର୍ଦ୍ଦେଶରେ ଶ୍ରୀ ଜୟ ମଙ୍ଗଳ ରଥ ସମ୍ମିଳନୀର ସମ୍ପାଦକ ଭାବେ ଆସି କାର୍ଯ୍ୟାଳୟ ଖୋଲି କାଗଜ ଉପରେ କାଗଜ ଲେଖା ଚଳାଇ ପ୍ରଚାର କରୁଛନ୍ତି। ପଣ୍ଡିତ ନୀଳକଣ୍ଠ ଦାଶ ସଭାପତି ପଦରେ ନିମନ୍ତ୍ରିତ। ବିଶିଷ୍ଟ ଓକିଲ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଅଭ୍ୟର୍ଥନା ସମିତିର ସଭାପତି। ତେଣେ ନିରଞ୍ଜନ ବାବୁଙ୍କ ଠାରୁ କଡ଼ା ନିର୍ଦ୍ଦେଶନାମା ମାନ ଆସି ପହୁଞ୍ଚିଛି। କମିଟୀ ସଭ୍ୟମାନେ ଓ ନିମନ୍ତ୍ରିତ ବିଶିଷ୍ଟ ବ୍ୟକ୍ତିମାନେ କିମିତି ଭଲଭାବେ ଚର୍ଚ୍ଚା ହେବେ, କେତେ ଟଙ୍କା ଖର୍ଚ୍ଚ ହେବ ଏହି ଚିନ୍ତାରେ ବିବ୍ରତ। ଆମେ ଦୁହେଁ ତାଙ୍କୁ ସାନ୍ତ୍ୱନା ଓ ସାହସ ଦେଉଁଥାଉଁ। ଗାଁ ଲୋକେ ଯେତେବେଳେ ପ୍ରତିଶ୍ରୁତି ଦେଇଛନ୍ତି ନିଶ୍ଚୟ ପଠାଇବେ। ଅପେକ୍ଷା କର। ସତକୁ ସତ ସମ୍ମିଳନୀ ଦିନେ ଅଛି ବିଭିନ୍ନ ଗ୍ରାମରୁ ଆସିଲା ଭାର ଭାର ଚାଉଳ, ଡାଲି, ପନିପରିବା, କାଠ, ଖଲି ଇତ୍ୟାଦି। କୁମ୍ଭିମାନଙ୍କର ଗୋଡ଼ ଆଉ ତଳେ ପଡ଼ିବାକୁ ନାହିଁ। ଆମ ଦୁହିଁଙ୍କ ପ୍ରତି କି ସ୍ନେହ, କି ଆଦର, କି ହସ ହସ କଥା ! ତାଙ୍କ ଆନନ୍ଦ ଓ ଉତ୍ସାହ ଆଉ କହିବାକୁ ନାହିଁ। ଆମ ଉପରେ ପ୍ରଶଂସା ଢ଼ଳାଯାଉଥାଏ।

ଏହି ସମ୍ମିଳନୀରେ ଆମ ଗଞ୍ଜାମର ବିଶିଷ୍ଟ ବ୍ୟକ୍ତି କେତେଜଣ ଯୋଗ ଦେଇ ନଥିଲେ। ଶ୍ରୀ ବିଶ୍ୱନାଥ ଦାଶ ଓ ଶ୍ରୀ ଶଶୀଭୂଷଣ ରଥ ସେତେବେଳେ ମାନ୍ଦ୍ରାଜ କାଉନ୍‌ସିଲର ସଭ୍ୟ, କଂଗ୍ରେସର କାଉନ୍‌ସିଲ୍ ବର୍ଜନ ପ୍ରସ୍ତାବକୁ ଅମାନ୍ୟ କରି କାଉନ୍‌ସିଲ୍ ସଭ୍ୟ ହୋଇଛନ୍ତି। ଯୋଗ ଦେବେ ବା କିପରି ? କେବଳ ଶ୍ରୀଲିଙ୍ଗରାଜ ପାଣିଗ୍ରାହୀ ଅଭ୍ୟର୍ଥନା ସଭାପତି ରୂପେ ଯୋଗଦେଇଥିଲେ।

ଲିଙ୍ଗରାଜ ବାବୁ ମାନ୍ଦ୍ରାଜରେ ବି.ଏଲ୍ ପଢୁଥିବା ବେଳେ ତାଙ୍କ ପିତା ଶ୍ରୀ ଗୋପୀନାଥ ପାଣିଗ୍ରାହୀ ସ୍କୁଲ ଡେପୁଟୀ ଇନ୍‌ସପେକ୍ଟର। ତାଙ୍କ ପୁଅ କାଳେ ପାଠ ପଢ଼ା ଛାଡ଼ିଦେଇ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ପକାଇବ, ଏହି ଆଶଙ୍କା କରି ଗାନ୍ଧୀ ଓ ଗୋପବନ୍ଧୁଙ୍କୁ ଯେଉଁଠି ପାରୁ ସେଇଠି ଗାଳି ଦେଉଥାନ୍ତି। ଲିଙ୍ଗରାଜ ବାବୁ କଂଗ୍ରେସର ପ୍ରତ୍ୟକ୍ଷ କାର୍ଯ୍ୟ କ୍ଷେତ୍ରରେ ଯୋଗଦେଇ ନଥିଲେ ସୁଦ୍ଧା ନିରଞ୍ଜନବାବୁଙ୍କ

ଅନୁରୋଧ କ୍ରମେ ଜିଲ୍ଲା କଂଗ୍ରେସ କମିଟୀର ସଭ୍ୟ ହୋଇଥିଲେ । ଏମାନେ ପରବର୍ତ୍ତୀ କାଳରେ କଂଗ୍ରେସର ବଡ଼ପଣ୍ଡା ହୋଇ ପାରିଥିଲେ । ତେବେ ଏମାନଙ୍କର ସାଧାରଣ କଂଗ୍ରେସ କର୍ମୀ ପ୍ରତି ତାଚ୍ଛଲ୍ୟ ଭାବ ପରିଲକ୍ଷିତ ହୋଇଥାଏ ।

ସମ୍ମିଳନୀ ଦିନ ପଣ୍ଡିତ ନୀଳକଣ୍ଠ ଦାଶ ପ୍ରାୟ ଦିନ ୧୧ଟା ବେଳେ ଆସି ପହଞ୍ଚିଲେ । ତାଙ୍କ ସାଙ୍ଗରେ ଲିଙ୍ଗରାଜ ବାବୁ ଆସିଥିଲେ । ନିରଞ୍ଜନବାବୁ ଖଦୀ କାମରେ ଅନ୍ୟତ୍ର ଚାଲିଯାଇଥିବା ହେତୁ ଯୋଗଦେଇ ପାରିନଥିଲେ । ଦିବାକର ବାବୁ ପ୍ରଭୃତି କେତେଜଣ ମଧ୍ୟ ଆସିପାରିନଥିଲେ । ଶ୍ରୀ ମହେନ୍ଦ୍ର ପଟ୍ଟନାୟକ, ଶ୍ରୀ ଶରତଚନ୍ଦ୍ର ମହାପାତ୍ର ପ୍ରଭୃତି ବହୁ ବିଶିଷ୍ଟ ବ୍ୟକ୍ତି ଯୋଗ ଦେଇଥିଲେ । ପ୍ରଚଣ୍ଡ ଖରାରେ ସଭାପତିଙ୍କୁ ଅଭ୍ୟର୍ଥନା କରାଯାଇ ଶୋଭାଯାତ୍ରାରେ ବସ୍‌ଷ୍ଟାଣ୍ଡରୁ ସଭାମଣ୍ଡପ ଯାଏଁ ଅଣାଯାଇ ଥିଲା । ବାଦ୍ୟ ବାଜଣା, ସଂକୀର୍ତ୍ତନ ଏବଂ ଭାରତମାତାଙ୍କ ଜୟ, ମହାତ୍ମାଗାନ୍ଧୀଙ୍କ ଜୟ, ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଜୟ ଧ୍ୱନିରେ ଗ୍ରାମ ନିନାଦିତ ହୋଇ ଉଠିଥିଲା । ଏହିପରି ଅଭ୍ୟର୍ଥନା ଓ ସଭା ଏପର୍ଯ୍ୟନ୍ତ ଜିଲ୍ଲାର ଅନ୍ୟ କେଉଁଠାରେ ହୋଇ ନଥିଲା । ଅସଂଖ୍ୟ ଲୋକଙ୍କ ସମାଗମ, ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ୨ ଘଣ୍ଟା ବେଳେ ସୁସଜ୍ଜିତ ଡ୍ରାମାପେଣ୍ଡାଲରେ ସମ୍ମିଳନୀ ଆରମ୍ଭ ହେଲା । ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା, ପଣ୍ଡିତ ରଘୁନାଥ ଶାସ୍ତ୍ରୀ ପ୍ରଭୃତି ନିତାନ୍ତ ରକ୍ଷଣଶୀଳ ବ୍ୟକ୍ତିମାନେ ମଧ୍ୟ ଯୋଗ ଦେଇଥିଲେ । ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମାଙ୍କ କଥା ଏଠାରେ ଟିକିଏ କହିଦିଏଁ ।

ପଣ୍ଡିତଙ୍କୁ ମୁଁ ବହୁଥର ଆମ ତାଲୁକା କଂଗ୍ରେସ କମିଟୀର ସଭ୍ୟ ହେବାପାଇଁ ପ୍ରବର୍ତ୍ତାଉ ଥାଏ । ସେ ଅସ୍ପୃଶ୍ୟତା ନିବାରଣର ଘୋର ବିରୋଧୀ । ଅସ୍ପୃଶ୍ୟତା ଦୂରୀକରଣ କଥା ଛାଡ଼ିଦେଇ କଂଗ୍ରେସର ଅନ୍ୟାନ୍ୟ କାର୍ଯ୍ୟରେ ଯୋଗଦେବା ଅନୁଚିତ ହେବ ନାହିଁ ବୋଲି କହି ମନାଇ ଥାଏ । ତାଙ୍କୁ ଖଦଡ଼ ଲୁଗାପଟା ଯୋଗାଇ ଦିଆଗଲା । ତାଲୁକା କଂଗ୍ରେସ କମିଟୀର ସଭ୍ୟ ହେଲେ । ଥରେ ଜଗନ୍ନାଥ ପାଠାଗାରଠାରେ ତାଲୁକା କଂଗ୍ରେସ କମିଟୀର ଏକ ସଭା ହୋଇଥିଲା । ପଣ୍ଡିତେ ଯୋଗ ଦେଇଥିଲେ । ଶ୍ରୀ ଜୟମଙ୍ଗଳ ରଥ ସେଠାରେ ଥାନ୍ତି, ସେତ ବ୍ରାହ୍ମ ସମାଜର ଅନୁଗତ । ତାଙ୍କ ସହ ପଣ୍ଡିତଙ୍କର ଅସ୍ପୃଶ୍ୟତା ସମ୍ପର୍କରେ ଯୁକ୍ତି ହେଲା । ଯୁକ୍ତି ତର୍କ ମଧ୍ୟରେ ପଣ୍ଡିତେ କହିଲେ "ଆଚ୍ଛା ଛୁଆଁ ଅଛୁଆଁ ଭେଦଭାବ ଛାଡ଼ି ଦେବାକୁ କହୁଛନ୍ତି ଯେ ପଇତାଟା ବାହାର କରିଦେଇ ପାରିବେ ନା ?" ଜୟମଙ୍ଗଳ ରଥ କହିଲେ "ହଁ ପଇତା ବାହାର କରିଦେବା କିଛି ଗୋଟାଏ ବିଚିତ୍ର କଥା ନୁହେଁ । ଲଗାଇଛି ତ ଲଗାଇଛି" ବ୍ରହ୍ମା ଧରି ବସିଲେ "କାହିଁ ବାହାର କରନ୍ତୁ ତ ଦେଖିବା ?" ଜୟମଙ୍ଗଳ ବାବୁ ପଇତାଟା ବାହାର କରିଦେଇ ଦାଣ୍ଡକୁ ଫିଙ୍ଗିଦେଇ ଖାଇବାକୁ ଚାଲିଗଲେ । "କେଡ଼େ କଥା କଲେ, କେତେ ବଡ଼ ଉତ୍କଟ ପାପ ?" ବୋଲି କହି ପଣ୍ଡିତେ ମୁଣ୍ଡକୁ ହାତ ମାରୁଥାନ୍ତି ।

ତ୍ରିଭିର୍ଦିନୈ ତ୍ରିଭିର୍ପକ୍ଷୈଃ, ତ୍ରିଭିର୍ମାସୈ ତ୍ରିଭିର୍ବର୍ଷୈଃ
ଅତ୍ୟୁତ୍କଟେ ପାପପୁଣ୍ୟେ ରିହୈବ ଫଳମଶ୍ନୁତେ ।

ବ୍ରହ୍ମାଙ୍କ ଦୃଷ୍ଟିରେ ପଇତା ବାହାର କରିଦେବା ଏକ ଉତ୍କଟ ପାପ ମଧ୍ୟରେ ଗଣ୍ୟ । ଇତ୍ୟବସରରେ ଶ୍ରୀ ଶ୍ରୀବତ୍ସ ପଣ୍ଡା ଓ ମୁଁ ଆସି ପହଞ୍ଚିଲୁ । ବ୍ରହ୍ମା ଆମକୁ କହିଲେ "ଦେଖନ୍ତୁ କେଡ଼େ କଥା ହେଲା ।" ପଇତା ଫିଙ୍ଗା ଘଟଣା ବୁଝାଇଲେ । ଶ୍ରୀବତ୍ସ ପଣ୍ଡା କହିଲେ "ସେ ସିନା ଦାଣ୍ଡକୁ ଫିଙ୍ଗି ଦେଲେ, ମତେ ଯଦି କହିବ ମୁଁ ତ ଏ ମହମ୍ମଦ ରାଜା ସାହେବ (କମିଟୀର ଜଣେ ମୁସଲମାନ ସଭ୍ୟ)ଙ୍କ ଗଳାରେ ପିନ୍ଧାଇ ଦେବି ।" ବ୍ରହ୍ମା ଆହୁରି ଆଶ୍ଚର୍ଯ୍ୟ ହୋଇ "ଧର୍ମଗଲା ଧର୍ମଗଲା" ବୋଲି ଚିତ୍କାର କଲେ । କମିଟୀ ଅଧିବେଶନ ଆରମ୍ଭ ହେଲା । ବ୍ରହ୍ମା ଏକଥା ଚାରିଆଡ଼େ କହି ବୁଲିଲେ । ଜୟମଙ୍ଗଳ ରଥ କହିଲେ ପଇତା ବାହାର କରିଦେବା ଦ୍ୱାରା ଯଦି କିଛି ବିପଦ ଆଶଙ୍କା ଥାଏ ତାହେଲେ ସେ ତିନିବର୍ଷ ଯାଏଁ ପଇତା ପିନ୍ଧିବେ ନାହିଁ । କିନ୍ତୁ ସେ ଜୀବନର ଶେଷକାଳ ଯାଏ ଆଉ ପଇତା ପିନ୍ଧିଲେ ନାହିଁ ।

ଆଉ ଦିନେ ସେଇ ଅସ୍ପୃଶ୍ୟତା ନିବାରଣ ବିଷୟରେ ପଣ୍ଡିତଙ୍କ ସହ ମୋର ସାମାନ୍ୟ ଯୁକ୍ତି ତର୍କ ହୋଇଥିଲା । ପିଲାଦିନୁଁ ମୁଁ ତାଙ୍କୁ ଅତିଶୟ ଶ୍ରଦ୍ଧା ଓ ଭକ୍ତି କରେ । ତାଙ୍କ ସହିତ ଯୁକ୍ତି କଲାବେଳେ ସଂକୋଚ ଭାବ ଆସେ । ବିଶେଷରେ ସେ ବୟୋଜ୍ୟେଷ୍ଠ ଓ ମହାପଣ୍ଡିତ । ଯୁକ୍ତି କରୁ କରୁ କହି ପକାଇଲେ "ତୋ ସହିତ କି ଯୁକ୍ତି ! ତୁ କ'ଣ ପଣ୍ଡିତ ?" ମୁଁ ବିନୟ ସହକାରେ କହିଲି, "ଆପଣଙ୍କ ପରି ଏଡ଼େ ବଡ଼ ପଣ୍ଡିତଙ୍କ ପକ୍ଷରେ ମୋ ପରି ସାମାନ୍ୟ ବ୍ୟକ୍ତି ସହିତ ଯୁକ୍ତି ତର୍କ କରିବା ଉଚିତ ହେଉନାହିଁ । ନିକଟରେ ପଣ୍ଡିତ ନୀଳକଣ୍ଠ ଦାଶ ଆସୁଛନ୍ତି ତାଙ୍କ ସହିତ ଯୁକ୍ତି ତର୍କ କରିବା ଆପଣଙ୍କ ପକ୍ଷେ ଶୋଭନୀୟ ହେବ ।" ସେ କହିଲେ "ସେହି ଭଳି ଲୋକଙ୍କ ସହ ଯୁକ୍ତି ତର୍କ କରିବା ଉଚିତ ।"

ବର୍ତ୍ତମାନ ପଣ୍ଡିତ ବ୍ରହ୍ମାଙ୍କୁ ସେ ଅବସର ମିଳିଲା । ସେ ସମୟାସମୟ ବିଚାର ନକରି ସେ ପ୍ରଚଣ୍ଡ ଖରାରେ ପଣ୍ଡିତ ନୀଳକଣ୍ଠ ଦାଶ ଶୋଭାଯାତ୍ରାରେ ଆସୁଥିବା ବେଳେ ଲୋକ ଗହଳି ଭିତରେ ଗଳି ପଶି ତାଙ୍କୁ ହଠାତ୍ ପ୍ରଶ୍ନ କଲେ "ଏ ଅସ୍ପୃଶ୍ୟତା ନିବାରଣ ସଂପର୍କରେ ଆପଣଙ୍କ ମତ କ'ଣ ?" ପଣ୍ଡିତ ନୀଳକଣ୍ଠ ତାଙ୍କର ଆପାଦ ମସ୍ତକ ପ୍ରତି ତୀକ୍ଷ୍ଣ ଦୃଷ୍ଟି ପକାଇ କହିଲେ "ଏଁ, ଅସ୍ପୃଶ୍ୟତା କ'ଣ ? ସେ ସବୁ କିଛି ନୁହେଁ ।" ପଣ୍ଡିତେ କହିଲେ, "ଆଉ ଧର୍ମଶାସ୍ତ୍ର କଥା ।" ଉତ୍ତର "ସେ ସବୁ ମିଥ୍ୟା, ମନଗଢ଼ା ।" ପଣ୍ଡିତେ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ମୁହଁରୁ ଆଉ କଥା ବାହାରିଲା ନାହିଁ । ସେଠାରୁ ବାହାରି ଆସି ସେ ଗହଳି ମଧ୍ୟରେ ଖୋଜି ଖୋଜି ମୋ ପାଖକୁ ଆସି କହିଲେ "ହଇହେ ବାଞ୍ଛାନିଧି ! କେଡ଼େ ପଣ୍ଡିତ ବୋଲି କହୁଥିଲ, ଧର୍ମଶାସ୍ତ୍ର ଗୁଡ଼ାକ ସବୁ ମିଥ୍ୟା ବୋଲି କାଟିଦେଲେ ।" ମୁଁ କହିଲି

ଆପଣଙ୍କର ତାଙ୍କ ସହ କେତେବେଳେ ଦେଖା ହେଲା ? ଆଉ କେତେବେଳେ ତାଙ୍କ ସହ କଥାବାର୍ତ୍ତା କଲେ ?'' ସେ କହିଲେ ''ଏବେ ଆସୁ ଆସୁ ବାଟରେ ।'' ମୁଁ କହିଲି, ''ଏ କ'ଣ ଶାସ୍ତ୍ର ଆଲୋଚନା ଯୁକ୍ତି ତର୍କର ବେଳ ? ସେ ଖରାରେ ଚାଲି ଚାଲି ଯାଉଛନ୍ତି । ସ୍ନାନ, ଭୋଜନ ହୋଇନାହିଁ । ଏ ଜନଗହଳି ପାଟି ତୁଣ୍ଡ ମଧରେ ଆପଣ ଏପରି ପ୍ରଶ୍ନ କରିବା ଉଚିତ ହେଲା ? ସ୍ନାନ ଭୋଜନ ସାରି ନିଶ୍ଚିନ୍ତ ଭାବେ ବସିଥିବା ବେଳେ ସିନା କଥାବାର୍ତ୍ତା କରିଥାନ୍ତେ ।'' ଶୋଭାଯାତ୍ରା ଶେଷରେ ଆମ୍ଭେମାନେ ଆଗନ୍ତୁକ ମାନଙ୍କ ଚର୍ଚ୍ଚାରେ ଲାଗିଲୁ । ବିଶ୍ରାମ ପରେ ସମ୍ମିଳନୀ ଆରମ୍ଭ ହେଲା ।

## କଂଗ୍ରେସ ସମ୍ମିଳନୀ

ବିଶାଳ ସୁସଜ୍ଜିତ ସଭାମଣ୍ଡପ ଲୋକରେ ପରିପୂର୍ଣ୍ଣ । ଘୁମୁସରର ଅନେକ ଗ୍ରାମରୁ ବହୁ ବିଶିଷ୍ଟ ଲୋକ ଯୋଗ ଦେଇଥିଲେ । ସଭା ବିଧିବଦ୍ଧ ଭାବରେ ଆରମ୍ଭ ହେବା ପରେ ଅର୍ଭ୍ୟର୍ଥନା ସଭାପତି ତାଙ୍କର ଅଭିଭାଷଣ ପାଠ କଲେ । ତାପରେ କେତେ ଗୁଡ଼ିଏ ପ୍ରସ୍ତାବ ଆଗତ ହୋଇ ଗୃହୀତ ହେଲା । ଅସ୍ପୃଶ୍ୟତା ନିବାରଣ ସଂପର୍କରେ ପ୍ରସ୍ତାବ ଅଭ୍ୟର୍ଥନା ସମିତିର ସଭାପତି ଆଗତ କଲେ । ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ବ୍ରହ୍ମା ବିପକ୍ଷରେ ଭାଷଣ ଦେଲେ । ଶ୍ରୀ ମହେନ୍ଦ୍ର ପଟ୍ଟନାୟକ ପ୍ରସ୍ତାବ ଅନୁମୋଦନ କରି କହିଲେ । ଦୁଇମାନଙ୍କରେ ବାଦାନୁବାଦ ସଭାଭଳି ହେଲା । ତାପରେ ଶ୍ରୀ ଶରତଚନ୍ଦ୍ର ମହାପାତ୍ର ପ୍ରସ୍ତାବ ସପକ୍ଷରେ ଭାଷଣ ଦେବାକୁ ଉଠି କହିଲେ; ''ମୁଁ କ'ଣ କହିବି, ସଭା ଶେଷ ମୁଣ୍ଡରେ ଜଣେ ଦଣ୍ଡାସୀ (ହରିଜନ) ଭାଇ ବସିଛନ୍ତି, ସେ କହିବେ ।'' ଏତିକିରେ ଉଠିଲା ମହା ଗଣ୍ଡଗୋଳ । ସଭା ମଧ୍ୟକୁ ଦଣ୍ଡାସୀଟାଏ ଆସିଲା କିମିତି ? କେତେଜଣ ଆସନରୁ ଉଠିପଡ଼ି ପାଟି ତୁଣ୍ଡ କଲେ । ପୋଲିସ ଇନସ୍‌ପେକ୍ଟର ଶ୍ରୀ ମାଗତା ପାଣିଗ୍ରାହୀ ଓ ଅନ୍ୟାନ୍ୟ ପୋଲିସ୍ କର୍ମଚାରୀମାନେ ଗଣ୍ଡଗୋଳ ବନ୍ଦ କରିବାକୁ ଚେଷ୍ଟା କରି ନିଷ୍ଫଳ ହୋଇ ଥକିଗଲେ । ତାପରେ ସଭାପତି ପଣ୍ଡିତ ନୀଳକଣ୍ଠ ଦାଶ ଦଣ୍ଡାୟମାନ ହୋଇ ଦାଢ଼ି ଆଉଁସି ସଭାର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ତୀବ୍ର ଦୃଷ୍ଟିପାତ କରି ଆରମ୍ଭ କଲେ ବିଭୂତି ଅଧାୟ ''ମୁଁ ଏ ସଭାର ସଭାପତି, ଆପଣମାନେ ମତେ ଏ ସଭାପତି ଆସନ ଦେଇଛନ୍ତି । ସଭା ଆରମ୍ଭରୁ ଶେଷହେବା ଯାଏଁ ମୁଁ ରାଜା, ଆପଣମାନେ ପ୍ରଜା, ତଥାପି ସଭାପତି ବା ରାଜାଙ୍କ ବିଦ୍ୟମାନତାରେ ଆପଣମାନଙ୍କର ଏ ଗଣ୍ଡଗୋଳ ନିତାନ୍ତ ଅଶୋଭନୀୟ ।'' ଏତିକିରେ ସଭା ଶାନ୍ତ ହେଲା । ଲୋକେ ଯେ ଯା'ର ଆସନରେ ଧୀର, ଶାନ୍ତ ଭାବରେ ବସିଲେ । ତା'ପରେ ସଭାପତି ମହୋଦୟ ଆରମ୍ଭ କଲେ ବିଭୂତି ଅଧ୍ୟାୟର ୨ୟ ପର୍ଯ୍ୟାୟ ''ମୁଁ ବ୍ରାହ୍ମଣ । ପୁରୀ

ପାଞ୍ଚକୋଶୀଆର ସାମନ୍ତ ବ୍ରାହ୍ମଣ । ମୁକ୍ତିମଣ୍ଡପରେ ମୋର ଆସନ ଅଛି । ଆଉ ତମର ଏ ଯେଉଁ ବ୍ରହ୍ମା ପ୍ରହ୍ମା କହୁଛ ଏମାନଙ୍କର ପାଣି ଆମେ ପ୍ରସ୍ରାରେ ସୁଦ୍ଧା ପକାଇବୁ ନାହିଁ । ଏମାନେ ଆମ ଦୁଆରେ ଅଗୋଡ଼ ଧୂଆରେ ଖାଇ ବସିବେ । ତଥାପି ମୁଁ କହୁଛି ହାଡ଼ି, ପାଣ, କଣ୍ଡରା, ବାଉରୀଙ୍କୁ ଛୁଇଁଲେ କୌଣସି ଦୋଷ ନାହିଁ' ଏତକ କହି ସେ ଅସ୍ପୃଶ୍ୟତା ନିବାରଣ ବିଷୟରେ ନାନାପ୍ରକାର ଶାସ୍ତ୍ର ପ୍ରମାଣ ସାଙ୍ଗକୁ କେତେ ସତ କେତେ ମିଛ ଘଟଣାର ଉଦାହରଣ ଦେଇ ପ୍ରାୟ ଦୁଇ ଘଣ୍ଟାକାଳ ଗଳଦ୍‌ଘର୍ମ ହୋଇ ଦଶ ଗ୍ଲାସ ଯାଏ ପାଣି ପିଇ ନାନା ଯୁକ୍ତି ଦେଖାଇ ଅସ୍ପୃଶ୍ୟତା ନିବାରଣ ଯୁକ୍ତିଯୁକ୍ତ ବୋଲି ପ୍ରତିପାଦନ କଲେ । ଏଥି ସମ୍ବନ୍ଧେ ଭୋଟ ନେବା ପାଇଁ ଲିଙ୍ଗରାଜବାବୁଙ୍କୁ କହି ଆସନ ଗ୍ରହଣ କଲେ । ଲିଙ୍ଗରାଜବାବୁ ଉଠି କହିଲେ "ଅସ୍ପୃଶ୍ୟତା ନିବାରଣ ସପକ୍ଷରେ" ଏତକ କହୁ କହୁ ସଭାପତି ତାଙ୍କୁ ବନ୍ଦ କରାଇ କହିଲେ, "ମଫସଲ ଗାଁ ମାନଙ୍କରୁ ଲୋକେ ଆସିଛନ୍ତି, ଏପରି ଭାଷାରେ କହିଲେ ସେମାନେ ବୁଝି ପାରିବେ ନାହିଁ ବୋଲି ସେ ନିଜେ ଉଚ୍ଚ ସ୍ୱରରେ କହିଲେ- "ହାଡ଼ି, ପାଣ, ଦଣ୍ଡାସି, କଣ୍ଡରାଙ୍କୁ ଛୁଇଁଲେ ଦୋଷ ନାହିଁ, କାହାର ମତ ଅଛି ହାତ ଟେକ ।" ସମସ୍ତେ ହାତ ଟେକିଲେ । କେହି ଜଣେ ସୁଦ୍ଧା ଆପତ୍ତି କଲେ ନାହିଁ । ବିପୁଳ କରତାଳି ଓ ଆନନ୍ଦ ଧ୍ୱନି ମଧ୍ୟରେ ସର୍ବ ସମ୍ମତି କ୍ରମେ ପ୍ରସ୍ତାବ ଗୃହୀତ ହେଲା । ସେ ଦିନର ସଭା ସରିଲା । ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ଆଉ ରହିପାରିଲେ ନାହିଁ । ସେ ରାତିରେ ଖଣ୍ଡେ ଲଣ୍ଠନ ଧରି ୭/୮ ମାଇଲ ବାଟ ଚାଲି ଚାଲି ତାଙ୍କ ଗାଁକୁ ଗଲେ । ତା' ଆରଦିନ ସମ୍ମିଳନୀର ଦ୍ୱିତୀୟ ଦିବସ ନାନା ପ୍ରସ୍ତାବ ଓ ଭାଷଣମାନ ହେବାପରେ ମହାସମାରୋହରେ ସମ୍ମିଳନୀ ଶେଷ ହେଲା ।

## ଜାତୀୟ ବିଦ୍ୟାଳୟ

ବେଲଗୁଣ୍ଠାରେ ଏକ ଜାତୀୟ ବିଦ୍ୟାଳୟ ସ୍ଥାପନ କରିବା ପ୍ରସ୍ତାବ କଲି । ଗ୍ରାମ୍ୟ କଂଗ୍ରେସ କମିଟୀ ସମ୍ମତ ହେଲେ । ଆଡ଼ପ ମନ୍ଦିର ନିକଟରେ ଗୋଟିଏ ଛୋଟ ଚାଟଶାଳୀ ଘରେ କାର୍ଯ୍ୟ ଆରମ୍ଭ ହେଲା । କ୍ରମଶଃ ଛାତ୍ର ଗ୍ରହଣ କରାଗଲା । ମୁଁ ଏବଂ ମୋର ବନ୍ଧୁ ଗୋଦାବରୀଶ ଦାଶ ଶିକ୍ଷକତା କଲୁ । ନିୟମାବଳୀ ଓ ପାଠ୍ୟକ୍ରମାଦି ପ୍ରଣୟନ ହେଲା । ଖୁବ୍ କଡ଼ା ନିୟମ । ପାଠ୍ୟ କାର୍ଯ୍ୟକ୍ରମରେ- ଆସନାଦି ଯୌଗିକ ବ୍ୟାୟାମ ଓ ଅନ୍ୟାନ୍ୟ ଦେଶୀ କସରତ ଶିକ୍ଷା, ଇଂରେଜୀ, ସଂସ୍କୃତ, ମାତୃଭାଷା, ଗଣିତ, ଭୂଗୋଳ, ଇତିହାସାଦି ଶିକ୍ଷାଦେବା । ଦାଣ୍ଡରେ ବହୁଲୋକ ସମାଗମରେ ମଧ୍ୟ ଆଶ୍ରମ ନିୟମରେ ଶିକ୍ଷାଦାନ କରାଗଲା । ନିୟମ, ଶୃଙ୍ଖଳା ଓ ଶିକ୍ଷାଗତ ପ୍ରଣାଳୀ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଉଥାନ୍ତି । କେତେ ମାସ ପରେ ଗୋଦାବରୀଶ ବାବୁ ଖଦୀ

ଦୋକାନ ପରିଚାଳନା ଓ ଅନ୍ୟାନ୍ୟ ସାଂଗଠନିକ କାର୍ଯ୍ୟରେ ଯୋଗଦେବା ପାଇଁ ଶିକ୍ଷକତାରୁ ବିଦାୟ ନେଲେ । ତାଙ୍କ ସ୍ଥାନରେ ବୋଇରାଣୀର ଶ୍ରୀ ସୋମନାଥ ମିଶ୍ର ନିଯୁକ୍ତ ହେଲେ । କେତେ ଦିନ ପରେ ସେ ମଧ୍ୟ ବିଦାୟ ନେଲେ । ତାଙ୍କ ସ୍ଥାନରେ ସଦାଶିବପୁର ଶାସନର ଶ୍ରୀ ହରିବନ୍ଧୁ ଖାଡ଼ଙ୍ଗା ନିଯୁକ୍ତ ହେଲେ ।

## ଉତ୍କଳ ସମ୍ମିଳନୀ ଓ ଦେଶ ମିଶ୍ରଣ

୧୯୨୪ ସାଲରେ ଗଞ୍ଜାମକୁ ମାନ୍ଦ୍ରାଜ ପ୍ରଦେଶରୁ ନେଇ ଓଡ଼ିଶା ସଙ୍ଗେ ମିଶାଇବା ସମ୍ପର୍କରେ ଅନୁସନ୍ଧାନ କରିବାପାଇଁ ଫିଲିପ୍‌ଡ଼ଫ୍ କମିଶନ ନାମରେ ଗୋଟିଏ କମିଶନ ବସିଥିଲା । ଏହି କମିଶନ ଆଗରେ ସାକ୍ଷ୍ୟଦେବା ଉଦ୍ଦେଶ୍ୟରେ ଲୋକଙ୍କୁ ସଂଗଠିତ କରିବା ପାଇଁ ସମଗ୍ର ଜିଲ୍ଲାରେ ପ୍ରଚାର କରାଯାଉଥିଲା । ଶ୍ରୀ ନିରଞ୍ଜନ ପଟ୍ଟନାୟକ ସେଥିପାଇଁ ବ୍ରହ୍ମପୁରରେ ଏକ କାର୍ଯ୍ୟାଳୟ ପ୍ରତିଷ୍ଠା କରି ସମଗ୍ର ଜିଲ୍ଲାରେ ପ୍ରଚାର ଆୟୋଜନ କରିଥିଲେ । କଟକରୁ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଶ୍ରୀ ବ୍ରଜସୁନ୍ଦର ଦାସ, ଶ୍ରୀ ଲାଲମୋହନ ପଟ୍ଟନାୟକ ପ୍ରଭୃତି ଉତ୍କଳ ସମ୍ମିଳନୀର ନେତୃବୃନ୍ଦ ରସଲକୋଣ୍ଡା ଅଞ୍ଚଳରେ ପ୍ରଚାର ପାଇଁ ଆସିଥାନ୍ତି । ସେମାନଙ୍କୁ କମିଶନ କାର୍ଯ୍ୟଶେଷ ଯାଏଁ ରସଲକୋଣ୍ଡାରେ ଅବସ୍ଥାନ କରିବାକୁ ପଡ଼ିଥିଲା । ଦିନେ ଲକ୍ଷ୍ମୀନାରାୟଣ ସାହୁ ବେଲଗୁଣ୍ଠା ଆସିଥିଲେ । ଜାତୀୟ ବିଦ୍ୟାଳୟକୁ ଦେଖି ସେ ଆକୃଷ୍ଟ ହୋଇ ପ୍ରାର୍ଥନାରେ ଯୋଗଦେଲେ । ଛାତ୍ରମାନଙ୍କୁ ନାନା ଉପଦେଶ ଦେଲେ । ସେ ଦିନଠାରୁ ସେ କମିଶନ କାମରେ ଦିନ ଯାକ ବିଭିନ୍ନ ସ୍ଥାନବୁଲି ସନ୍ଧ୍ୟାରେ ବିଦ୍ୟାଳୟକୁ ଫେରିଆସନ୍ତି ।

ଆସିକା ହାଇସ୍କୁଲ ଶିକ୍ଷକ ଶ୍ରୀ ଦିବ୍ୟସିଂହ ପଟ୍ଟନାୟକ ଦଳେ ଛାତ୍ର ସାଙ୍ଗରେ ନେଇ କମିଶନ ଆଗରେ ସାକ୍ଷ୍ୟ ଦେବାପାଇଁ ଗ୍ରାମେ ଗ୍ରାମେ ବୁଲି ଲୋକଙ୍କୁ ବୁଝାଇ ବେଲଗୁଣ୍ଠାରେ ଉପସ୍ଥିତ ହୋଇଥିଲେ । ସେଦିନ ଜାତୀୟ ବିଦ୍ୟାଳୟରେ ଅବସ୍ଥାନ କଲେ ଏବଂ ବିଦ୍ୟାଳୟର କାର୍ଯ୍ୟକ୍ରମ ଦେଖି ବଡ଼ ସନ୍ତୁଷ୍ଟ ହୋଇଥିଲେ ।

ଜାତୀୟ ବିଦ୍ୟାଳୟର ପ୍ରଥମ ବାର୍ଷିକ ଉତ୍ସବ ହେଲା । ପଣ୍ଡିତ କୃପାସିନ୍ଧୁ ହୋତାଙ୍କୁ ସଭାପତି ଭାବେ ବରଣ କରାଯାଇଥିଲା । ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଯୋଗଦେଇଥିଲେ । ରସଲକୋଣ୍ଡା ହାଇସ୍କୁଲ ପ୍ରଧାନ ଶିକ୍ଷକ ଶ୍ରୀ.ଜି. ରାମବ୍ରହ୍ମ ଆଗ୍ରହର ସହ ଆସିଥିଲେ । ଉତ୍ସବ ଅତି ସରଳ ଓ ନିରାଡ଼ମ୍ବର ଭାବେ ପାଳିତ ହୋଇଥିଲା ।

ବେଲଗୁଣ୍ଠାର ସର୍ବଶ୍ରୀ ଲିଙ୍ଗରାଜ ଦାସ, କର୍ପଣା କୃଷ୍ଣମୂର୍ତ୍ତି ପାତ୍ର, ବାବୁ ଗୋପୀନାଥ ପୃଷ୍ଟି ପ୍ରଭୃତିଙ୍କ ସାହାଯ୍ୟ, ସହାନୁଭୂତି ଓ ସାହଚର୍ଯ୍ୟରେ ସମ୍ମିଳନୀ,

ଜାତୀୟ ବିଦ୍ୟାଳୟ ଓ ଅନ୍ୟାନ୍ୟ ସଂଗଠନ କାର୍ଯ୍ୟ ସୁଚାରୁରୂପେ ପରିଚାଳିତ ହୋଇଥାଏ । ସର୍ବୋପରି ବାବୁ ଗୋପୀନାଥ ପୃଷ୍ଟି ଓ ତାଙ୍କ ପରିବାରର ସାହାଯ୍ୟ ଓ ସହାନୁଭୂତି ଆମ୍ଭମାନଙ୍କୁ ଉତ୍ସାହିତ କରିଥିଲା । ଗୋପୀନାଥ କଂଗ୍ରେସ କମିଟୀ ସମ୍ପାଦକ । ସେ ଅଧିକାଂଶ ସମୟ ଆମ୍ଭମାନଙ୍କ ସହ ବିଦ୍ୟାଳୟରେ କଟାଇଥାନ୍ତି । ପ୍ରାୟ ସମସ୍ତ କାର୍ଯ୍ୟରେ ଯୋଗ ଦିଅନ୍ତି । ତାଙ୍କର ତିନିଜଣ ଭାଇ ବିଦ୍ୟାଳୟର ଛାତ୍ର । ସେମାନେ ସମସ୍ତେ ସାତ ଭାଇ, ପ୍ରଥମ ଦୁହେଁ ଗୋପୀନାଥ ଓ ରଘୁନାଥ । ଅନ୍ୟମାନେ ଯଥାକ୍ରମେ ବାଉରି, ରାମମୂର୍ତ୍ତି, ଶ୍ରୀରଙ୍ଗ, ଆଦିନାରାୟଣ । ସେମାନଙ୍କ ନାମରେ ନାଥ ପ୍ରୟୋଗ କରି ଯଥାକ୍ରମେ ବଦଳାଇ ଦେଲି:- ରାଧାନାଥ, ରାମନାଥ, ରଙ୍ଗନାଥ, ଆଦିନାଥ ଏବଂ କହିଥିଲି ଏଣିକି ଆଉ ପୁତ୍ର ସନ୍ତାନ ହେଲେ "ନାଥ" ପ୍ରୟୋଗ କରି ନାମ ଦେବ । ରାଧାନାଥ ସେ ସମୟରେ ରସଲକୋଣ୍ଡା ହାଇସ୍କୁଲରେ ପଢୁଥିଲେ । ଛୁଟିରେ ଆସିଲେ ମୋ ପାଖରେ ପଢ଼େ । ରାଧାନାଥ, ରାମନାଥ ଓ ରଙ୍ଗନାଥ ସହ ମୋର ବିଶେଷ ଘନିଷ୍ଠତା ଥାଏ । ରାଧାନାଥ ଉଚ୍ଚଶିକ୍ଷା ଲାଭ କରି ପରବର୍ତ୍ତୀ କାଳରେ ଓଭରସିଅର ହୋଇଥିଲେ । ରଙ୍ଗନାଥ, ବିଶ୍ୱନାଥ ମଧ୍ୟ ସେହିପରି ଓଭରସିଅର ହୋଇପାରିଥିଲେ । ଆଉ ଜଣେ ଛାତ୍ର ପଟଂ ରଙ୍ଗନାଥ ପାତ୍ର ଜଣେ ଆଦର୍ଶବାନ, ଶାନ୍ତଶିଷ୍ଟ ଓ ମିଷ୍ଟବାଦୀ ବ୍ୟକ୍ତି । ଏମାନଙ୍କ ଯୋଗୁଁ ବିଦ୍ୟାଳୟର ସୁନାମ ହୋଇଥିଲା ।

ଆମେ ଶିକ୍ଷକମାନେ ଆଦର୍ଶ ଜୀବନ ଅତିବାହିତ କରୁଥିଲୁ- ବ୍ରହ୍ମଚାରୀ ଓ ସନ୍ୟାସୀମାନଙ୍କ ପରି । ରାତିରେ ଖଣ୍ଡେ ଖଣ୍ଡେ ନଡ଼ିଆ ପତ୍ର ପଟିରେ ବାଲେୟା ପାତ୍ରଙ୍କ ବିଶାଳ ପିଣ୍ଡାରେ ମଶା ଦଂଶନ ମଧ୍ୟରେ ଶୋଇପଡୁ । ସତ୍ୟନାରାୟଣ ମନ୍ଦିରର ଏକ ଛୋଟ ବଖରାରେ ରୋଷେଇ କରିଖାଉଁ । ସମସ୍ତ ପ୍ରକାର ଦୁରଭ୍ୟାସର ଦୂରରେ । ବୃଥା ସମୟ ବ୍ୟୟ ନ କରି ସର୍ବଦା କର୍ମନିରତ । ବାଲେୟା ପାତ୍ରଙ୍କ ବାପା ବିଘ୍ନେଶ ପାତ୍ର ବଡ଼ ଦୋଷଦର୍ଶୀ ଓ କଟୁ ସମାଲୋଚକ । ବିଦ୍ୟାଳୟ ସାମନାରେ ତାଙ୍କ ଘର । ସବୁବେଳେ ଆମ୍ଭମାନଙ୍କ ଆଚରଣ, ପିଲାମାନଙ୍କ ବ୍ୟବହାର ଓ ପଢ଼ାପଢ଼ି ପ୍ରତି ତାଙ୍କର ନଜର । ସେ ଆମ୍ଭମାନଙ୍କୁ ନିଷ୍ଠାପର ସାଧୁ ପୁରୁଷ ରୂପେ ଗଣନା କରନ୍ତି ଓ ପଦାରେ କହି ବୁଲନ୍ତି ।

ଥରେ ଜଣେ ଜଟାଜୁଟଧାରୀ ବାବାଜୀ ଆସି ବିଦ୍ୟାଳୟ ନିକଟ ଆଡ଼ପ ମଣ୍ଡପରେ ରହିଲେ । ବହୁତ ଗଞ୍ଜେଇ ସେବନ କରନ୍ତି । ଗାଁର ଯେତେ ଗଞ୍ଜେୟା ସନ୍ଧ୍ୟାରେ ତାଙ୍କ ପାଖରେ ଆସି ରୁଣ୍ଡ ହୁଅନ୍ତି । ଗାଁର ଜଣେ ବିଶିଷ୍ଟ ବ୍ୟକ୍ତି ଚିନଂ ରଘୁନାଥ ପାତ୍ର ତାଙ୍କର ଭକ୍ତ । ସେ ଗାଁର ଧନୀ ଲୋକ, ଗଞ୍ଜାମ ଜିଲ୍ଲା ବୋର୍ଡ଼ର ସଭ୍ୟ । ଶ୍ରୀ ବାସୁଦେବ ମନ୍ଦିର, ଧର୍ମଶାଳା, ପିଲାଖାଇ ବନ୍ଧ ପ୍ରଭୃତି ଅନେକ ଧର୍ମ କାର୍ଯ୍ୟ କରିଛନ୍ତି । ସେ ଦିନେ ସନ୍ଧ୍ୟାରେ ବାବାଜୀଙ୍କ ସହ ଗଞ୍ଜେଇ ସେବନ କରୁଥିବା ଆମର ସହକାରୀ ଶିକ୍ଷକ ଶ୍ରୀ ହରିବନ୍ଧୁ ଖାଡ଼ଙ୍ଗା ଦେଖିଲେ ଏବଂ ସେମାନଙ୍କୁ ସେଥିରୁ ବିରତ ହେବାପାଇଁ

ଉପଦେଶ ଦେଲେ । ବାବାଜୀ ନାନା ଯୁକ୍ତି କଲେ । ବାବାଜୀ ଓ ହରିବନ୍ଧୁ ବାବୁଙ୍କ ମଧ୍ୟରେ ଯୁକ୍ତିତର୍କ ଚାଲିଥିବା ବେଳେ ରଘୁନାଥ ପାତ୍ରେ ବାବାଜୀଙ୍କ ସପକ୍ଷରେ ରହି ଏଣ୍ଡୁତେଣ୍ଡୁ କ'ଣ କହିଲେ । ବିଘ୍ନେଶ ପାତ୍ର ତାଙ୍କ ପିଛାରେ ଥାଇ ଶୁଣୁଥିଲେ, ତକ୍ଷଣେ ସେଠାକୁ ଦୌଡ଼ିଯାଇ ରଘୁନାଥ ପାତ୍ରଙ୍କୁ ନିବର୍ତ୍ତାଇ କହିଲେ "ତମେ କାହିଁକି ଚିହ୍ଲାପଡୁଛ ? ବାବାଜୀ ଲଙ୍ଗଳାକୁ ଏ ମଧ ଲଙ୍ଗଳା (ଅର୍ଥାତ୍ ତ୍ୟାଗୀ) ସେମାନେ ଲାଗିଛନ୍ତି ଲାଗନ୍ତୁ ।" ଏତିକିରେ ରଘୁନାଥ ପାତ୍ର ତୁନି ହେଲେ ।

ରଘୁନାଥ ପାତ୍ରେ ତାଙ୍କ ପିଲାଖାଇ ବନ୍ଧକୁ ଜଗାରଖା କରାଇ ଅତି ଜାଗ୍ରତରେ ରଖିଥାନ୍ତି । ପାଣି ନିର୍ମଳ ରହିବା ଉଦ୍ଦେଶ୍ୟରେ ବଡ଼ ବଡ଼ ମାଛ ଛାଡ଼ିଥାନ୍ତି ଓ ମାଛ ଧରିବା ମନା ହୋଇଥାଏ । ଦିନେ ଗଞ୍ଜାମ ଜିଲ୍ଲା କଲେକ୍ଟର ରସଲକୋଣ୍ଡା ରାସ୍ତାରେ ଆସିଥିବା ବେଳେ ରସଲକୋଣ୍ଡା ତହସିଲଦାର ଉକ୍ତ ବନ୍ଧରୁ କଲେକ୍ଟରଙ୍କ ପାଇଁ ମାଛ ଆବଶ୍ୟକ ବୋଲି ରେଭିନ୍ୟୁ ଇନସ୍‌ପେକ୍ଟରଙ୍କୁ ମାଛ ଧରାଇ ଆଣିବା ସକାଶେ ପଠାଇଲେ । ମାଛ ନ ଧରିବା ପାଇଁ ରଘୁନାଥ ପାତ୍ରେ ଅନୁରୋଧ କଲେ । ରେଭିନ୍ୟୁ ଇନସ୍‌ପେକ୍ଟର ମାନିଲେ ନାହିଁ । ରଘୁନାଥ ପାତ୍ରେ ଏକଥା ଆମକୁ ଆସି କହିଲେ । ମୁଁ ଯାଇ ରେଭିନ୍ୟୁ ଇନସ୍‌ପେକ୍ଟରଙ୍କୁ ଅନୁରୋଧ କରି ମନା କଲି । ନ ମାନିଲେ ପିକେଟିଂ କରିବୁ ବୋଲି କହିଲି । ସେ ଏକଥା ତହସିଲଦାରଙ୍କୁ ଜଣାଇଲେ । ତହସିଲଦାର ଜିଦ୍‌କରି ରସଲକୋଣ୍ଡାରୁ ତାଙ୍କର କେତେଜଣ ଚପରାଶି ଓ ମାଛ ଧରାଳି ହାଡ଼ିମାନଙ୍କୁ ପଠାଇଲେ । ଆମେ ଜାତୀୟ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନେ, ଗ୍ରାମର କର୍ପନା କୃଷ୍ଣମୂର୍ତ୍ତି ପାତ୍ର ପ୍ରଭୃତି କେତେଜଣ ଯୁବକ ଅଣ୍ଟେ ପାଣିକୁ ଯାଇ ପାଣି ସବୁ ହଲଚଲ କଲୁ । ସେମାନେ ମାଛ ଧରି ନ ପାରି ଫେରିଗଲେ ।

ମୁଁ ଗୋଟିଏ ନିବେଦନ କଲେକ୍ଟରଙ୍କ ପାଖକୁ ଲେଖି ରଘୁନାଥ ପାତ୍ରଙ୍କୁ ଦେଇ କହିଲି କେତେଜଣ ଯାଇ ଏହା କଲେକ୍ଟରଙ୍କୁ ସାକ୍ଷାତରେ ଦିଅ । ସେମାନେ ସେପରି କଲେ । କଲେକ୍ଟର ସମସ୍ତ ବିଷୟ ବୁଝି କହିଲେ "ଆମକୁ ତ ମାଛ ଦର୍କାର ନାହିଁ । ଆମପାଇଁ କାହିଁକି ମାଛ ଧରା ହେଲା ? ଆଚ୍ଛା ମୁଁ ଯାଇ ସେ ପୋଖରୀ ଦେଖିବି ।" ତହିଁ ଆରଦିନ ସେ ଡ଼େପୁଟି କଲେକ୍ଟର ଓ ତହସିଲ ଦାରଙ୍କ ସହ ଆସିଲେ । ରେଭିନ୍ୟୁ ଇନସ୍‌ପେକ୍ଟର, କରଣ, କାର୍ଯି ଓ ଅନ୍ୟାନ୍ୟ ଅନେକ ଲୋକ ଜମା ହେଲେ । କଲେକ୍ଟର ବନ୍ଧହୁଡ଼ା ଉପରେ ବୁଲି ବୁଲି ସବୁ ଦେଖିଲେ । ଲୋକଙ୍କଠାରୁ ସବୁକଥା ବୁଝିଲେ । ଏହି ପୋଖରୀରୁ ସବୁଦିନ ପାଇଁ ମାଛଧରା ବନ୍ଦ ହେଲା ବୋଲି ଆଦେଶ ଦେଲେ । ପୋଖରୀଟି ବେଲଗୁଣ୍ଠାରେ ଏକମାତ୍ର ପାନୀୟ ଜଳର ଆଶ୍ରୟ । ସବୁବେଳେ ସୁରକ୍ଷିତ ହୋଇ ଆସୁଛି । ଗାଧୋଇବା ଓ ଲୁଗାଧୋଇବା ମନା ।

ଥରେ ବିଦ୍ୟାଳୟ ଘର ମରାମତି ହେଉଥିବାରୁ ସ୍ଥାନୀୟ ଭଗବତ ମନ୍ଦିର ମଣ୍ଡପରେ

ବିଦ୍ୟାଳୟ କାର୍ଯ୍ୟ କରିବାକୁ ପଡ଼ିଲା । ଶ୍ରୀ ପୁରୁଷୋତ୍ତମ ପାଣିଗ୍ରାହୀ (ସତ୍ୟବାଦୀ କବୀନ୍ଦ୍ରଙ୍କ ପିତା) ଉକ୍ତ ମନ୍ଦିରର ପୂଜକ । ଜଣେ ବୃଦ୍ଧ ସନ୍ନ୍ୟାସୀ ଆସି ଉକ୍ତ ମନ୍ଦିରରେ କିଛିଦିନ ଅବସ୍ଥାନ କଲେ । ସ୍ଥାନୀୟ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ବେଳେ ବହୁବର୍ଷ ତଳେ ସେ ଆମନ୍ତ୍ରିତ ହୋଇ ଆସିଥିଲେ । ସେ ଜଣେ ବଡ଼ ପଣ୍ଡିତ, ବେଦ, ବେଦାନ୍ତ, ସ୍ମୃତି, ପୁରାଣ, ଆୟୁର୍ବେଦ ଓ ଶିଳ୍ପ ଶାସ୍ତ୍ରରେ ନିପୁଣ । ତାଙ୍କର କିନ୍ତୁ ମାଦକଦ୍ରବ୍ୟ ସେବନ ଅଭ୍ୟାସ ଥାଏ । ଗଞ୍ଜେଇ, ଅଫିମ, ଚା ପ୍ରଭୃତି ସେବନ କରନ୍ତି । ସେ ଆସିବା ଦିନ ସନ୍ଧ୍ୟାରେ ଆମେ ସମସ୍ତେ ବସି ପ୍ରାର୍ଥନା କରୁଛୁ ଆମ ପଛପଟେ ଗଞ୍ଜେଇ ସେବନ କରିବାପାଇଁ କଣ ପୋଡ଼ାପୋଡ଼ି ସବୁ ଆରମ୍ଭ ହେଲା । ପ୍ରାର୍ଥନା ସରିବା ସଙ୍ଗେ ସଙ୍ଗେ ହରିବନ୍ଧୁ ବାବୁ ବିକୃତ ସ୍ୱରରେ କହିଲେ "ଇଁ ହିଁ କି ଗନ୍ଧ !" ସନ୍ନ୍ୟାସୀ ଏକଥା ଶୁଣି ରାଗିଯାଇ କହିଲେ "ଓଃ ଆମେ ଇମିତି କେତେ ଲୋକଙ୍କୁ ଦେଖିଛୁ । ଗଞ୍ଜେଇ ତ କେବଳ ଆମେ ଖାଉନୁ, କେତେ ବଡ଼ ବଡ଼ ସାଧୁ ସନ୍ନ୍ୟାସୀ ଏପରିକି ସ୍ୱୟଂ ମହାଦେବ ମଧ୍ୟ ସେବନ କରୁଥିଲେ ।" ଏକଥା ଶୁଣି ହରିବନ୍ଧୁବାବୁ ତଳକୁ ଚାପୁଡ଼ା ମାରି କହିଲେ, "ଧରଣି ଫାଟିଯା'ରେ ଏକଥା ମୋ କାନ ଶୁଣିଲା !" ମୁଁ ତାଙ୍କୁ ମନା କରୁଥାଏ, ସେ କ'ଣ ଶୁଣିବା ଲୋକ ? ସନ୍ନ୍ୟାସୀଙ୍କ ଭକ୍ତମାନେ ଏପରିକି ମନ୍ଦିର ପୂଜାରୀ ଯାହାଙ୍କର ଆମ ପ୍ରତି ପ୍ରଗାଢ଼ ସ୍ନେହ ଓ ଆଦର ଥିଲା- ତେଜି ଉଠିଲେ । ବଡ଼ କଷ୍ଟରେ ହରିବନ୍ଧୁ ବାବୁଙ୍କୁ ଶାନ୍ତ କରାଇ, ମୁଁ ସନ୍ନ୍ୟାସୀଙ୍କ ସହ ଧୀର, ନମ୍ର ଓ ଭକ୍ତି ସହକାରେ ମାଦକ ଦ୍ରବ୍ୟ ସେବନ କରିବା ସମ୍ପର୍କରେ ଯୁକ୍ତିତର୍କ କଲି । କହିଲି "ଆଚ୍ଛା, ଆପଣ କହିଲେ ବଡ଼ ବଡ଼ ଯୋଗୀ, ସନ୍ନ୍ୟାସୀ ଏବଂ ମହାଦେବ ମଧ୍ୟ ଗଞ୍ଜେଇ ସେବନ କରିଥାନ୍ତି । କିନ୍ତୁ ପତଞ୍ଜଳି ଯୋଗ ଶାସ୍ତ୍ରରେ ମାଦକଦ୍ରବ୍ୟ ସେବନ କରିବା ନିଷେଧ କରାଯାଇଛି ।" ଶାସ୍ତ୍ର ଯେମିତି ଉଠିଲା ସନ୍ନ୍ୟାସୀ ଲଜ୍ଜିତ ଭାବରେ କହିଲେ "ହଁ ଶାସ୍ତ୍ରରେ ଏସବୁ ନିଷେଧ କରାଯାଇଛି । ମୋର ଗୁରୁଦେବ ମଧ୍ୟ ସେବନ କରୁ ନଥିଲେ । ମୋର ଗୋଟାଏ ଇମିତି ଅଭ୍ୟାସ ହୋଇଯାଇଛି । କିନ୍ତୁ ଏ ଯେଉଁ ମାଷ୍ଟ୍ରେ (ହରିବନ୍ଧୁ ବାବୁଙ୍କୁ ଲକ୍ଷ୍ୟକରି), ଯେପରି ଭାବେ କହିଲେ ତାହା ନିତାନ୍ତ ଅସୁନ୍ଦର କଥା । "କାହାକୁ କିପରି ଭାବେ କହିବାକୁ ହୁଏ, ପିଲାକୁ ଚାପୁଡ଼େ ମାରି କହିବ । କାହାକୁ ଜୋର ଦେଇ କହିବ ଆଉ କାହାକୁ ବିନୟ ଭାବେ ବୁଝାଇ କହିବ ।" ମୁଁ ନମ୍ରଭାବେ କହିଲି "ତା ହେଲେ ହରିବନ୍ଧୁ ବାବୁ ଯେପରି ଭାବେ କହିଲେ ତା କଟୁ ଏବଂ ନିତାନ୍ତ ଗର୍ହିତ । ମୁଁ ତାଙ୍କ ପକ୍ଷରୁ କ୍ଷମା ମାଗୁଛି ।" ସମସ୍ତେ ଶାନ୍ତ ହେଲେ । ହରିବନ୍ଧୁ ବାବୁ ଏସବୁ କଥା ଜାଣି ନାହାନ୍ତି । ସେ ସେହି ସ୍ଥଳରେ ଶୋଇ ପଡ଼ିଥିଲେ ।

ସନ୍ନ୍ୟାସୀ ମହାଶୟ ପ୍ରାୟ ୧୫ ଦିନ ସେଠାରେ ଅବସ୍ଥାନ କଲେ । ଆଉ ଆମ ଆଗରେ ଗଞ୍ଜେଇ ସେବନ କଲେ ନାହିଁ । ମନ୍ଦିର ପଛପଟେ ଯାଇ ସେବନ କରନ୍ତି । ଆମର ସାପ୍ତାହିକ ସଭା ହୁଏ । ଦିନେ ସଭାରେ ସେ ସଭାପତି ହୋଇଥିଲେ ।

ମାଦକଦ୍ରବ୍ୟ ସେବନ ବିଷୟ ବିଚାର ଥିଲା । ଛାତ୍ରମାନଙ୍କର ଓ ଆମ୍ଭମାନଙ୍କର ସପକ୍ଷ ବିପକ୍ଷ ଆଲୋଚନା ପରେ ସନ୍ୟାସୀ ମହାଶୟ ସଭାପତି ଭାଷଣରେ ମାଦକଦ୍ରବ୍ୟ ସେବନ ବିରୁଦ୍ଧରେ ଏକ ସୁନ୍ଦର ଭାଷଣ ଦେଲେ ଏବଂ ଜଣ ଜଣକୁ ଡାକି ମାଦକଦ୍ରବ୍ୟ ସେବନ କରିବେ ନାହିଁ ବୋଲି ଛାତ୍ରମାନଙ୍କ ଠାରୁ ଶପଥ ନେଇଥିଲେ ।

ଦିନେ ସନ୍ଧ୍ୟାବେଳେ ଆମେ ସବୁ ବୁଲିଯାଉଛୁ, ମତେ ସମ୍ବୋଧନ କରି କହିଲେ "କରଣ, କୁମ୍ଭୀର, ବ୍ୟାଘ୍ର, ନଦୀ, ସର୍ପସ୍ତୁ ପଞ୍ଚକଃ ।" ଅନ୍ୟ ଚରଣଟି ପଚାରିଲେ କହିଲେ ନାହିଁ । ସେ କହିଲେ, "ମୁଁ ଯେଉଁଦିନ ଆସିଲି ସେଦିନ ସାନ ମାଷ୍ଟ୍ର (ହରିବନ୍ଧୁ ବାବୁ)ଙ୍କୁ ଚିହ୍ନି ପକାଇଲି । କିନ୍ତୁ ଏତେଦିନ ହେଲା ମୁଁ ଲକ୍ଷ୍ୟକରି ଆସୁଛି ଆପଣଙ୍କୁ ଚିହ୍ନିପାରିଲି ନାହିଁ ।" ବୋଧହୁଏ ସେ ଯେଉଁ ଉପର ଲିଖିତ ଶ୍ଳୋକଟି କହିଥିଲେ ତା ସହିତ ଏ ଉକ୍ତିର କିଛି ସମ୍ବନ୍ଧ ଅଛି ।

ଦିନେ ଏକ ଭୋଜି ହେଲା । ହରିବନ୍ଧୁ ବାବୁ ଓ ମୁଁ ପିଣ୍ଡାରେ ଏକ କୋଣେ ଖାଇ ବସିଥାଉ । ପରଷାଳୀ ପୂଜାରୀ ପୁରୁଷୋତ୍ତମ ପାଣିଗ୍ରାହୀଙ୍କୁ ମୁଁ କୌତୁହଳରେ କହିଲି "ଆମେ ଦୁଇଜଣ ଚଣ୍ଡାଳ ଇଆଡ଼େ ବସିଛୁ, ଟିକିଏ ଦୃଷ୍ଟି ଥାଉ ।" ଏକଥା ସେ ସନ୍ୟାସୀଙ୍କୁ କହିଦେଲେ । ସନ୍ୟାସୀ ପଚାରିଲେ "ମାଷ୍ଟ୍ରେ ଆପଣ ନିଜକୁ ଚଣ୍ଡାଳ ବୋଲି କହିଲେ ? ଚଣ୍ଡ ଧାତୁର ଅର୍ଥ ଜାଣନ୍ତି ? ଆପଣ ଚଣ୍ଡାଳ ପଦର ଅଧିକାରୀ ହୋଇଛନ୍ତି ?" ମୁଁ ଲଜ୍ଜିତ ହୋଇ କୌଣସି ଉତ୍ତର ନଦେଇ ତୁନି ରହିଲି । ତାଙ୍କ ସହିତ ଅନେକ ଥର ଶାସ୍ତ୍ରାଲୋଚନା ହୁଏ । ଅନେକ ବିଷୟ ସେ ଜାଣନ୍ତି । ମୁଁ ତାଙ୍କୁ ଖୁବ୍ ସମ୍ମାନ କରେ ।

ହରିବନ୍ଧୁ ବାବୁଙ୍କ ମନ କିନ୍ତୁ ମାନେ ନାହିଁ । କହନ୍ତି, "ଦେଖ ଟେଳାଏ ଆପୁ ପକେଇ ଦେଲେ । ହେଇଟି ମନ୍ଦିର ପଛପଟେ ବସି ଗଞ୍ଜେଇ ଆଖଡ଼ା ଲଗେଇଛନ୍ତି । ଦିନଯାକ କେତେ ଯେ ଟା ପିଉଛନ୍ତି ।" ମୁଁ ତାଙ୍କୁ ବହୁତ ବୁଝାଏ । ସେତ ନିଜର ଦୁର୍ବଳତା ପ୍ରକାଶ କଲେ । ଇମିତି ଗୋଟାଏ ମନ୍ଦ ଅଭ୍ୟାସ ହୋଇଯାଇଛି ବୋଲି କହିଲେ । ତାଙ୍କୁ ଘୃଣାକରି ଲାଭ କ'ଣ ?

## ଅନାଥ ବାଳକ ଉଦ୍ଧାର

ଆମେ ସତ୍ୟନାରାୟଣ ମନ୍ଦିର ଧର୍ମଶାଳାରେ ରୋଷେଇ କରି ଖାଉଁ । ଖାଇସାରି ଖଲି ଫିଙ୍ଗି ଦେବାକ୍ଷଣି ୧୦/୧୧ ବର୍ଷ ବୟସର ଗୋଟିଏ ପିଲା ପ୍ରତିଦିନ ଆସି ଖଲିରୁ ଭାତ ଖୁଣ୍ଟି ଖୁଣ୍ଟି ଖାଏ । ପିଲାଟିର ପେଟ ଚିଡ଼ି ପରି ବାହାରି ପଡ଼ିଥାଏ । ହାତଗୋଡ଼ ସବୁ ଝଟାଡ଼ଙ୍କ ପରି । ଦେହରେ ଚକଡ ଚକଡ଼ା ମଳି । ମୁଣ୍ଡରେ ଆଲୁବାଲୁ ନୁଖୁରାବାଳ । ମୁଖରେ ଦାରିଦ୍ର୍ୟର କାଳିମା । ଛିଣ୍ଡା ଲେଙ୍କଡ଼ା ମଇଳା କନା ବିଖଣ୍ଡ

ପିନ୍ଧିଥାଏ । ସବୁଦିନେ ତାକୁ ଏ ଅବସ୍ଥାରେ ଦେଖୁଁ । ଦିନେ ଆଉ ସହ୍ୟ କରିପାରିଲୁ ନାହିଁ । ବଡ଼ ବିକଳ ଲାଗିଲା । ତାକୁ ଡ଼ାକି ତା'ର ନାଁ ଗାଁ ପଚାରିଲୁ । ତାକୁ କିଛି ଜଣାନାହିଁ । ବାପା, ମା ବୋଲି ମଧ ଜାଣିନାହିଁ । କେତେଦିନରୁ କୁଆଡୁ ବୁଲି ବୁଲି ଆସି ବେଇଗୁଣ୍ଡାରେ ଆଶ୍ରୟ ନେଇଛି । ତାକୁ ଗୋଶାଳା (ଶ୍ରୀବତ୍ସ ପଣ୍ଡାଙ୍କ ପ୍ରତିଷ୍ଠିତ ଗୋରକ୍ଷାଶ୍ରମ)କୁ ନେଇ ଭଣ୍ଡାରୀ ଡାକି ଲଣ୍ଡା କରାଇ ଦେଲୁ । କେତେ ଯେ ଉକୁଣି ମୁଣ୍ଡରୁ ଝଡୁଥାନ୍ତି— ଭଣ୍ଡାରୀ ଦେଖି ଛାନିଆ ହୋଇଗଲା । ନଦୀରେ ସାବୁନ ଲଗାଇ ଘସାମଜା କରାଇ ଗାଧୋଇ ଦେଲୁ । ଗୋଟିଏ ଚେଡ଼ି, ଗୋଟିଏ ସାର୍ଟ, ଗୋଟିଏ ଚାଦର ପିନ୍ଧିବାକୁ ଦିଆଗଲା । ସେ ଆମ ପାଖରେ ରହିଲା । ତାକୁ ଦୈବାତ୍ ଏପରି ଭାବରେ ପାଇବାରୁ ପିଲାମାନେ ଦେବଦତ୍ତ ତ୍ରିପାଠୀ ବୋଲି ନାମ ଦେଲେ । ପାଖରେ ବସାଇ ପଢ଼ାପଢ଼ି କରାଇଲେ । ଏହିପରି ଭାବେ ଆମ ପାଖରେ କିଛିଦିନ ରହିବା ପରେ ଭବିଷ୍ୟତରେ ସବୁଦିନ ପାଇଁ ତା ସକାଶେ କି ବ୍ୟବସ୍ଥା କରାଯିବ ସେ ଚିନ୍ତା ଲାଗିଲା । ଏହି ସମୟରେ ଦିନେ ଶ୍ରୀ ଜୟମଙ୍ଗଳ ରଥ ଆସିଥିଲେ । ତାଙ୍କରି ହାତରେ ତାକୁ ସମର୍ପଣ କଲୁ । ସେ ତାକୁ ନେଇ ପ୍ରଥମେ କଟକ ଅନାଥାଶ୍ରମରେ ପରେ କଲିକତା ଅନାଥାଶ୍ରମରେ ରଖାଇଲେ । ବହୁବର୍ଷପରେ ଶୁଣି ପାରିଲୁ ସେ M.A ପାଶ୍ କରି ରାମକୃଷ୍ଣ ମିଶନ'ର ସନ୍ନ୍ୟାସୀ ହେଲା ।

ଆଉ ଗୋଟିଏ ପିଲା ମଧ ଇମିତି ବୁଲୁଥାଏ । ତାକୁ ଆଣି ପାଖରେ ରଖିଲୁ । ଦୈବଯୋଗକୁ ବ୍ରାହ୍ମ ସମାଜର ଶ୍ରୀ ମହେନ୍ଦ୍ର ପଟ୍ଟନାୟକ ଆସିଥିଲେ । ସେ ସେହି ପିଲାଟିକୁ ନେଇ କଲିକତା ଅନାଥାଶ୍ରମରେ ଛାଡ଼ିଲେ । ସେ ମଧ M.A ପାଶ୍ କରି କୌଣସି କଲେଜରେ ଅଧାପକ ହେଲା । ବିଭିନ୍ନ ଅବସ୍ଥାରେ କାହାର ଯଥାଯଥ ସୁଯୋଗ ମିଳିଲେ ଏହିପରି ଉନ୍ମେଷ ହୋଇଥାଏ ।

## ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସମ୍ବନ୍ଧେ ଗୋଟିଏ କୌତୂହଳ କଥା

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଫିଲିଫଡ଼ିଫ କମିଶନ ଆଗରେ ସାକ୍ଷ୍ୟ ଦେବା ପାଇଁ ପ୍ରଚାର କାର୍ଯ୍ୟରେ ଆସି ଆମ ବିଦ୍ୟାଳୟରେ ଅବସ୍ଥାନ କରୁଥିବା କଥା ପୂର୍ବେ କୁହାଯାଇଛି । ଦିନେ ଗୋପୀନାଥ ପୃଷ୍ଟି ତାକୁ ଓ ଆମେ ଶିକ୍ଷକ ଦୁହିଁକୁ ତାଙ୍କ ଘରେ ଭୋଜନ କରିବା ପାଇଁ ନିମନ୍ତ୍ରଣ କଲେ । ଆମେ ଭୋଜନ କଲୁ, ଆମ ଅଇଁଠା ବାସନପତ୍ର ତାଙ୍କ ଘରଲୋକେ ଧୋଇଲେ । ସାରା ଗାଁଟା ଯାକ ଚହଳ ପଡ଼ିଗଲା ଯେ ପୃଷ୍ଟି ଘର ପାଣଟାକୁ ଘର ଭିତରେ ଖାଇବାକୁ ଦେଲେ ଓ ତା'ର ଅଇଁଠା ବାସନ ଧୋଇଲେ । ତାକୁ ଜାତିରୁ ବାସନ୍ଦ କରିବାକୁ ହେବ । ଗୋପୀନାଥ ଭାରି ବ୍ୟସ୍ତ ।

ସେତେବେଳେ ବିଶେଷ ଜାତିଆଣ କଟକଣା ଥାଏ । ଗାଁ ଲୋକେ ମତେ ଇଙ୍ଗିତ କରି କହନ୍ତି । ଏଇ ଶଳା ଏକା ଯେତେ ହାଡ଼ିପାଣଙ୍କୁ ଆଣି ଇମିତି ନାଟ ଲଗେଇଛି । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଲିଖିତ ''ଜୀବନ ଓ ଜୀବନୀ'' ପୋଥିରେ ସେ ଲେଖିଥିଲେ ''ଲେଖକ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଜାତିରେ ପାଣ'' । ଉପାସନା ବେଳେ ଆମେ ସେଇ ପୁସ୍ତକରୁ ଉପାସନା ପଢୁ । ସେଥିଯୋଗୁଁ ତାଙ୍କୁ ପାଣ ବୋଲି ସମସ୍ତଙ୍କର ଧାରଣା । ଦିନେ ଉପାସନା ଶେଷରେ ସେ ତାଙ୍କର ଜୀବନୀ ବିଷୟରେ କହୁ କହୁ କହିଲେ । ''ଆମେ ବଡ଼ ଗରିବ ଅବସ୍ଥାରେ ଥିଲୁ । ମୋର କିଛି କାମଧାମ ହୋଇ ନଥାଏ, କିପରି ବଞ୍ଚିବା କଥା ପଡ଼ିଥାଏ । ଦିନେ ମୋ ପିଉସୀ କହିଲେ କିରେ ପୁଅ ଏତେ ଚିନ୍ତା କାହିଁକି ? ଆମ ଜାତି ବେଉଁସା ଚୁଡ଼ା ମୁଢ଼ି ବିକି କ'ଣ ବଞ୍ଚିପାରିବା ନାହିଁ ?'' ପିଲାଏ ସେ କଥା ଧରିଲେ । ପଚାରିଲେ, ''ଚୁଡ଼ା ମୁଢ଼ି ବିକିବା କଥା କ'ଣ କହିଲେ?'' ''ଆମେ ଗୁଡ଼ିଆ ପରା ?'' ଏକଥା ପ୍ରଚାର ହେବାରୁ ଗ୍ରାମର କୁମୁଟୀମାନେ ଆଶ୍ୱସ୍ତ ହେଲେ । ଗୋପୀନାଥ ଘରକୁ ବାସନ୍ଦ କରିବା କଥା ଆଉ ଉଠିଲା ନାହିଁ । ଗୋପୀନାଥ ଘର ନିଶ୍ଚିନ୍ତ ହେଲେ ।

ଶ୍ରୀ ହରିହର ପଟ୍ଟନାୟକ ଦିନେ ଦେବାଦ୍ ଆସି ପହଞ୍ଚିଲେ । ତାଙ୍କୁ ପାଠଶାଳାର ଶିକ୍ଷକ ହେବାପାଇଁ ଅନୁରୋଧ କଲୁ । ହରିହର ବାବୁ, ଗୋଦାବରୀଶ ବାବୁ ଓ ମୁଁ କେତେଦିନ କାମକଲୁ ।

## ମୋର ବିବାହ

ନନା ସବୁବେଳେ ମୋର ବିବାହ ସମ୍ପର୍କରେ ଗୋଦାବରୀଶ ବାବୁଙ୍କୁ କହନ୍ତି । ୨୫ ବର୍ଷ ନ ହେବାଯାଏଁ ମୁଁ ବିବାହ କରିବି ନାହିଁ ବୋଲି କହିଥାଏ । ସେତେବେଳେକୁ ୨୫ ବର୍ଷ ପୁରିଲାଣି । ଏଣେ ନନାଙ୍କ ସ୍ୱାସ୍ଥ୍ୟ ଦିନକୁ ଦିନ ଖରାପ ଆଡ଼କୁ ଗତି କରୁଛି । ଦିନେ ଗୋଦାବରୀଶ ବାବୁ ଭାରି ସଂକୋଚରେ ମୋର ବିବାହ କଥା ପକାଇଲେ । ହରିହର ବାବୁଙ୍କ ବଡ଼ ଭଉଣୀଙ୍କ ସହ ବିବାହ କରିବା ପ୍ରସ୍ତାବ କଲେ । ମୁଁ ଦେଖିଲି ହରିହର ବାବୁ ତ ସ୍ୱାଧୀନତା ସଂଗ୍ରାମୀ, ସ୍ୱୀକୃତ ହେଲି । ନନା ମଧ ରାଜି ହେଲେ । ହରିହର ବାବୁ ଆମ ଘରକୁ ଯା' ଆସ କରନ୍ତି । ବୋଉ ଖୁଡ଼ୀ ପ୍ରଭୃତିଙ୍କ ସହ ଆତ୍ମୀୟତା ଅର୍ଜନ କରିଥିଲେ । ଏଣୁ ଏ ପ୍ରସ୍ତାବଟି ସମସ୍ତଙ୍କର ସ୍ୱୀକୃତି ଲାଭ କଲା । ହରିହର ବାବୁଙ୍କ ବଡ଼ ମା ପୁଅ ଭାଇ ଶ୍ରୀ ଲାଲ ମୋହନ ପଟ୍ଟନାୟକ (ବିଶିଷ୍ଟ ଓକିଲ, ସ୍ୱାଧୀନତା ପରେ ଓଡ଼ିଶା ବିଧାନ ସଭାର ବାଚସ୍ପତି) ତାଙ୍କ ପକ୍ଷରୁ ପତ୍ରଦ୍ୱାରା ବାକ୍‌ଦାନ କଲେ । ଦିଆନିଆ କଥା ଉଠିବାକୁ ନାହିଁ । ବିଧିରେ ହରିହର ବାବୁଙ୍କ ଜମିବାଡ଼ି ଘରଦ୍ୱାର କିଛି

ନଥିଲା । ଇଚ୍ଛାପୁରରେ ଗୋଟିଏ ଭଡ଼ାଘରେ ଥା'ନ୍ତି । ନନା ଜାଣିପାରିଲେ ଯେ ହରିହର ବାବୁଙ୍କ ପିତା ସ୍ୱର୍ଗତ କରୁଣାକର ପଟ୍ଟନାୟକ ଛତ୍ରପୁର ରାଜାଙ୍କ ଛାମୁକରଣ ଥିଲେ । ବାସ୍ ସେତିକିରେ ସେ ଜାତି, କୁଳଶୀଳ ସମ୍ପର୍କରେ ସନ୍ତୁଷ୍ଟ । ବିବାହ ପ୍ରସଙ୍ଗ ଠିକ୍ ଠାକ୍ ହୋଇଗଲା । ମୁଁ କହିଲି ଲୁଗାପଟା ଯାହାସବୁ ଲାଗିବ ଖଦଡ଼ ଲୁଗା ହେବ । ମୁଁ ବରବେଶ ପଡ଼ିବି ନାହିଁ କି ସେଠାକୁ ବିବାହ ହୋଇ ଯିବି ନାହିଁ । କନ୍ୟା ଅଣାଯାଇ ଗାଁରେ ବିବାହ ଉତ୍ସବ ନିରାଡ଼ମ୍ବର ଭାବେ କରାଯିବ । ପାଲିଙ୍କିରେ ବସିବି ନାହିଁ ଯାହାକି ମଣିଷ କାନ୍ଧରେ ବହି ନିଅନ୍ତି । ବାଦ୍ୟ ବାଜଣା ହେବ ନାହିଁ । ଏ ସବୁ ଶୁଣି ବୋଉର ମନ ବଡ଼ ଦୁଃଖ । ପୁଅ ବିବାହ କରିବି ନାହିଁ ବୋଲି କହୁଥିଲା ଯିମିତି ହେଉ ଚାଉଳ ମୁଠାଏ ପଡ଼ିଯାଉ ଏଇ ଭାବନା କରି ସେ ମୋର ସର୍ତ୍ତ ସବୁ ମାନିବାକୁ ବାଧ ହେଲା ।

ବିବାହ ଯୋଗ ସ୍ଥିର ହେଲା ୧୪/୪/୧୯୨୬ । ସେଦିନ ମୋର ବଡ଼ ଦଦାଙ୍କ ସାନ ଝିଅ (ପୁରୁଷୋତ୍ତମର ଭଉଣୀ) ରୋହିଣୀର, ମୋର ବଡ଼ ପିଉସୀଙ୍କ ପୁଅ ମୋର ଆବାଲ୍ୟ ସଙ୍ଗୀ ଓ ସହପାଠୀ ଶ୍ରୀ ଉଜରାମ ପଟ୍ଟନାୟକ, ମଙ୍ଗଳପୁରଙ୍କ ସହ ବିବାହ



ଭଞ୍ଜନଗରରେ ନିଜ ଧର୍ମପତ୍ନୀ ୰ ବୃନ୍ଦଲତା ଦେବୀଙ୍କ ସହିତ ବାଞ୍ଛାନିଧି ପଟ୍ଟନାୟକ
(ସାନପୁଅ ପ୍ରଭାସଚନ୍ଦ୍ରଙ୍କ ବାହାଘର ଉତ୍ସବରେ)

ସ୍ଥିର ହୋଇଥାଏ । କନ୍ୟା ମଙ୍ଗଳପୁର ଯିବ । ରାତିରେ ଘୋର ବର୍ଷା । ମେଘ ଅନ୍ଧାର । ସେପରି ଅବସ୍ଥାରେ ପାଲିଙ୍କିରେ କନ୍ୟା ବାହାରିଲା । ଏଣେ ମୋର ବିବାହ ବେଦୀ ଉପରେ ହୋଇପାରିଲା ନାହିଁ । ଘର ଭିତରେ ହେଲା ।

## କୁଳ ପୁରୋହିତଙ୍କୁ ମନା

ଏ ବିବାହରେ ଆମର କୁଳ ପୁରୋହିତଙ୍କୁ ପୌରୋହିତ୍ୟ କରିବାପାଇଁ ନନା ମନା କରିଦେଇଥିଲେ । ପୁରୋହିତ ଖଲି ଶତପଥୀଙ୍କ ସାନ ଭାଇ ଲକ୍ଷ୍ମଣ ଶତପଥୀ ମଦ ଖାଇବାରୁ ଶାସନବାସୀ ବ୍ରାହ୍ମଣମାନେ ତାଙ୍କୁ ସଂସ୍କାର ହେବାପାଇଁ କହିଲେ । ଖଲି ଶତପଥୀ ଅମାନିଆ ଲୋକ । ବ୍ରାହ୍ମଣମାନଙ୍କ କଥା ମାନିଲେ ନାହିଁ । ପୁରୀ ଯାଇ ସଂସ୍କାର ହୋଇକୁ ବୋଲି କହିଲେ । ଶାସନବାସୀ ଏକଯୁଟ ହୋଇ ତାଙ୍କୁ ଏକ ଘରିଆ କଲେ । ବ୍ରାହ୍ମଣମାନେ ନନାଙ୍କୁ ଆସି କହିଲେ, ନନା ଖଲି ଶତପଥୀଙ୍କୁ ବ୍ରାହ୍ମଣମାନେ କହିବା ପ୍ରକାରେ ସଂସ୍କାର ହେବାପାଇଁ କହିଲେ, ସେ ମାନିଲେ ନାହିଁ । ଖଲି ଶତପଥୀ ଓ ତାଙ୍କ ମଝିଆ ଭାଇ ନାଟରେ ମିଶିଥାନ୍ତି । ନନା କହିଲେ "ତମେ ମଦ ଖାଇବ, ନାଟ ନାଚିବ ଓ ନାନା ପ୍ରକାର କୁକର୍ମରେ ଲିପ୍ତ ରହିବ, ଆଉ ଆମ ଘରେ ପୌରୋହିତ୍ୟ କରିବ ? କେବେ ହୋଇପାରିବ ନାହିଁ ।" ଆମ ଗାଁ ପୁରୋହିତ କୈବଲ୍ୟ ଶତପଥୀ ବିବାହ କାର୍ଯ୍ୟ ଚଳାଇଲେ । ଖଲି ଶତପଥୀ ମନମାରି ଦୁଃଖରେ ବସିଥାନ୍ତି । ପରବର୍ତ୍ତୀ କାଳରେ ନନାଙ୍କ କଥାନୁସାରେ ବ୍ରାହ୍ମଣମାନେ କହିବା ପ୍ରକାରେ ସେ ବିଧି ଅନୁଯାୟୀ ସଂସ୍କାର ହୋଇଥିଲେ ଓ ଆମର ପୌରୋହିତ୍ୟ କରିଥିଲେ ।

ମୋର ଦୁଇଜଣ ଭିଣୋଇଁ ନିତ୍ୟାନନ୍ଦ ଦାସ ଓ ନଟବର ପଟ୍ଟନାୟକ ମତେ କୌଣସି ମତେ ପାଲିଙ୍କିରେ ବସାଇ ଦାଣ୍ଡ ବୁଲାଇବାକୁ ଧରି ବସିଥାନ୍ତି । ପାଲିଙ୍କି ସଜା ହୋଇଥାଏ । ତା ଦୁଇପଟେ ଏ ଦୁହେଁ ଛତା ଫୁଟାଇ ଠିଆ ହୋଇଥାନ୍ତି କିନ୍ତୁ ମୁଁ ଯାଉନଥାଏ । ଦେଖୁ ଦେଖୁ ବିଜୁଳି, ଘଡ଼ଘଡ଼ି ସହ ଘୋର ବର୍ଷା ହେଲା । ବାଦ୍ୟକାର ଭୋଇ ସମସ୍ତେ ଯାଇ କିଏ କେଉଁଠି ଆଶ୍ରୟ ନେଲେ । ଏ ଦୁହେଁ ଆଉ କେତେକାଳ ଠିଆ ହୋଇ ରହିବେ । ହତାଶ ହୋଇ ଘରକୁ ଫେରିଆସିଲେ । ତାଙ୍କ ଜିଦ୍ ରହିପାରିଲା ନାହିଁ କି ମୋର ପାଲିଙ୍କିରେ ବସିବା ହେଲା ନାହିଁ । କେତେ ବର୍ଷ ପରେ ଆମ ଗାଁ ସଡ଼କ ନିକଟରେ ଗୋଟିଏ ପାଲିଙ୍କି ଥିବା ଦେଖି ଭୋଇମାନଙ୍କୁ କହିଲି "ହଇରେ ମୁଁ ବିବାହ ବେଳେ ପାଲିଙ୍କିରେ ବସି ନାହିଁ । ଜଣା ଅଧିକେ ସମସ୍ତେ ବସିଥାନ୍ତି । ପାଲିଙ୍କିରେ ବସିଲେ କିମିତି ଲାଗୁଛି ଦେଖନ୍ତେ, ମତେ ଟିକିଏ ବସାଇବ କି ?" ଭୋଇମାନେ ମୋ କଥାଟି ହସରେ ଉଡ଼ାଇ ଦେଲେ । ଆଉ ଜୀବନରେ ପାଲିଙ୍କି ଚଢ଼ିବା ହେଲା ନାହିଁ ।

ବିବାହକୁ ବହୁତ ଲୋକ ନିମନ୍ତ୍ରିତ ହୋଇ ଆସିଥିଲେ । ବିଶେଷତଃ ବେଲଗୁଣ୍ଠା ଜାତୀୟ ବିଦ୍ୟାଳୟର ସମସ୍ତ ଛାତ୍ର, ଶିକ୍ଷକ ଓ ଅଭିଭାବକ ଏବଂ ଅନ୍ୟାନ୍ୟ ବହୁ ଭଦ୍ର ଲୋକ । ମୋର ବନ୍ଧୁ ଶ୍ରୀ ଗୋଦାବରୀଶ ଦାଶ ଭୋଜି ଭାତ ଇତ୍ୟାଦି ବିବାହର ସମସ୍ତ ଦାୟିତ୍ୱ ନେଇଥିଲେ । ତାଙ୍କ ସାଙ୍ଗକୁ ଆମ ଗାଁ ପ୍ରାଇମେରୀ ସ୍କୁଲର ପ୍ରଧାନ ଶିକ୍ଷକ ଆମ ପଡ଼ୋଶୀ ଲିଙ୍ଗରାଜ ନନ୍ଦ, ମଝିଆଦଦା ଜଗନ୍ନାଥ ପଟ୍ଟନାୟକ, ମୋର ବାଲ୍ୟବନ୍ଧୁ ରଘୁନାଥ ପାତ୍ର । ସାନ ଦଦା ତ ମୋର କାରାବାସ ବେଳେ ଇହଧାମ ତ୍ୟାଗ କରିଥିଲେ । ଖୁଡ଼ୀ ତାଙ୍କର ଏକମାତ୍ର ପୁତ୍ର ଗୋଦାବରୀ ପ୍ରସାଦକୁ ନେଇ ତାଙ୍କ ବାପଘର ଗୋଲାମୁଣ୍ଡାରେ ବାସ କରୁଥିଲେ । ମୋର ବିବାହ ଉତ୍ସବକୁ ଆସି ସବୁଦିନ ପାଇଁ ଆମ ଘରେ ରହିଲେ । ଶାଳକ ହରିହରବାବୁ କନ୍ୟା ଛାଡ଼ିବାକୁ ଆସିଥିଲେ । ସର୍ବ ଶୁଭରେ ବିବାହ କାର୍ଯ୍ୟ ସଂପନ୍ନ ହେଲା ।

ବିବାହର ଅଳ୍ପଦିନ ପୂର୍ବରୁ ମୁଁ କରଣ କାମ ଗ୍ରହଣ କରିଥାଏ । ୯/୧୨/୨୫ରେ ବେଲଗୁଣ୍ଠା ଫିର୍କା ରେଭିନ୍ୟୁ ଇନ୍‌ସପେକ୍ଟର ଶ୍ରୀନିବାସ ରାଓଙ୍କ ଯତ୍ନରେ ଏବଂ ଘୁମୁସର ତହସିଲଦାର ଶ୍ରୀ ରମେଶଚରଣ ରଥଙ୍କ ସୁପାରିଶରେ ଏ ନିଯୁକ୍ତି ହୋଇଥିଲା । ବେଲଗୁଣ୍ଠା ଜାତୀୟ ବିଦ୍ୟାଳୟର ଭାର ଶ୍ରୀ ହରିହର ପଟ୍ଟନାୟକ ଏବଂ ଶ୍ରୀ ଗୋଦାବରୀଶ ଦାଶଙ୍କୁ ଦେଇ ମୁଁ ଜାତୀୟ କାର୍ଯ୍ୟରୁ ବିଦାୟ ନେଇ ସରକାରୀ କାମରେ ଯୋଗଦେଲି । ତଥାପି ମୁଁ ସମୟେ ସମୟେ ଯାଇ ବିଦ୍ୟାଳୟ କାମ ଦେଖାଦେଖି କରି ଆସୁଥାଏ ।

ମୋର ବିବାହ ଦିନ ଦୈବାତ୍ ତହସିଲଦାର ଶ୍ରୀ ରମେଶଚରଣ ରଥ ଗୋବରା ରାସ୍ତାରେ ଆସିଥିଲେ । ଧର୍ମଶାଳାରେ ଅବସ୍ଥାନ କଲେ । ନନା ରାଜକୀୟ ମର୍ଯ୍ୟାଦା ପ୍ରକାରେ ତାଙ୍କ ବସାକୁ ଏକ ସଞ୍ଚା ପଠାଇଲେ । ସେତେବେଳକୁ ସେ ସେଠାରେ ନଥିଲେ । ଗୁମାସ୍ତା ଓ ପିଅନ କେହି ସଞ୍ଚା ଗ୍ରହଣ କଲେ ନାହିଁ । ବାହାର ପିଣ୍ଡାରେ ରଖା ହୋଇଥାଏ । ତହସିଲଦାର ରମେଶବାବୁ କେବେ କାହା ଠାରୁ ବସାସଞ୍ଚା ଏମନ୍ତକି ଚାହା ଗ୍ଲାସେ ସୁଦ୍ଧା ଗ୍ରହଣ କରନ୍ତି ନାହିଁ । ତାଙ୍କ ଅଜାଣତରେ କର୍ମଚାରୀମାନେ ଗ୍ରହଣ କରନ୍ତେ ବା କିପରି ? ସେ ପ୍ରାୟ ୧୧ଘଣ୍ଟା ସମୟକୁ ଫେରିଲେ । କର୍ମଚାରୀମାନେ ତାଙ୍କୁ ସଞ୍ଚାଦେଖାଇ କହିଲେ କରଣ ବିବାହ ହେଉଥିବା ଯୋଗୁଁ ତାଙ୍କ ପିତା ଏ ସଞ୍ଚା ପଠାଇଛନ୍ତି । ସେ ସଞ୍ଚା ପାଖରେ ପ୍ରାୟ ୧୦/୧୫ ମିନିଟ୍ ଠିଆ ହୋଇ ବିଚାର ମଗ୍ନ ହେଲେ । କର୍ମଚାରୀ ଓ ତାଙ୍କ ପାଖକୁ ଆସିଥିବା କରଣ, କାର୍ଯି ସମସ୍ତେ ନୀରବରେ ଠିଆ ହୋଇଥାନ୍ତି । କ'ଣ ବିଚାର କଲେ ଶେଷରେ ସଞ୍ଚା ଗ୍ରହଣ କରିବା ପାଇଁ ଅନୁମତି ଦେଲେ ।

ଆମ ଜିଲ୍ଲାରେ ସେହି ସମୟରେ ଏହିପରି ଅନେକ ସାଧୁ, ସଚ୍ଚୋଟ, ନୀତିପରାୟଣ ସରକାରୀ ଉଚ୍ଚ କର୍ମଚାରୀ ଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀ ଅଭିମନ୍ୟୁ ପଟ୍ଟନାୟକ- ଡେପୁଟି କଲେକ୍ଟର, ଶ୍ରୀ ଦୀନବନ୍ଧୁ ପାଳ- ମାଜିଷ୍ଟ୍ରେଟ, ଶ୍ରୀବତ୍ସ ପଣ୍ଡା-

ସବ୍‌ରେଜିଷ୍ଟ୍ରାର, ଶ୍ରୀ ସିଂହାଦ୍ରି ଗନ୍ତାୟତ- ଜିଲ୍ଲା ସ୍କୁଲ ଇନ୍‌ସପେକ୍ଟର, ଶ୍ରୀ ଶ୍ରୀକଣ୍ଠ ଶତପଥି- ଡ଼େପୁଟି ଇନ୍‌ସପେକ୍ଟର, ଶ୍ରୀ ନରସିଂହ ପଣ୍ଡା- ସବ୍‌ରେଜିଷ୍ଟ୍ରାର, ଶ୍ରୀ ଅନନ୍ତ ରାମ ରଥ- କଲେକ୍ଟର ପ୍ରଭୃତି କେବେ କାହାଠାରୁ ଲାଞ୍ଚ ନେବା ଦୂରେ ଥାଉ ସାମାନ୍ୟ ବସାସଞ୍ଜା ମଧ ଗ୍ରହଣ କରୁନଥିଲେ । ଏବେ ସ୍ୱାଧୀନ ଭାରତରେ ମନ୍ତ୍ରୀମାନଙ୍କ ଠାରୁ ଆରମ୍ଭ କରି ବଡ଼ ସାନ ସମସ୍ତ କର୍ମଚାରୀ ଉତ୍କୋଚ ଗ୍ରହଣ କରିବା ପାଇଁ ଟାକି ବସିଥାନ୍ତି । ମନ୍ତ୍ରୀ ପ୍ରଭୃତିଙ୍କ ଗସ୍ତ ବେଳେ ଭୋଜି ଭାତ, ବୋଦାମରା ହଜାର ହଜାର ଟଙ୍କାର ଭୋଜନ ବ୍ୟବସ୍ଥା ହୋଇଥାଏ । ଅନେକ କର୍ମଚାରୀ ଜଳଖିଆ ଓ ଚା’ ଟିକିଏ ପାଇଁ ରଙ୍କାଳିଆ ହୋଇ ଚାହିଁ ବସିଥାନ୍ତି । ଆଉ ଏମାନଙ୍କ ଦ୍ୱାରା ନ୍ୟାୟ, ସାଧୁ ସଚ୍ଚୋଟ କର୍ମସାଧନ ହୋଇପାରିବ କିପରି ? ଧନିକ ଓ ଟାଉଟର ଶ୍ରେଣୀର ଲୋକ ଏପରି ସୁଯୋଗରେ ନାନା ପ୍ରକାର ଅନାଚାର କରି ଚାଲିଛନ୍ତି ।

୧୯୨୫ରେ ମୁଁ ଯେତେବେଳେ ଜାତୀୟ ବିଦ୍ୟାଳୟ କାର୍ଯ୍ୟରୁ ଅବ୍ୟାହତି ନେଇ ପିତାଙ୍କ ଅନୁରୋଧ କ୍ରମେ କରଣ କାମ ଗ୍ରହଣ କଲି, ସେତେବେଳେ ମୋର ଜୀବନର ଆଦର୍ଶ ଓ ଗୁରୁ ଶ୍ରୀ ଶ୍ରୀବତ୍ସ ପଣ୍ଡାଙ୍କ ସହିତ ଦେଖା କରିବାକୁ ଗଲି । ସେତେବେଳେ ସେ ଗୋରକ୍ଷାଶ୍ରମରେ ଅବସ୍ଥାନ କରୁଥିଲେ । ମୁଁ ଯେତେବେଳେ ନମସ୍କାର କଲି, ସେ କହିଲେ ‘‘ବାଞ୍ଛାନିଧି ! ଆମ ଭିତରୁ ଜଣେ ମରିଗଲେ ।’’

ମୁଁ କହିଲି, ‘‘କିଏ ?’’

ସେ କହିଲେ, ‘‘ତମେ ।’’

ମୁଁ କହିଲି, ‘‘ମୁଁ ତ ହେଇଟି ଆପଣଙ୍କ ଆଗରେ ଠିଆ ହୋଇଛି । ମରିଗଲି କିମିତି ?’’

ସେ କହିଲେ, ‘‘ନା, ନା, ତମେ ଆମ ସାଙ୍ଗରେ ଜଣେ ହୋଇ ଦେଶ କାମ କରୁଥିଲ । ଏବେ ସରକାରୀ କାମ ଗ୍ରହଣ କଲ । ଆମ ଭିତରୁ ତମେ ଜଣେ ମରିଗଲ ନାହିଁ ? ଆଉ କ’ଣ ଦେଶକାମ କରିପାରିବ ? ଅସମ୍ଭବ ।’’

ଅହୋ ! ତାଙ୍କର କି ଦେଶପ୍ରେମ !!

କିନ୍ତୁ ମୁଁ କରଣ କାମ କରି ସୁଦ୍ଧା ଦେଶକାମ ପୂର୍ବପରି ବରାବର କରିଚାଲିଲି । ୧୯୩୦ରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ଜେଲ୍ ଗଲି । କରଣ କାମରୁ ଡିସ୍‌ମିସ୍ ହେଲି । ୧୯୩୧ରେ ଗାନ୍ଧୀ ଇର୍‌ୱିନ୍ ଚୁକ୍ତି ପ୍ରକାରେ ଜେଲ୍‌ରୁ ମୁକ୍ତହୋଇ ପୁଣି ଦେଶ କାମ ଦ୍ୱିଗୁଣ ଉତ୍ସାହରେ କରିବାକୁ ଲାଗିଲି । ଶ୍ରୀବତ୍ସ ପଣ୍ଡାଙ୍କ ଆଶଙ୍କା ଦୂର ହେଲା । କଂଗ୍ରେସ ଆନ୍ଦୋଳନ ସହିତ ମୁଁ ହରିଜନ ସେବକ ସଂଘରେ ଯୋଗଦେଇ ହରିଜନ ସେବା, ବିଧବା ବିବାହ ଇତ୍ୟାଦି ସମାଜ ସଂସ୍କାର କାର୍ଯ୍ୟ, ସମବାୟ ଆନ୍ଦୋଳନରେ ଯୋଗଦେଇ ଗ୍ରାମେ ଗ୍ରାମେ ସମବାୟ ସମିତି ସ୍ଥାପନ, ଖଜୁରିଗୁଡ଼ ଉତ୍ପାଦନ ଆଦି ଗ୍ରାମ୍ୟ ଶିଳ୍ପ ସ୍ଥାପନରେ ଆତ୍ମ

ନିୟୋଗ କରିଥିଲି । ଅନ୍ୟାନ୍ୟ ଅନେକ କଂଗ୍ରେସ କର୍ମୀ ଅସହଯୋଗ ଓ ଆଇନ ଅମାନ୍ୟ ଇତ୍ୟାଦି ଆନ୍ଦୋଳନ ପରେ ନିଜକୁ କେବଳ ଗୃହ ଜଞ୍ଜାଳରେ ଲିପ୍ତ ରଖିଥିଲେ । ମୁଁ କିନ୍ତୁ ଗୃହଜଞ୍ଜାଳ ଭିତରେ ବୁଡ଼ି ରହି ପାରିଲି ନାହିଁ । ବରାବର ଦେଶକାମରେ ଲିପ୍ତ ରହିଲି । ଘୋର ଆର୍ଥିକ ଅଭାବ ଅନାଟନ ମଧ୍ୟରେ ପୈତୃକ ଭୂସଂପତ୍ତି, ଏମନ୍ତକି ଜନ୍ମମାଟି ବାସଗୃହ ପର୍ଯ୍ୟନ୍ତ ବିକି ଭାଙ୍ଗି ଚଳିବାକୁ ଲାଗିଲି । ଏ ସବୁ ଦେଖିବା ପାଇଁ ଆଉ ଶ୍ରୀବନ୍ଧ ପଣ୍ଡା ନଥିଲେ । ତାଙ୍କର ପ୍ରତିଷ୍ଠିତ ଗୋରକ୍ଷାଶ୍ରମର ଉନ୍ନତି ବିଧାନ ପାଇଁ ବର୍ଷ ବର୍ଷ ସେହିଠାରେ ପଡ଼ିରହିଲି । ସେଠାରେ କନ୍ୟା ଗୁରୁକୁଳ ସ୍ଥାପନ ପାଇଁ ଉଦ୍ୟମ କରିଥିଲି । ଶ୍ରୀବନ୍ଧ ପଣ୍ଡାଙ୍କ କିପରି ଗଭୀର ଦେଶପ୍ରେମ ଥିଲା, ଏକଥା ମୁଁ କରଣକାମ ଗ୍ରହଣ କଲାବେଳେ ସେ ଯେଉଁ ମନ୍ତବ୍ୟ କରିଥିଲେ, ସେଥିରୁ ସ୍ପଷ୍ଟ ହୋଇଥିଲା ।

## ସର୍ଭେ ଟ୍ରେନିଂ

କରଣ କାମରେ ଭୂମିଜଳ ଓ ଭୂମିର ନକ୍ସା ତିଆରି (Survey) ଏକ ଅପରିହାର୍ଯ୍ୟ ପ୍ରଶିକ୍ଷଣ । ବ୍ରହ୍ମପୁରରେ ଏହି ପ୍ରଶିକ୍ଷଣ ଗ୍ରହଣ କରିବାକୁ ଗଲି । Land record ତହସିଲଦାର ଶ୍ରୀ କାଡ଼ିଆଲୁ ପୁରୁଷୋତ୍ତମଂ ପ୍ରଥମ ଦିନ ଆସି ସମସ୍ତ ପ୍ରାର୍ଥୀଙ୍କ ଅଙ୍କ ଜ୍ଞାନ ପରୀକ୍ଷା କଲେ । ସେ ମୋର ବଡ଼ ଦଦାଙ୍କ ରସଲକୋଣ୍ଡାରେ ସହପାଠୀ ଥିଲେ । ମୋର ପରିଚୟ ନେଲେ । ମୁଁ ମାଟ୍ରିକୁଲେସନ୍ ପାସ୍ କରିଥିବା ଜାଣି ସୁଦ୍ଧା ଅନ୍ୟମାନଙ୍କ ସହ ମତେ ମଧ ହରଣ, ଗୁଣାଣ, ମିଶାଣ ଫେଡ଼ାଣ ପରୀକ୍ଷା କଲେ । ମତେ ଲାଜ ଓ ରାଗ ଲାଗିଲା । ସେ ତା ଅନୁମାନ କରି "ହଉ ଅଧିକ ପଢ଼ିଥିଲେ ମଧ ଏ ସାମାନ୍ୟ ବିଷୟ ପରୀକ୍ଷା ଦେବାରେ ଦୋଷ କ'ଣ ?" ବୋଲି ବୁଝାଇଲେ । ଜଣେ ପ୍ରାର୍ଥୀଙ୍କ ଗୁଣାଣ ଭୁଲ୍ ହେଲା ବୋଲି କହି ତାକୁ ଫେଲ୍ କରିଦେଲେ । ମୁଁ ଦେଖିଲି ତାଙ୍କର ଭୁଲ୍ ହୋଇନାହିଁ । ସେ ପ୍ରାର୍ଥୀକୁ କହିଲି "ଯାଅ ମୋର ଠିକ୍ ଅଛି ବୋଲି କହ ।" ସେ ଏଡ଼େ ବଡ଼ ଅଫିସର ଲ୍ୟାଣ୍ଡ ରେକର୍ଡ଼ ତହସିଲଦାରଙ୍କ ଆଗରେ କହିବାପାଇଁ ସାହସ କଲେ ନାହିଁ । ମୁଁ ତାଙ୍କ ଖାତା ନେଇ ଠିକ୍ ଅଛି ବୋଲି କହିଲି । ସେ କହିଲେ ଫଳ ଠିକ୍ ଅଛି ସତ ମାତ୍ର ଅନ୍ୟଠାରୁ କପି କରି ଦେଇଛି । ମୁଁ ତା'ର କାରଣ ପଚାରିବାରୁ ସେ କହିଲେ, "ତିନିଷ୍ଟେପ୍‌ରେ ଗୁଣନ ହେବା କଥା ସେ ଦୁଇ ଷ୍ଟେପରେ କରି ଦେଇଛି । ତିନି ସଂଖ୍ୟା ବିଶିଷ୍ଟ ଏକ ସଂଖ୍ୟା ଦ୍ୱାରା ଗୁଣନ କରିବାକୁ ଦିଆଯାଇଥିଲା । ସମସ୍ତେ ଗୋଟିଏ ଗୋଟିଏ ଅଙ୍କରେ ଗୁଣି ତିନିଷ୍ଟେପ୍ କରିଛନ୍ତି, ଏ ଜଣକ ଦୁଇ ଷ୍ଟେପ୍‌ରେ ଗୁଣନ କରିଥିବା ଯୋଗୁଁ ଏହା ଧାରା (Method) ନୁହେଁ ।" ମୁଁ ଆଗରୁ ରାଗିଥିଲି । ମୁଁ କହିଲି, "Perhaps you to do not know different methods of

multiplication ? One can multiply even in one step if he knows the multiplication table of the whole number of the multiplication.'' ମୋର ଉତ୍ତର ପଣିଆରେ ସେ ଟିକିଏ ଲଜ୍ଜିତ ହେଲେ, ଏବଂ ସେ ପ୍ରାର୍ଥୀଙ୍କୁ ମନୋନୀତ କଲେ ।

କେତେଦିନ ପରେ field workକୁ ଗଲୁ । ଜଣେ ରେଭିନ୍ୟୁ ଇନସ୍‌ପେକ୍ଟର ଆମର ଶିକ୍ଷକ । ସେ ଭୂମି ଉପରେ ଦୁଇଟି ନିର୍ଦ୍ଦିଷ୍ଟ ବିନ୍ଦୁରୁ ଅନ୍ୟ ଏକ ଅଜଣା ବିନ୍ଦୁରେ ସମକୋଣ କରିବା ଶିଖାଇଲେ । ସେ ମାପଚୁପ କରି କହିଲେ ''ହେଲା, ଦେଖ ।'' ମୁଁ ହୋଇନାହିଁ ବୋଲି କହିଲି । ନିର୍ଦ୍ଦିଷ୍ଟ ବିନ୍ଦୁ ଦ୍ୱୟରୁ ଗୋଟିକରେ ସମକୋଣ ହୋଇଛି । ଭୁଲ୍ ଜାଣିପାରି ସେ ବହୁ ସମୟ ଲାଗି ନିରୁପଣ କଲେ । କିନ୍ତୁ ତାହା ଅନ୍ୟ ନିର୍ଦ୍ଦିଷ୍ଟ ବିନ୍ଦୁରେ ହୋଇଥିବା ମୁଁ ଦର୍ଶାଇଲି । ବାପୁଡ଼ା କ'ଣ କରିବେ ବହୁ କଷ୍ଟରେ ଦିନ ୧୧ଟା ବେଳେ ଠିକ୍ କଲେ । ସେ ଦିନଠାରୁ ମତେ କିଛି କହନ୍ତି ନାହିଁ । ମୁଁ ଡେରିରେ ଆସିଲେ କିମ୍ବା କେଉଁଦିନ ଅନୁପସ୍ଥିତ ହେଲେ ସୁଦ୍ଧା ଉପସ୍ଥିତ ବୋଲି ଲେଖନ୍ତି । ଟ୍ରେନିଂର ସାର୍ଟିଫିକେଟରେ ପାସ୍ ଫେଲ୍ କିଛି ଲେଖାଯାଏ ନାହିଁ । କେବଳ ୪୫ ଦିନ ଉପସ୍ଥିତ ଥିବା କଥା ଲେଖାଯାଏ । ଟ୍ରେନିଂ ସମୟଟା ବର୍ଷାଦିନ । ପାଣି କାଦୁଅରେ ଶିକୁଳି ଟାଣିବାକୁ ପଡ଼େ । ଟ୍ରେନିଂରୁ ଫେରି କରଣ କାମରେ ଯୋଗଦେଲି । କରଣ କାମ ମୁଁ କିଛି କରେ ନାହିଁ କି ଶିଖିବାପାଇଁ ଚେଷ୍ଟା ମଧ କରେ ନାହିଁ । ଦଦା ଲେଖା ଲେଖି, ବିଲବାଡ଼ିର ମାପ ଓ ନକ୍ସା ଇତ୍ୟାଦି ସବୁ କାମ କରନ୍ତି, ମୁଁ ଖାଲି ସ୍ୱାକ୍ଷରଟିଏ କରିଦିଏ ।

## ଜମାବନ୍ଦୀ

କରଣ କାର୍ଯୀମାନଙ୍କର ବାର୍ଷିକ ଲେଖା, ଖଜଣା ଆଦାୟ ଇତ୍ୟାଦି ପ୍ରତିବର୍ଷ ଡେପୁଟି କଲେକ୍ଟର କିମ୍ବା କଲେକ୍ଟରଙ୍କ ଦ୍ୱାରା ପରିଦର୍ଶିତ ହୁଏ । ତାହାକୁ ଜମାବନ୍ଦୀ କହନ୍ତି । ଏହିବର୍ଷ ଜମାବନ୍ଦୀ ଅଫିସର ଥିଲେ ଜିଲ୍ଲା କଲେକ୍ଟର, ଜଣେ ସାହେବ । I.C.S ଅଫିସର । ମୁଁ ଆଇନ ଅମାନ୍ୟ କରି ଜେଲ ଯାଇଥିବା ବିଷୟ ତହସିଲଦାର ରମେଶ ଚରଣ ରଥ ତାଙ୍କୁ ସ୍ମରଣ କରାଇ ଦେଲେ ଏବଂ ତାଙ୍କରି ସୁପାରିଶରେ ଏବେ କରଣ କାମରେ ନିଯୁକ୍ତ ହୋଇଛନ୍ତି ବୋଲି ବୁଝାଇଲେ । ସେ ଆଉ ଜମାବନ୍ଦୀ କରିବେ କ'ଣ ? ମୁଁ କେଉଁ ଜେଲରେ ଥିଲି, ଜେଲରେ କି କାମ କରୁଥିଲି, କିମିତି କାଳ କଟାଉଥିଲି, କ'ଣ ଖାଉଥିଲି, ଅନ୍ୟାନ୍ୟ କିଏ ସବୁ ସାଙ୍ଗରେ ଥିଲେ ଇତ୍ୟାଦି ପଚାରି ବସିଲେ । ଅସ୍ପୃଶ୍ୟ ଜାତିର ଲୋକଙ୍କ ପାଇଁ ମୁଁ କ'ଣ କରୁଛି, ସେ କଥା ପଚାରିଲେ ଓ ସେମାନଙ୍କ ପାଇଁ ବହୁତ କିଛି କାମ କରିବାକୁ ହେବ ବୋଲି ପରାମର୍ଶ ଦେଲେ ।

ଅସ୍ପୃଶ୍ୟମାନଙ୍କ ପ୍ରତି ତାଙ୍କର ବିଶେଷ ସହାନୁଭୂତି ଥିବା ଜଣାଗଲା । ଏତିକିରେ ଆମ ଜମାବନ୍ଦୀ ଶେଷ । ହିସାବ କିତାବରେ ଆଖିବୁଜି ସ୍ୱାକ୍ଷର କରିଦେଲେ ।

## କରଣ କାମରେ ଥାଇ କଂଗ୍ରେସ ଓ ଅନ୍ୟାନ୍ୟ ଦେଶସେବା

ମୁଁ କରଣ କାମ କ'ଣ ବା କରିବି ? ଯେତେ ସବୁ କଂଗ୍ରେସ ବାଲା ସବୁ ଆମରି ଦ୍ୱାରେ । ଅନେକ ବହୁଦିନ ଯାଏଁ ଘରେ ରହନ୍ତି । ସେମାନଙ୍କ କାମରେ ସହଯୋଗ କରେ । ଥରେ ନିରଞ୍ଜନବାବୁ ବାଲେଶ୍ୱରର ଗୋକୁଳାନନ୍ଦ ମହାନ୍ତି, ଏବଂ ଗୁଜରାଟରୁ ଆସିଥିବା ଦୁଇଜଣ କଂଗ୍ରେସ କର୍ମୀଙ୍କୁ ଧରି ଦିନ ପ୍ରାୟ ୧୧ଟା ବେଳେ ଆସି ପହଞ୍ଚିଲେ । ଓଡ଼ିଶାର ଦାରିଦ୍ର୍ୟ ଅନୁସନ୍ଧାନ କରିବାପାଇଁ ମହାତ୍ମାଗାନ୍ଧୀ ସେ ଦୁଇଜଣ ଗୁଜୁରାଟ କର୍ମୀଙ୍କୁ ପଠାଇଥିଲେ । ମୁଁ ସେତେବେଳକୁ ଖାଇ ପିଇ ଘର ଭିତରେ ଥିଲି । ସେମାନେ ଆସି ଆମ ମେଲାଘରେ ଆସନ ମାନ ପକାଇ ମତେ ଡ଼କାଇଲେ । ନିରଞ୍ଜନ ବାବୁ ସେମାନଙ୍କ ଆସିବା କାରଣ ଓ ସେମାନଙ୍କ ପରିଚୟ ଦେବା ପରେ ନିଜର ଘଡ଼ି ଦେଖି କହିଲେ "ଏବେ ୧୧ଟା ହେଲା । ଘଣ୍ଟାକ ମଧ୍ୟରେ ଖିଆପିଆ ହେବ । ଏ ବାବୁମାନେ ଚିନି ଖା'ନ୍ତି ନାହିଁ, ରାଗ ଖାଆନ୍ତି ନାହିଁ ।" ଦଦାଘରମାନଙ୍କୁ ମିଶାଇ ଆମେ ଚାରିଘର । ସମସ୍ତଙ୍କ ଚୁଲି ଲଗାହେଲା । କା ଘରେ ଭାତ, କା ଘରେ ଡାଲି, କା ଘରେ ତରକାରୀ କରିବାକୁ ହେବ ବରାଦ ଦେଲି । ଭାଦ୍ରବ ମାସ ପନିପରିବା ମିଳିବାକୁ ନାହିଁ । ଘର ଘର ବୁଲିଲି ପରିବା ସଂଗ୍ରହ କରିବାପାଇଁ । ପାଢ଼ୀଆଣି ବୁଢ଼ୀ ଜହ୍ନି କାଟୁଥିବା ଦେଖିଲି । ତାକୁ ନାନା ପ୍ରକାର ବୁଝାଇ ଜହ୍ନିତକ ଆଣିଲି । ବୁଢ଼ୀ ଖାଲି ଲୁଣ ମରିଚ ଘେନି ଭାତ ଖାଇଥିବ । ଆଉ ଏଣୁ ତେଣୁ କିଛି ହେଇ ତରକାରୀ ହୋଇଗଲା । ଠିକ୍ ବାରଟା ବେଳେ ଭୋଜନ ହେଲା । ସାମାନ୍ୟ ବିଶ୍ରାମ ପରେ ଗାଁରେ ବୁଢ଼ା ବୁଢ଼ା କେତେ ଜଣଙ୍କୁ ଡ଼କାଗଲା । ସେମାନଙ୍କ ଠାରୁ କ'ଣ ସବୁ ବୁଝି ଟିପିକରି ନେଲେ । ତା' ପରେ ଛତାମାନ ଧରି ଦୁବଲଣ୍ଡା ଗାଁକୁ ଗଲୁ । ସେଠାରେ ଅନୁସନ୍ଧାନ ଶେଷକରି ରାତିକି ଗାଁକୁ ଫେରିଲୁ । ସକାଳେ ଜଳପାନ ପରେ ବେଲଗୁଣ୍ଠା ଅଭିମୁଖେ ଯାତ୍ରା ହେଲା । ମାଧବରିଡ଼ା ଠାରେ ତିନି ନଦୀ ସଙ୍ଗମ ସ୍ଥଳରେ ପାଣି-କେଉଁଠାରେ ଅଣ୍ଟେ କେଉଁଠାରେ ବୁକେ, ଗୁଜୁରାଟୀ ବନ୍ଧୁଦ୍ୱୟ ସାଙ୍ଗେ ସାଙ୍ଗେ ଲୁଗା ବଦଳାଇ ଲୁଗାତକ ବୁଜୁଳା ବାନ୍ଧି କାନ୍ଧରେ ପକାଇ ନଈପାର ହେବାକୁ ତିଆର । ନିରଞ୍ଜନବାବୁ ଟୱାଲ ବଦଳାଇ ପିନ୍ଧିବା ଲୁଗା ଓ ସାର୍ଟ କାନ୍ଧ ଉପରେ ଲମ୍ୱାଇ ରଖିଲେ, ବୁଜୁଳା ବାନ୍ଧିଲେ ଭାଙ୍ଗ ଭାଙ୍ଗିଯିବ । ନଈପାର ବେଳେ ମଧ୍ୟ ଫେସନ ଛାଡ଼ିବାକୁ ନାହିଁ । ଲୁଗା ଓ ସାର୍ଟ ଠାଏଁ ଠାଏଁ ଓଦା ହୋଇଗଲା । ଗୋକୁଳାନନ୍ଦ ବାବୁ ବାଲେଶ୍ୱରିଆ ଧୋଇଯା ଅଞ୍ଚଳ ଲୋକ । କେତେ ନଈବଢ଼ିର ଅନୁଭୂତି ତାଙ୍କର । ମୁଁ ତ ସେ ନଈରେ କେତେଥର

ପାର ହୋଇ ଯିବା ଆସିବା କରିଛି । ବେଇଗୁଣ୍ଡା ଗଲୁ । ସେଠାରୁ ସେମାନେ ଅନ୍ୟଆଡ଼େ ଗଲେ, ମୁଁ ଗାଁକୁ ଫେରିଲି । ଏହିପରି କେତେ ଖଦୀ କର୍ମୀ, ସଂଗଠନ କର୍ମୀ ଆସନ୍ତି । ସମସ୍ତଙ୍କୁ ଯାହା ଯେମିତି ସାହାଯ୍ୟ କରିବା କଥା କରେ । ମୁଁ ସରକାରୀ କାମରେ ନିଯୁକ୍ତ ଥିଲେ ମଧ ଏ ସବୁ କାମ କରିବାରେ ପଛଘୁଞ୍ଚା ଦେଇ ନ ଥିଲି । ସେମାନେ ମଧ ମତେ ପୂର୍ବଭଳି ଜଣେ କଂଗ୍ରେସ କର୍ମୀ ବୋଲି ମଣନ୍ତି ।

## ସମବାୟ ଆନ୍ଦୋଳନ

ଅସହଯୋଗରୁ ସହଯୋଗକୁ ଆସିଲି । ସକ୍ରିୟ ଆନ୍ଦୋଳନ ବନ୍ଦ ହେଲା । କରଣ କାମ ସାଙ୍ଗକୁ ସମବାୟରେ ଯୋଗ ଦେଲି । ଗୋବରା ଋଣ ସମବାୟ ସମିତିର ସଂପାଦକ ହେଲି । ବୁଣାଳୀ ସମବାୟ ସମିତି ଗଠନ କରି, ସେଥିର ମଧ ସଂପାଦକ ହେଲି । ରସଲକୋଣ୍ଡା ସମବାୟ ୟୁନିଅନ୍‌ର ସଭ୍ୟ ହେଲି । ଗ୍ରାମେ ଗ୍ରାମେ ବୁଲି ସମବାୟ ସମିତି ଗଠନ କରାଇଲି । ଥରେ ସମବାୟ ସମିତି ଇନ୍‌ସପେକ୍ଟର ଶ୍ରୀ ପ୍ରସନ୍ନ କୁମାର ପାଣିଗ୍ରାହୀଙ୍କ ସାଙ୍ଗରେ ନୂଆପଡ଼ା ଗ୍ରାମରେ ସମିତି ଗଠନ ପାଇଁ ଯାଇଥିଲି । ସମିତି ଗଠନ ହେଲା । ସଭାପତି, ସଂପାଦକ ବଛା ହେଲେ । ସମସ୍ତ କାଗଜପତ୍ର ଠିକ୍ ଠାକ୍ କରି ସେମାନଙ୍କ ସ୍ୱାକ୍ଷର କରାଇଲା ବେଳକୁ ଦେଖାଗଲା ସଭାପତି ଦାସ ନାୟକଙ୍କୁ ସ୍ୱାକ୍ଷର କରିବା ଜଣାନାହିଁ । ସେ ନିରକ୍ଷର । ପ୍ରସନ୍ନ ବାବୁ ହଡ଼ ବଡ଼େଇ ଗଲେ । ଏତେ କାଗଜପତ୍ର ଲେଖାଗଲା । ସବୁ ରଦ୍ଦ କରି ପୁଣି ଲେଖିବାକୁ ହେବ । ମୁଁ କହିଲି, "ଆଚ୍ଛା ପଟାଖଡ଼ି ଆଣ ।" ପଟାଖଡ଼ି ଆସିଲା । ଦାସ ନାଇକଙ୍କୁ ସ୍ୱାକ୍ଷର ଶିଖେଇ ବସିଲି । ଦାସ ନାଇକ, ଦାସ ନାଇକ ଲେଖାଇଲି, ଘଣ୍ଟେ ଦିଘଣ୍ଟେ ଘୋଷି ସେ ପଞ୍ଚାକ୍ଷର ମନ୍ତ୍ର ଶିକ୍ଷା କଲେ । ସମିତିର ଏତେ ଗୁଡ଼ାଏ କାଗଜରେ ସ୍ୱାକ୍ଷର କରୁ କରୁ ଆହୁରି ଅଭ୍ୟାସ ହୋଇଗଲା । ସେ ଏହି ପାଞ୍ଚଟି ଅକ୍ଷର ଛଡ଼ା ଆଉ କିଛି ଜାଣନ୍ତି ନାହିଁ । ଆଖ ପାଖ ଗାଁ ମାନଙ୍କରେ ଏହିପରି ଆଉ କେତୋଟି ସମିତି ଗଠନ ହେଲା ।

## ନନାଙ୍କ ପରଲୋକ ପ୍ରାପ୍ତି

୧୯୨୬ରେ (ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ) ନନାଙ୍କର ପରଲୋକ ପ୍ରାପ୍ତି ହେଲା । ଅନେକ ଦିନ ଧରି ରୁଗ୍‌ଣ ଥିଲେ । ସେତେବେଳେ ରସଲକୋଣ୍ଡା ଆସିକା ବ୍ୟତୀତ ଆଉ କେଉଁଠି ଡାକ୍ତରଖାନା ନଥାଏ । ନାଟଙ୍ଗାର ଶ୍ରୀ ବ୍ରଜ ଗନ୍ତାୟତ ଆମ ଘରର ବୈଦ୍ୟ । ଗାଲେରିରୁ ଆଉ ଜଣେ କବିରାଜଙ୍କୁ ଡ଼କାଗଲା । ଉଭୟେ ନାମଜାଦା ଚିକିତ୍ସକ । ଚିକିତ୍ସା

ଚାଲିଥାଏ । ଦିନେ ସନ୍ଧ୍ୟାରେ ବାସୁଦେବପୁରର ବିଖ୍ୟାତ ଜ୍ୟୋତିର୍ବିଦ, ନନାଙ୍କ ପରମବନ୍ଧୁ ଶ୍ରୀ ମଙ୍ଗକୁ ଶତପଥି ଦେଖିବାକୁ ଆସିଲେ । ଜାତକ ଦେଖି କହିଲେ ଆଜି ରାତି ଆଠଟା ଯାଏ ସାମାନ୍ୟ କିଛି ଦୋଷ ଅଛି । କିଛି ଭୟ ନାହିଁ । ଯାଙ୍କର ତୀର୍ଥଯାତ୍ରା ଯୋଗ କିଛି ଅଛି ଇତ୍ୟାଦି । ତାଙ୍କୁ ବିଦାୟ ଦେବାପାଇଁ ମୁଁ ତାଙ୍କ ସାଙ୍ଗରେ ଆମ ଗାଁ ଦେଉଳ ଯାଏ ଆସିଲି । ସେ ମତେ ଏକାକୀ ଦେଖି କହିଲେ "ବାପା, ଘରେ ସମସ୍ତେ ଅଧୈର୍ଯ୍ୟ ହେବେ ବୋଲି କହିଲି ନାହିଁ । ମୋର ବିଶ୍ୱାସ ତୁ ଅଧୀର ହେବୁ ନାହିଁ । ଆଜି ରାତି ଆଠଟାରେ ନନା ଚାଲିଯିବେ । ଯାହା ଦାନ ପୁଣ୍ୟ କରିବା କଥା କରିବ ।"

ଦେଉଳ ପାଖରେ କୁମ୍ଭାର ସାହି । ସଙ୍ଗେ ସଙ୍ଗେ ହାଣ୍ଡିଆ ଇତ୍ୟାଦି ଧରି ଚାଲିଲି । ଅନ୍ନ ଦାନାଦିର ବ୍ୟବସ୍ଥା ହେଲା । ଘରେ ସମସ୍ତେ କହିଲେ ଜ୍ୟୋତିଷ କେତେ ଭରସା ଦେଇ କହିଲେ ଅନ୍ନଦାନ କାହିଁକି କରାଯାଉଛି । ମୁଁ କହିଲି ସେ କହିଲେ "ଅନ୍ନଦାନ ଇହ ପର ଉଭୟ ଲୋକରେ ମଙ୍ଗଳ ପ୍ରଦ ।" ବୋଉ ନନାଙ୍କ ଶେଯ ପାଖରେ ବରାବର ବସିଥାଏ । ଆମ ସମସ୍ତଙ୍କୁ ଗଣ୍ଡେ ଗଣ୍ଡେ ଖାଇ ପକାଇବାକୁ କହିଲା । ମୁଁ ଯାଇ ଦି ଗୁଣ୍ଡା ମାତ୍ର ଖାଇଛି ବୋଉର କାନ୍ଦ ଶୁଭିଲା । ହଠାତ୍ ଉଠି ଧାଇଁ ଆସିଲି । ସର୍ବ ଶେଷ । ସମସ୍ତେ ରୁଣ୍ଡ ହୋଇ କାନ୍ଦୁଛନ୍ତି । ମୁଁ ଯାଇ ଶବ ସଂସ୍କାର ଯୋଗାଡ଼ରେ ଲାଗିଲି । ସଂକୀର୍ତ୍ତନ ଦଳ ଆସିଲେ । ବହୁ ଲୋକ ଶ୍ମଶାନ ଯାଏ ସଂକୀର୍ତ୍ତନ ଦଳ ସହିତ ଯାଉଥାନ୍ତି, ହରିବୋଲ ଧ୍ୱନିରେ ଚତୁର୍ଦ୍ଦିଗ ଧ୍ୱନିତ ହେଉଥାଏ । ସେଦିନ ଚନ୍ଦ୍ରଶେଖର ସ୍ୱାମୀଙ୍କ ବିବାହ ତିଥି । ବାସୁଦେବ ପୁର ଶ୍ରୀ ଚନ୍ଦ୍ରଶେଖର ସ୍ୱାମୀ ବିଜେ ହେବା ସମୟରେ ଶଙ୍ଖ, ମୃଦଙ୍ଗ, ଘଣ୍ଟା, କାହାଳୀ ଧ୍ୱନି ମଧ୍ୟରେ ଶବରେ ଅଗ୍ନି ସଂଚାର କରାଗଲା । ମୁଁ ମୁଖାଗ୍ନି ଦେଇ ଘରକୁ ଫେରିଲି । ଚିତାନଳ ଧୂ ଧୂ ହୋଇ ଜଳି ଉଠିଲା, କ୍ଷଣକ ମଧ୍ୟରେ ଭସ୍ମସାତ୍ । ତାପରେ ଦ୍ୱାଦଶାହ କର୍ମ ଚାଲିଲା । ବନ୍ଧୁ, ବାନ୍ଧବ, ସ୍ନେହୀ, ସଙ୍ଗାତ, ମୈତ୍ର, ବ୍ରାହ୍ମଣ ଓ ଅନ୍ୟାନ୍ୟ ଅନେକ ନିମନ୍ତ୍ରିତ ହୋଇ ଆସିଲେ । ଭୋଜି ଭାତ ଇତ୍ୟାଦି ହେଲା । ବୋଉକୁ ବିଧବା ଅବସ୍ଥାରେ ଦେଖି ଆଖିରୁ ଲୁହ ଗଡ଼ିଗଲା ।

## ମୋ ନନା

ନନା (ଲକ୍ଷ୍ମୀନାରାୟଣ ପଟ୍ଟନାୟକ) ଥିଲେ ଜଣେ ତେଜସ୍ୱୀ ଓ ନିର୍ଭୀକ ପୁରୁଷ । ରୂପମଧ ବଡ଼ ସୁନ୍ଦର, ଦୀର୍ଘକାୟ, ଗୋରା ତକ ତକ । ସୁଲଳିତ ଓ ସୁଗଠିତ ବପୁ । ସାମାନ୍ୟ କରଣ କାମ କରି ସୁଦ୍ଧା ଉପରିସ୍ଥ କର୍ମଚାରୀ ମାନଙ୍କୁ ଖାତିର କରୁ ନଥିଲେ । ସେତେବେଳର ତେଲଙ୍ଗା ଉଚ୍ଚପଦସ୍ଥ କର୍ମଚାରୀମାନଙ୍କ ତାଙ୍କ ପ୍ରତି ସମ୍ମାନ ସ୍ନେହ ଓ ସୌହାର୍ଦ୍ଦ୍ୟ ଥାଏ । ନନାଙ୍କ ଲଲାଟ ପଟରେ ପଟାପଟା ରାମାନନ୍ଦୀ ତିଳକ ।

ଗଳାରେ ତୁଳସୀ ଓ ପୁଷ୍ପର ମାଳା, ଘଣ୍ଟା ଘଣ୍ଟା ଧରି ଜପ । ଏ ସବୁ ଦେଖି ଉପରିସ୍ଥ ତେଲଙ୍ଗା କର୍ମଚାରୀମାନେ ତାଙ୍କ ପ୍ରତି ଆକୃଷ୍ଟ ହୋଇ ଥାନ୍ତି । ଥରେ ଜଣେ ଆର.ଡି.ଓ ଜୟନ୍ତୀ ରାମେୟାପାନ୍ତୁଲୁ ନନାଙ୍କର ଭକ୍ତି ପରାୟଣତା ଦେଖି ଘୁମୁସରର ରାଜ ପ୍ରତିଷ୍ଠିତ ଦେବାଳୟମାନଙ୍କର ପରିଦର୍ଶନ ଭାର ଦେଇଥିଲେ । ଥରେ କୁଲାଡ଼ର ପ୍ରସିଦ୍ଧ ଦୋଳପୂର୍ଣ୍ଣିମା ଯାତ୍ରା ଦେଖିବାକୁ ଯାଇଥିଲୁ । ନାରାୟଣ ମହାପ୍ରଭୁଙ୍କ ବଡସିଂହାର କାକରା ପ୍ରସାଦ ଆମକୁ ଦିଆଯାଇଥିଲା । ନନା କାକରା ଭାଙ୍ଗି ଦେଖିଲା ବେଳକୁ ସେଥିରେ ଏକ କେଶ ବାହାରିଲା । କାକରାଟି ଗରୁଡସ୍ତମ୍ଭ ପାଖରେ ପକାଇ ଦେଇ ଦେବାଳୟର ଅଧିକାରୀ, ପୂଜାରୀ, ଭଣ୍ଡାର ଘରିଆ ପ୍ରଭୃତିଙ୍କୁ ନାନା ଗାଳି ଦେବା ଦେଖିଛି । ସମସ୍ତେ ଭୟଭୀତ ହୋଇ ଯେ ଯୁଆଡେ ଛପି ଯାଇଥିଲେ । ପୁରୁଣା ଘୁମୁସର ଗଡ଼ରେ କେବଳ ମନ୍ଦିର ତିନୋଟି ଛଡ଼ା ଜନବସତି ନଥିଲା । କାରଣ ମନ୍ଦିର ତିନୋଟି ଛାଡିଦେଇ ବାକି ସମସ୍ତ ଜମି ରତ୍ନପୁର ବେହେରା ଘର ବଞ୍ଚର ପଟ୍ଟା କରାଇ ନେଇଥିଲେ । ନନା ସେହି ଜୟନ୍ତୀ ରାମେୟା ଡ଼େପୁଟି କଲେକ୍ଟରଙ୍କୁ କହି ସେଥିରୁ କେତେକାଂଶ ଗ୍ରାମକଣ୍ଠ (House site Poromboke) କୁ ପରିବର୍ତ୍ତନ କରାଇଲେ । ସେହିଦିନ ଠାରୁ ନନାଙ୍କ ସହ ବେହେରା ଘରର ଅପଡ଼ ହେଲା ।

ଦିନେ ଏକ ବିରାଟ ସଭା ବାସୁଦେବ ମହାପ୍ରଭୁଙ୍କ ନଡ଼ିଆ ବଗିଚା ମଧରେ ଅନୁଷ୍ଠିତ ହେଲା । ନାନାଦି ବାଦ୍ୟ ବାଜଣା ପଟୁଆର ସହ ଡ଼େପୁଟି କଲେକ୍ଟର ଜୟନ୍ତୀ ରାମେୟାଙ୍କୁ ଅଭ୍ୟର୍ଥନା କରାଗଲା । ସେଦିନ ସେଠାରେ ବସତିର ଶୁଭ ତାଙ୍କରି ଦ୍ୱାରା ଦିଆଗଲା ଏବଂ ବସତିର ନାମ ତାଙ୍କରି ନାମାନୁସାରେ ଜୟନ୍ତୀ ଗଡ଼ (ପୁରୁଣା ଘୁମୁସର ଗଡ଼) ବୋଲି ନାମିତ ହେଲା । ମନ୍ଦିରର ସେବକ ମାନେ ଏଠାରେ ଘର କରି ରହିଲେ । ନନାଙ୍କର ଏହା ଏକ ଅକ୍ଷୟ କୀର୍ତ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବର୍ତ୍ତମାନ ଏହି ବସତିଟି ଶ୍ରୀ ବାସୁଦେବ ମନ୍ଦିର ଠାରୁ ଶ୍ରୀ ଦୁର୍ଗାଦେବୀ ମନ୍ଦିର ଯାଏ ପୂର୍ବ ପଶ୍ଚିମ ଦୁଇ ଶ୍ରେଣୀରେ ଗୋଟିଏ ମାତ୍ର ସାହି । ବିସ୍ତୃତ ଦାଣ୍ଡର ଦୁଇ ପାଖରେ ନଡ଼ିଆ ଗଛ । ଗ୍ରାମବାସୀ ଅଧିକାଂଶ ଅର୍ଚ୍ଚକ । ସୁନ୍ଦର, ଶୀତଳ, ଶାନ୍ତିମୟ ସ୍ଥଳ, ବେଢା ବାହାରେ ନାରିକେଳ ବଗିଚା, ସ୍ଥାନେ ସ୍ଥାନେ ବକୁଳ, ଚମ୍ପକ, ମାଳତୀ, ଜାତି, ଶେଫାଳୀ ପ୍ରଭୃତି ସୁଗନ୍ଧ ପୁଷ୍ପ ବାଟିକା, ଭୋଗ ଉଦ୍ଦେଶ୍ୟରେ ନାନାପ୍ରକାର ପନିପରିବା ବଗିଚା । ଏ ତିନି ମନ୍ଦିରରେ ଭୋଗ ରାଗ ବହୁତ ହୁଏ । ପଥିକ ମାନେ କମ ମୂଲ୍ୟରେ ପ୍ରସାଦ ସେବନ କରି ତୃପ୍ତିଲାଭ କରନ୍ତି । କେତେଜଣ ଗରିବ ଓ ଭିକାରୀଙ୍କୁ ବିନାମୂଲ୍ୟରେ ଅଭ୍ୟାଗତ ମଧ ଦିଆଯାଏ । ନାନାବିଧ ଜାନି ଜାତ ପାଳିତ ହୁଏ । ବାସୁଦେବ ମୂର୍ତ୍ତି ଘନକୃଷ୍ଣ ମୁଗୁନି ପଥରରେ ନିର୍ମିତ । ପ୍ରାୟ ମଣିଷେ ଉଚ ହେବେ । ବଡ଼ ସୁନ୍ଦର ବିଗ୍ରହ । ଚତୁର୍ଭୁଜରେ ଶଙ୍ଖ, ଚକ୍ର,ଗଦା ପଦ୍ମ ଶୋଭିତ । ଗରୁଡ଼ ସ୍ତମ୍ଭ ପଛରେ ଥାଇ ଦେଖିଲେ

ସତେ ଯେପରି ଦର୍ଶକ ଆଡ଼କୁ ଚାଲି ଆସୁଛନ୍ତି । ମନ୍ଦିର ମଧ୍ୟରେ ଗୋଟିଏ କୋଣ ମୁହାରେ ଘୁମୁସରର ଶେଷ ଦୁଇ ରାଜା କୃଷ୍ଣ ଭଞ୍ଜ ଓ ଲକ୍ଷ୍ମଣ ଭଞ୍ଜ ଏବଂ ସେମାନଙ୍କର ଦେବାନ୍ ଦ୍ୱୟଙ୍କ ପ୍ରସ୍ତର ମୂର୍ତ୍ତି ବିଦ୍ୟମାନ । ଅନେକ ଐତିହାସିକ ଓ ସାହିତ୍ୟକ ଏହି ମନ୍ଦିର ପରିଦର୍ଶନ ଉଦ୍ଦେଶ୍ୟରେ ଆସିଥାନ୍ତି । କବିବର ଚିନ୍ତାମଣି ମହାନ୍ତି ଘୁମୁସର ଭ୍ରମଣ କାଳରେ ଏ ସ୍ଥଳକୁ ଆସି ତାଙ୍କର ବିଖ୍ୟାତ ଘୁମୁସର କାବ୍ୟରେ ଏ ସ୍ଥଳର ସୁନ୍ଦର ବର୍ଣ୍ଣନା କରିଛନ୍ତି । ଘୁମୁସରର ରାଜାମାନେ ଏହି ମନ୍ଦିର ତଥା ଘୁମୁସରର ଅନ୍ୟାନ୍ୟ ରାଜପ୍ରତିଷ୍ଠିତ ମନ୍ଦିର ମାନଙ୍କର ପରିଚାଳନା ଉଦ୍ଦେଶ୍ୟରେ ବିପୁଳ ଭୂସଂପତ୍ତି ଦାନ କରିଯାଇଛନ୍ତି । ବର୍ତ୍ତମାନ ଇନାମ ଜମି ଉଚ୍ଛେଦ ଆଇନ ବଳରେ ସେ ଜମି ସବୁ ରୟତମାନଙ୍କ ଅଧୀନକୁ ଚାଲିଯାଇଛି । ଫଳରେ ଭୋଗରାଗ କାଟତି ହୋଇଗଲା ।

ଶ୍ରୀ ଦୁର୍ଗାଦେବୀ ମନ୍ଦିରର ଦୃଶ୍ୟ ଅବର୍ଣ୍ଣନୀୟ । ଏଠାରେ କନକଦୁର୍ଗା ବିରାଜିତ ଥିଲେ । କାଳକ୍ରମେ ଅର୍ଚ୍ଚକମାନେ ଏ ମୂର୍ତ୍ତିନେଇ ଖାଇଗଲେ । ଦେବୀ କ'ଣ କରୁଥିଲେ କେଜାଣି ? ମାତ୍ର ସେତ ନିର୍ବିକାର ଧାତୁ ବିଗ୍ରହ । ସବୁ ସହିଗଲେ । ଅବଶ୍ୟ ସେ ଅର୍ଚ୍ଚକ କୂଳର ବଂଶ କାଳକ୍ରମେ ଲୋପ ହୋଇଗଲା । ଲୋକେ କହିଲା ପରି ପାଣି ଦେବାକୁ କେହି ଜଣେ ରହିଲେ ନାହିଁ । ସେମାନଙ୍କୁ ସଦ୍ୟ ଦଣ୍ଡ ମିଳିଥିଲେ ଲୋକେ ସେଥିରୁ କିଛି ଶିକ୍ଷା ପାଇଥାନ୍ତେ । ଏବେ ସେଠାରେ ପ୍ରସ୍ତର ମୂର୍ତ୍ତି ବିରାଜିତା । ଯେଉଁ ପଣ୍ଡାକୁଳ ଏବେ ଅର୍ଚ୍ଚକ ଅଛନ୍ତି, ସେମାନେ ଚାଷୀ, ମାଲିକ, ତ୍ରଷ୍ଟୀ । ସେମାନେ ଯାହା କଲେ ତାହା । ଆଉ କିଏ କିଛି ବୁଝିବାକୁ ନାହିଁ । ଦେବତା ତ ବିଧିରେ ପଥର । ସବୁ ଦେଖୁଛନ୍ତି ମାତ୍ର ।

## ଦୟାନିଧିର ବ୍ରତୋପନୟନ

ନନାଙ୍କ ଜୀବନରେ ଆଉ ଏକ ମହତ୍କୀର୍ତ୍ତି- ତାଙ୍କର ବ୍ରାହ୍ମଣ ପୁଅ । ତା'ର ପାଠ ପଢ଼ା ବୟସ ହେବା ପରେ ଗ୍ରାମ୍ୟ ପାଠଶାଳାରେ ପଢ଼ିଲା । ତାପରେ ତାକୁ ବେଲଗୁଣ୍ଠା ଜାତୀୟ ବିଦ୍ୟାଳୟକୁ ନେଇ ମୁଁ ତାର ପଢ଼ାପଢ଼ି ଭାର ନେଲି । ସେ ଟିକିଏ ଉଦାସିଆ, ଧୀରସ୍ଥିର । କୁମୁଟୀ ପିଲେ ତାକୁ ବଡ଼ ଆଦର ଦୃଷ୍ଟିରେ ଦେଖିଲେ । ବିଶେଷତଃ ସେ ମାତୃହୀନ ଅବସ୍ଥାରେ ଆମ ଘରେ ବଢ଼ି ଆସିଥିବା ଯୋଗୁଁ ସମସ୍ତଙ୍କର ତା ପ୍ରତି ସ୍ନେହ ଓ ସହାନୁଭୂତି । ପଢ଼ାପଢ଼ି ସେତେ ଭଲ ହୁଏ ନାହିଁ । ମାତ୍ର ସ୍ୱଭାବ ଅତି ଭଲ । ଜାତୀୟ ବିଦ୍ୟାଳୟ ଭାଙ୍ଗିବା ପରେ ମୁଁ ତାକୁ ସଂସ୍କୃତ ପଢ଼ାଇ ଜଣେ ପଣ୍ଡିତ କରିବା ଇଚ୍ଛା କରିଥିଲି । ତାର ବ୍ରତୋପନୟନ ବେଳେ ଆମ ଏଠାର ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ବ୍ରହ୍ମା- ସେ ବ୍ରତ ହୋଇ ପାରିବ ନାହିଁ ବୋଲି ଆପତ୍ତି କଲେ । ଆମ ଗାଁର ତା'ର ଜାତିର

ହଳୁଆ ବ୍ରାହ୍ମଣମାନେ ମଧ ଆପତ୍ତି ଉଠାଇଲେ । ବ୍ରହ୍ମା ତାଙ୍କର ପୃଷ୍ଠପୋଷକ ହେଲେ । ମୁଁ ଧୂମୁଛାର ଦାସ ଘରକୁ ଗଲି । ତାଙ୍କ ଘର ସିଦ୍ଧି ହେଉଛି- ଧର୍ମ ସଙ୍କଟର ବ୍ୟବସ୍ଥାପକ । ପଣ୍ଡିତ ହରିହର ଦାସ ରସଲକୋଣ୍ଡା ହାଇସ୍କୁଲର ପଣ୍ଡିତ । ଆମର ଶିକ୍ଷକ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ତାଙ୍କର ଶିଷ୍ୟ । ଏବେ ବହୁତ ପଢ଼ାପଢ଼ି କରି ଗୁରୁଙ୍କଠାରୁ ବଳି ବଡ଼ ପଣ୍ଡିତ ହୋଇ ସାରିଲେଣି । ମୁଁ ପଣ୍ଡିତ ହରିହର ଦାସଙ୍କୁ ଏ ଉପନୟନ କଥା ଏବଂ ବ୍ରହ୍ମାଙ୍କ ଆପତ୍ତି ଜଣାଇଲି । ସେ କହିଲେ, ''ଆରେ ! ଚନ୍ଦ୍ରଟା ବହୁତ ପାଠ ପଢ଼ିଛି ସିନା, କିଛି ଜାଣେ ନାହିଁ । ଧର୍ମଶାସ୍ତ୍ରରେ କେବେହେଲେ କାହାକୁ ପତିତ କରିଦେବା କଥା ଅଛି ? ପତିତ ମାନଙ୍କୁ ଯଥାବିଧି ସଂସ୍କାର କରି ଉଦ୍ଧାର କରିବା କଥା । ଆଚ୍ଛା ମୁଁ ଯାଇଁ ଉପନୟନ କରିଦେଇ ଆସିବି ।'' ସେ ଆସିଲେ, ଭାରି ଯାକ ଜମକରେ ଉପନୟନ ବିଧାନ ହେଲା । ସମସ୍ତଙ୍କ ପାଇଁ ଖଦଡ଼ ଲୁଗା କରାଗଲା । ଅବଶ୍ୟ ସେଥିରେ ବହୁତ ବ୍ୟୟ ହେଲା । ସେ ସମୟରେ ଆଉ ଗୋଟିଏ ଘଟଣା । ମୋର ଯଥା ସମୟରେ କାନଫୋଡ଼ା ହୋଇ ନଥିଲା । ଅନ୍ୟାନ୍ୟ ବନ୍ଧୁ ଘରମାନଙ୍କ ପରି ଆମ ଘରେ ଉପନୟନ ସଂସ୍କାର ନାହିଁ । ଏଣୁ ଭଲ ଦିନ ଦେଖି ଖାଲି କାନ ଫୋଡ଼ାଇ ଦେବା କଥା, ସମସ୍ତେ ଧରି ବସିଲେ ଏହି ବ୍ରତ ବେଦୀରେ ମୋର କର୍ଣ୍ଣବେଧ ସଂସ୍କାର କରିଦେବେ । ମତେ ଡ଼କା ହେଲା । ମୁଁ ଯାଉ ନଥାଏ । କାନ ଫୋଡ଼ାକୁ ଡ଼ରି ଆସୁନାହିଁ ବୋଲି ପରିହାସ କଲେ । ଶେଷରେ ମୁଁ ଯାଇ ପଣ୍ଡିତଙ୍କୁ ପଚାରିଲି- ''ଆଜ୍ଞା ଆପଣ ମଧ ଏପରି କହୁଛନ୍ତି ।'' ସେ ବଡ଼ ଉଦାର ଚେତା ''ହଉରେ, ତୋ ମନ, ଥାଉ'' କହିଲେ । ମୁଁ ସେ ଦଣ୍ଡରୁ ରକ୍ଷା ପାଇଲି । ବ୍ରତ ତ ହୋଇଗଲା ଏଥର ତାଙ୍କୁ ପାଠ ପଢ଼ାଇବା କଥା । ବଲାଡ଼ି ବାସୁଦେବ ତ୍ରିପାଠୀଙ୍କ ସାଙ୍ଗରେ ଏକ ଗୁଣ୍ଡିଚା ଯାତ ସମୟରେ ପୁରୀ ବେଦ ବିଦ୍ୟାଳୟରେ ପ୍ରବେଶ କରାଇବା ପାଇଁ ନେଲି ।

ଭାରତ ସେବକ ସମାଜ ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ସେଠାକୁ ଯାତ୍ରୀମାନଙ୍କ ସେବା ଶୁଶ୍ରୁଷା କରିବାପାଇଁ ଏକ ସ୍ୱେଚ୍ଛାସେବକ ଦଳ ନେଇ ଆସିଥାନ୍ତି । ତାଙ୍କ ସହ ଦେଖାହେଲା । ବେଲଗୁଣ୍ଠା ଜାତୀୟ ବିଦ୍ୟାଳୟରେ ଦୟାନିଧିଙ୍କୁ ସେ ଭଲ ଭାବରେ ଜାଣିଥିଲେ । ଆମକୁ ନେଇ ପ୍ରଚଣ୍ଡ ଖରାରେ ସେ ସଂସ୍କୃତ ବିଦ୍ୟାଳୟକୁ ଗଲେ, ଅଧକ୍ଷଙ୍କୁ ଦେଖାକରି ଏମାନଙ୍କ ବିଷୟ କହିବାକୁ । କିନ୍ତୁ ଅଧକ୍ଷ ନ ଥିଲେ । ହଷ୍ଟେଲରେ ଖରାବେଳଟା କଟାଇବାକୁ ଛାତ୍ରମାନଙ୍କୁ କହିଲେ । ସେମାନେ କାଳେ ହଷ୍ଟେଲ ପରିଚାଳକ କ'ଣ କହିବେ ବୋଲି ମନା କରିଦେଲେ । ଲକ୍ଷ୍ମୀନାରାୟଣ ବାବୁ କହିଲେ ''ବାଞ୍ଛାନିଧି ବାବୁ ! ଏମାନଙ୍କୁ କାହିଁକି ଏ ପାଠ ପଢ଼ାଇବ । ଦେଖୁନ ଏ ଛାତ୍ର ମାନଙ୍କର କେଡ଼େ ସଂକୀର୍ଣ୍ଣ ମନୋବୃତ୍ତି । ଏ ପ୍ରଚଣ୍ଡ ଖରାବେଳେ ଘଣ୍ଟେ ଦି' ଘଣ୍ଟ ଛାତ୍ରାବାସରେ ଆଶ୍ରୟ ଟିକିଏ ଦେଲେ ନାହିଁ । ଅନ୍ୟ ଇଂରେଜୀ ବିଦ୍ୟାଳୟ ଛାତ୍ରମାନଙ୍କ

ଏପରି ମନୋଭାବ ବିରଳ ।'' ସେଠାରୁ ଫେରିଲୁ । ତହିଁ ଆରଦିନ ବେଦ ବିଦ୍ୟାଳୟରେ ଏମାନଙ୍କୁ ପ୍ରବେଶ କରାଇ ଗାଁକୁ ଫେରିଛି ।

ବେଦ ବିଦ୍ୟାଳୟ ନିକଟରେ ସ୍ୱାମୀ ନିଗମାନନ୍ଦ ପରମହଂସଙ୍କ ଆଶ୍ରମ ନୀଳାଚଳ କୁଟୀର । ସେଠାର ବ୍ରହ୍ମଚାରୀମାନେ ଅନେକ ସମୟରେ ବେଦ ବିଦ୍ୟାଳୟକୁ ଆସନ୍ତି । ଦୟାନିଧି ତାଙ୍କ ସଙ୍ଗରେ ପରିଚିତ ହୋଇ ସ୍ୱାମୀ ନିଗମାନନ୍ଦଙ୍କୁ ଦେଖାକରି ତାଙ୍କ ସାଙ୍ଗରେ ଗୌହାଟୀ (ଆସାମ) ସାରସ୍ୱତ ମଠକୁ ଚାଲିଗଲା । ପିଲାଦିନୁ ଅଭିଅଳରେ ମହାସୁଖରେ ବଢ଼ିଥିଲା । ମଠରେ ବଗିଚାକାମ, ପ୍ରେସ୍‌କାମ ପ୍ରଭୃତି ଶାରୀରିକ ପରିଶ୍ରମ କରିପାରିଲା ନାହିଁ । ସେଠାରୁ ବନାରସ ଚାଲିଗଲା । ସେଠାରେ ପଣ୍ଡିତ ଦାମୋଦର ଶାସ୍ତ୍ରୀ ଓ ହରିହର ଷଡଙ୍ଗୀ ଉତ୍କଳାଶ୍ରମ ନାମରେ ଏକ ଅନୁଷ୍ଠାନ ଗଢ଼ିଥିଲେ । ସେହି ଆଶ୍ରମରେ କେତେଦିନ ରହିଛି ସେଠାରେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ହେଲା । ତା ଦେଖି ଭୟରେ ସେଠାରୁ ପୁରୀ ବାହାରି ଆସିଲା । ଜ୍ୱରରେ ପଡ଼ି ଟେଲିଗ୍ରାମ କଲା । ମୁଁ ଯାଇ ତାକୁ ଗାଁକୁ ଘେନି ଆସିଛି । ସୁସ୍ଥ ହେବା ପରେ ତାକୁ କ୍ଷତ୍ରିୟ ବରପୁର ମଧ ଇଂରାଜୀ ବିଦ୍ୟାଳୟରେ ପ୍ରବେଶ କରାଇଛି । ଅଷ୍ଟମ ପାଶ୍ କରି ଶିକ୍ଷକ ଟ୍ରେନିଂକୁ ଗଲା । ଜିଲ୍ଲା ବୋର୍ଡ଼ର ଶିକ୍ଷକ କାମ କଲା । ସେ ପର୍ଯ୍ୟନ୍ତ ସେ ଘରେ ଥାଏ । ବିବାହ ପରେ ତାକୁ ଘର ଖଣ୍ଡେ ଓ ଜମି କିଛି ଦିଆଗଲା, ସେଦିନ ଠାରୁ ସେ ପୃଥକ ହୋଇ ରହିଲା । ବୋଉର ଇଚ୍ଛା ସେ ଆମ ଘରେ ରହିବ, ତା ସ୍ତ୍ରୀ ଆମ ଘରର ବୋହୂ ରୂପେ ରହିବ । ଅସମ୍ଭବ ହେଲେ ମଧ ସେ ସେ ଭାବ ଛାଡ଼ି ନଥାଏ । ତାକୁ କେତେ ପ୍ରକାର ବୁଝାଇବାକୁ ପଡ଼ିଲା । ତଥାପି ସେ ତାକୁ ଘରକୁ ଡାକିଆଣି ଖୁଆଇବ, ଏବଂ ତା ସ୍ତ୍ରୀପାଇଁ ଖାଦ୍ୟ ନେଇ ଦେଇ ଆସିବ । ବୋଉର ଅନାବିଳ ବାତ୍ସଲ୍ୟ ସ୍ନେହ ହେତୁ ସେ ଲୋକ ନିନ୍ଦାକୁ ନ ମାନି ଲୁଚେଇ ଛପେଇ ତାକୁ ଘରେ ଖୁଆଏ । ତା ଜାତି ବ୍ରାହ୍ମଣମାନେ ଏକଥା ଜାଣିଲେ ମଧ କିଛି କହିପାରନ୍ତି ନାହିଁ ।

ନନା ବଡ଼ ଦେବ ବ୍ରାହ୍ମଣ ଭକ୍ତ । ଦିନେ ଆମ ଗାଁର ଘନିଆ ସୁନାରି ବାସୁଦେବପୁରର ଜଣେ ବ୍ରାହ୍ମଣକୁ ମାଡ଼ ଦେଇଥିଲା । ନନା ରୁଗ୍ଣ ଓ ଦୁର୍ବଳ ଅବସ୍ଥାରେ ସୁଦ୍ଧା ଏକଥା ସହି ନ ପାରି ଘନିଆକୁ ଦି ଚାପୁଡ଼ା ମାରିଦେଲେ ।

ନନା କଚେରୀରେ ଉପରିସ୍ଥ କର୍ମଚାରୀମାନଙ୍କୁ ନିର୍ଭୀକ ଭାବରେ ଜବାବ ଦେଇଥାନ୍ତି । ସମଗ୍ର ଘୁମୁସର କରଣମାନଙ୍କ ଅଗ୍ରଣୀ । କରଣ କାମ ରେଭିନ୍ୟୁ ବିଭାଗର ସର୍ବନିମ୍ନ କାମ । ସେ ସମୟରେ ବେତନ ମାସିକ ମାତ୍ର ୮ ଟଙ୍କା ଥିଲା । ପରବର୍ତ୍ତୀ କାଳରେ ଟ ୧୫ଙ୍କାକୁ ବଢ଼ିଥିଲା । ଅବଶ୍ୟ କରଣମାନଙ୍କୁ ୬/୭ ଏକର ଇନାମ ଜମି ଦିଆଯାଇଥିଲା । ଉପରିସ୍ଥ କର୍ମଚାରୀମାନେ ପ୍ରାୟ ସମସ୍ତେ ତେଲୁଗୁ । କରଣ ମାନଙ୍କୁ ଚପରାସିଠାରୁ ହୀନ ପରି ଦେଖୁଥିଲେ । ନନା କୌଣସି କରଣ ପ୍ରତି କିଛି ଅପମାନ

ହେଲେ ପ୍ରତିବାଦ କରି ଉଚିତ ପ୍ରତିବିଧାନ କରିଥାନ୍ତି । ସମୟେ ସମୟେ କୌଣସି କର୍ମଚାରୀ ବିଶେଷତଃ ରେଭିନ୍ୟୁ ଇନ୍‌ସପେକ୍ଟରଙ୍କ କୌଣସି ଅସଙ୍ଗତ ବ୍ୟବହାର ଦେଖିଲେ କାରଣ ଦର୍ଶାଇ ଇସ୍ତଫା ପତ୍ର ସହ ସମସ୍ତ ରେକର୍ଡ ତହସିଲଦାର କିମ୍ବା ଆର୍‌.ଡ଼ି.ଓ.ଙ୍କ ଠାକୁ ପଠାଇ ଦେଇଥାନ୍ତି । ସେମାନେ ତାଙ୍କୁ ଓ ରେଭିନ୍ୟୁ ଇନ୍‌ସପେକ୍ଟରଙ୍କୁ ଡ଼କାଇ ସସମ୍ମାନ ସମାଧାନ କରିଦେଇଥାନ୍ତି । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ଏହିପରି ତିନିଥର କରିଥିଲେ ।

ଥରେ ଏକ ସେଟ୍‌ଲ୍‌ମେଣ୍ଟ୍ ଅଫିସ ବସିଲା । ସମଗ୍ର ଡ଼ିଭିଜନର କରଣମାନେ ରସଲକୋଣ୍ଡାରେ ବସାବାନ୍ଧି ସେଟଲ୍‌ମେଣ୍ଟ୍ ଅଫିସରେ କାମ କଲେ । ପାଇକମାନେ କରଣମାନଙ୍କ ପାଇଁ ମେଜ ଓ ରେକର୍ଡ ପତ୍ର ଆଣି ଦିଅନ୍ତି ଓ କାମ ଶେଷରେ ନେଇ ଯଥା ସ୍ଥାନରେ ରଖି ଦିଅନ୍ତି । ଦିନେ ସେଟଲ୍‌ମେଣ୍ଟ୍ ଅଫିସର ପାଇକମାନଙ୍କୁ ସେ କାମ କରିବାକୁ ବନ୍ଦ କରିଦେଇ କରଣମାନେ ନିଜେ ସେ କାମ କରିବାପାଇଁ ଆଦେଶ ଦେଲେ । ନନା ସମସ୍ତ କରଣଙ୍କୁ ଭେଳେଇ ତହସିଲଦାରଙ୍କ ଠାକୁ ଯାଇ ପ୍ରତ୍ୟେକ କରଣଙ୍କୁ ପାଇକ ପୋଷାକ ଗୋଟିଏ ଗୋଟିଏ ଦେବାକୁ କହିଲେ । ତହସିଲଦାର ବିସ୍ମିତ ହୋଇ କାରଣ ପଚାରିବାରୁ ସେ ଉତ୍ତର ଦେଲେ ସେ ''ପାଇକ କାମ କଲାବେଳେ ସେହି ପୋଷାକ ପିନ୍ଧିବୁ । କରଣ ବେଶରେ ପାଇକ କାମ କରିବା ଶୋଭା ପାଉନାହିଁ ।'' ତହସିଲଦାର ଏଥିର କାରଣ ବୁଝି, ସେହିଦିନ ଠାରୁ ପୁଣି ପାଇକମାନେ ପୁର୍ବପରି ନିଅ ଆଣ କରିବେ ବୋଲି ଆଦେଶ ଦେଲେ ।

ସଂସ୍କାରକ ଶ୍ରୀବସ୍ ପଣ୍ଡାଙ୍କ ସହ ନନାଙ୍କ ଘନିଷ୍ଠତା ଥିଲା । ଶ୍ରୀବସ୍ ବାବୁ ଉତ୍କଳ ଦେଶ ମିଶ୍ରଣ ଆନ୍ଦୋଳନର ଅଗ୍ରଣୀ ଥିଲେ । ସେ ସମୟରେ କଚେରୀ ମାନଙ୍କରେ ତେଲୁଗୁରେ ଲେଖା ଲେଖି ପ୍ରଚଳନ ଥିଲା । କରଣ, କାର୍ଯିମାନଙ୍କୁ ତେଲୁଗୁ ଶିଖିବାକୁ ପଡୁଥିଲା । ବହୁ ଆନ୍ଦୋଳନ ପରେ କଚେରୀ ମାନଙ୍କରେ ଓଡ଼ିଆ ପ୍ରଚଳନ ହେଲା, କିନ୍ତୁ ଅଙ୍କ ଗୁଡିକ ଇଂରାଜୀ ଅଙ୍କ ଲେଖିବାକୁ ହେଉଥିଲା । ଥରେ ପଣ୍ଡାବାବୁ ନନାଙ୍କୁ କହିଲେ, ''ତମେ କରଣମାନେ ବଡ଼ ଭୁଲ କରୁଛ । ସବୁ ତ ଓଡିଆ ଅକ୍ଷର ଲେଖୁଛ, ଅଙ୍କ ଗୁଡିକ କାହିଁକି ଇଂରାଜୀ ଅଙ୍କ ଲେଖୁଛ, ଓଡିଆ ଅଙ୍କ ଲେଖ ।'' ନନା ସେଥିରେ ଉଦ୍‌ବୁଦ୍ଧ ହୋଇ ଗୋଟିଏ ମାସର ମାସିକ ହିସାବ ଓଡିଆ ଅଙ୍କରେ ଲେଖିଲେ । ଅଭ୍ୟାସ ନଥିବା ହେତୁ ଥରକୁ ଥର ଭୁଲ ହୋଇଯାଏ । ଶେଷରେ ଗୋଟିଏ ନିର୍ଭୁଲ ନକଲ କଲେ । କଚେରୀକୁ ପଠାଇ ଦେଲେ । ତେଲେଙ୍ଗା ଗୁମାସ୍ତା ତେଲେଙ୍ଗା ତହସିଲଦାର କିଛି ବୁଝିପାରିଲେ ନାହିଁ । ଟ.୧-୫-୬ ପାହୁଲା ସ୍ଥଳେ ଲେଖା ହେଲା ଟ. ୧ ⁄ ୬ । ସାଙ୍ଗେ ସାଙ୍ଗେ ସମନ ହେଲା । ତହସିଲଦାର ଏପରି ଲେଖିବାର କାରଣ ପଚାରିଲେ । ନନା କହିଲେ ମହାମାନ୍ୟ ସରକାର ଘୁମୁସରରେ ଓଡ଼ିଆ ପ୍ରଚଳନ ପାଇଁ ଆଦେଶ ଦେଲେ ।

ଓଡିଆ ଅକ୍ଷର ସାଙ୍ଗରେ ଓଡ଼ିଆ ଅଙ୍କ ଲେଖିଲେ ଦୋଷ କ'ଣ ହେଲା ? ତହସିଲଦାର ଅବାକ୍ । କିନ୍ତୁ ସେ ପରେ ବୁଝାଇଲେ, ''ତେଲୁଗୁ ସିନା ଉଠିଗଲା, ଇଂରାଜୀ ତ ଉଠିନାହିଁ । ଇଂରାଜୀ ଅଙ୍କ ଲେଖ । ଆମେ ଓଡିଆ ବୁଝିପାରୁ ନାହୁଁ । ଏଥିରେ ନନାଙ୍କୁ ଗୋଟିଏ ବ୍ଲାକମାର୍କ ମିଳିଲା । ପଣ୍ଡାବାବୁ ଶୁଣିଲେ, କର୍ମଚାରୀମାନଙ୍କର ପରିବର୍ତ୍ତନ ନ ହେଲେ ହେବନାହିଁ ବୋଲି ମନକୁ ବୋଧ ଦେଲେ । ନନା ଶ୍ରୀବସ୍ ପଣ୍ଡା ଓ ହରିହର ଷଡଙ୍ଗୀଙ୍କ ସହ ଆନ୍ଦୋଳନ ସମ୍ପର୍କରେ କିଛି କିଛି କାମ କରିଥିବା ଯୋଗୁଁ ଗଞ୍ଜାମ ଜିଲ୍ଲା କଲେକ୍ଟର ଅଫିସରେ ନନାଙ୍କ ନାମ ସରକାରୀ ବିରୋଧୀ ତାଲିକାଭୁକ୍ତ ହୋଇଥିଲା ।

## ପୁରୁଷୋତ୍ତମ

ବଡ଼ ଦଦାଙ୍କ ପୁଅ ପୁରୁଷୋତ୍ତମ । ଦଦା ଜୀବିତ ଥାଉଁ ଥାଉଁ ସମସ୍ତେ ଭିନ୍ନେ ହୋଇଗଲା ପରେ ମଧ ଆମେ ଦୁଇ ଘର ଏକାଠି ଥାଉଁ । ପୁରୀ ବୋଲି ଘରେ ସମସ୍ତେ



ବାଞ୍ଛାନିଧି ପଟ୍ଟନାୟକଙ୍କ ଦଦାପୁଅ ଭାଇ ୰ପୁରୁଷୋତ୍ତମ ପଟ୍ଟନାୟକ

ତାକୁ ଡ଼ାକନ୍ତି । ତାକୁ କେତେଦିନ ପଢ଼ାଇଛି । ମୋ ସାଙ୍ଗରେ ଉପାସନା କରେ । ଦିନେ ତାକୁ କିଏ ଜଣେ ପଚାରିଲା " ତୋ ମହାପ୍ରଭୁ କିଏ ?" ସେ କହିଲା ଯେ ଆଖି, ନାକ, କାନ ପ୍ରଭୃତି ତା'ର ମହାପ୍ରଭୁ । ଏମାନେ ତୋର କ'ଣ କରନ୍ତି ? ସେ କହିଲା ଆଖି ମହାପ୍ରଭୁ ଲେନ୍ଥୁ, ନାକ ମହାପ୍ରଭୁ ସିଂଘାଣି, କାନ ମହାପ୍ରଭୁ ଗଇ ଦେଇଥାନ୍ତି । ଅତି ଅଳ୍ପ ବୟସରେ ମଧ ସେ ଏପରି ହାସ୍ୟ ସମ୍ବଳିତ କଉତୁକିଆ କଥା କହିଥାଏ । ବଡ଼ ହେବାପରେ ସେ ବୁଗୁଡା ଯାଇ ପଢ଼ିଥିଲା । ୮ମ ଶ୍ରେଣୀ ପରେ ଆଉ ଅଧିକ ପଢ଼ିପାରିଲା ନାହିଁ । ସେତେବେଳକୁ ତାଙ୍କର ଭିନେ ହୋଇ ଯାଇଥିଲେ । ମୋର କୌଣସି କର୍ତ୍ତୃତ୍ୱ ତା ଉପରେ ରହିଲା ନାହିଁ । ପରବର୍ତ୍ତୀ କାଳରେ ମୋରି କରଣ କାମରେ ସେ ନିଯୁକ୍ତ ହୋଇଥିଲା । କିଛିଦିନ ହରିଜନ ନୈଶ୍ୟ ବିଦ୍ୟାଳୟରେ ଶିକ୍ଷକ ଥିଲା । ମୋର ପୃଷ୍ଠପୋଷକତାରେ ଗଢ଼ା ଯାଇଥିବା ଯୁବକ ସଂଘର ସମ୍ପାଦକ ରୂପେ ବହୁତ ଗଠନ ମୂଳକ କାମ କରି ସୁନାମ ଅର୍ଜିଥିଲା । ସେ ଭଲ ଗୀତ ଗାଏ ଏବଂ ନାଟକ ପ୍ରଭୃତିରେ ସୁନ୍ଦର ଅଭିନୟ କରେ । ସ୍କାଉଟ୍ କ୍ୟାମ୍ପମାନଙ୍କରେ କ୍ୟାମ୍ପ୍ ଫାଏର ହୁଏ । ସେଥିରେ ହାସ୍ୟରସ ପରିବେଷଣ କରି ସମସ୍ତଙ୍କୁ ହସାଇ ହସାଇ ଗଡ଼େଇ ଦିଏ । ବଡ଼ ସ୍ୱାଧୀନ ଚେତା । ବାପା, ଭାଇ, ବନ୍ଧୁ, ସାଙ୍ଗସାଥୀ କାହା ମୁହଁକୁ ଚାହିଁବ ନାହିଁ । ସମସ୍ତଙ୍କୁ ରୋକ୍‌ଠୋକ୍ ଜବାବ ଦେବ । ତା'ର କାହାକୁ ଭୟ ନଥାଏ । ଅପ୍ରିୟ ସତ୍ୟ ପ୍ରକାଶ କରିବାରେ କେବେ ପଛେଇ ନଥାଏ । କରଣ କାମ ଉଚ୍ଛେଦ ପରେ ତା'ର ଅବସ୍ଥା ଖରାପ ହୋଇଥିଲା ।

## ଗୋଦାବରୀ ପ୍ରସାଦ

ସାନ ଦଦାଙ୍କ ପୁଅ ଗୋଦାବରୀ ପ୍ରସାଦ । ତାର ଅତି ଅଳ୍ପ ବୟସରେ ମୁଁ ୧୯୨୨ ରେ ଜେଲରେ ଥିବା ବେଳେ ଦଦାଙ୍କର ଅକାଳ ବିୟୋଗ ଘଟିଲା । ଖୁଡ଼ୀ ପିଲାଟିକୁ ନେଇ ଗୋଇାମୁଣ୍ଡା ବାପ ଘରକୁ ବାହାରିଗଲେ । ନନା ଗୋଦାବରୀ ସ୍ନାନରୁ ଫେରିବା ପରେ ତାହାର ଜନ୍ମ ହୋଇ ଥିବାରୁ ତାକୁ ଗୋଦାବରୀ ବୋଲି ନାଁ ଦେଇଥିଲେ । ମୁଁ ସେଥିରେ ପ୍ରସାଦ ଯୋଡ଼ି ଦେଇଥିଲେ । ସେ ଅଜାଘରେ ବହୁତ ଦିନ ରହିଲା । ସେ ଯେତେ ଦୁଷ୍ଟାମି କଲେ ମଧ କେହି କିଛି କହନ୍ତି ନାହିଁ । ବଡ଼ ଦୁଷ୍ଟ ଓ ଅମାନିଆ ହେଲା । ତାକୁ ସାଧ କରିବା ଓ ଶିକ୍ଷାଦେବା ଭାର ମୋ ଉପରେ । ସେ ମୋଠାରୁ କେତେ ଯେ ମାଡ଼ ଖାଇଛି ତାର ସୀମା ନାହିଁ । ମୁଁ କୁଆଡ଼େ ଯିବାର ଲକ୍ଷ୍ୟ କରିଥିବ । "ହଁ ଭାଇନା ଆଜି ରସଲକୋଣ୍ଡା ଗଲେଣି, ଆଉ କିଏ ପଚାରେ" କହି ଯେତେ ଯାହା ଦୁଷ୍ଟାମି କରିପକାଇବ । ମୁଁ ଫେରିଲେ ଗଣ୍ଡଗୋଳ ତାଲିକା ମୋ ପାଖରେ

ପେଶ୍ ହେବ ଏବଂ ବାଡ଼ି ଚାଲିବ । ତା ବୋଉ କେବେହେଲେ ମୋର ଏ ତାଡ଼ନାରେ ବିମୁଖ ହେବା ମୁଁ ଦେଖି ନାହିଁ । ନନା, ''ତାକୁ ଇମିତି କାହିଁକି କରୁଛୁ'' ବୋଲି କହନ୍ତି । ବୋଉ ଭାରି ବିରକ୍ତ ହୁଏ । ତଥାପି ମୁଁ ଛାଡ଼େ ନାହିଁ । ତାର ଭବିଷ୍ୟତ ମୋ ହାତରେ । ଦଦା ମୃତ୍ୟୁ ଶଯ୍ୟାରେ ପଡ଼ି ଆମ ଗାଁ ଶିକ୍ଷକ ଶ୍ରୀ ଲିଙ୍ଗରାଜ ନନ୍ଦଙ୍କୁ କହିଥିଲେ ''ବାଞ୍ଛାକୁ କହିବ ମୋର ଏ ଛୋଟ ପିଲାଟି ତାକୁ ଲାଗିଲା ।'' ମୁଁ କର୍ତ୍ତବ୍ୟାନୁରୋଧରେ ତାକୁ ଶାସନ କରିବାରେ ଓ ଶିକ୍ଷା ଦେବାରେ ଲାଗିଥାଏ । ମୁଁ ଉପାସନା କଲାବେଳେ ମୋ ପାଖରେ ହାତ ଯୋଡ଼ି ବସେ । ଦିନେ ଉପାସନାରେ ମହାପ୍ରଭୁଙ୍କୁ କ'ଣ କହୁଛୁ ବୋଲି ପଚାରିବାରୁ କହିଲା ''ମହାପ୍ରଭୁ ମତେ ଭଲ କରିଅ, ବିଦ୍ୟା ଦିଅ, ଆଉ ଖିରି ପିଠା ଦିଅ ।'' ଦିନେ ଶ୍ରୀବସ ପଣ୍ଡା ଆସିଥିଲେ । ତାର ଏପରି ଉପାସନା ଶୁଣି ଖୁବ୍ ହସିଥିଲେ । ମୋର ତୀବ୍ର ଶାସନ ଏବଂ ଶିକ୍ଷାଦାନର ଫଳ ପରବର୍ତ୍ତୀ କାଳରେ ଭଲ ହୋଇଥିଲା । ସେ ଏଡ଼େ ଶାନ୍ତ ଓ ଧୀର ହେଲା ଯେ ତାର ପିଲାଦିନର ବ୍ୟବହାର ଯେ ଦେଖିଛି ସେ ଆଶ୍ଚର୍ଯ୍ୟ ହୋଇଯାଏ । ଇଚ୍ଛାପୁରରେ ମାଟ୍ରିକ୍ୟୁଲେସନ୍ ପାଶ କଲା ।



ବାଞ୍ଛାନିଧି ପଟ୍ଟନାୟକଙ୍କ ଦଦାପୁଅ ଭାଇ ୰ ଗୋଦାବରୀ ପ୍ରସାଦ

ବ୍ରହ୍ମପୁର କଲେଜରେ କିଛିକାଳ ପଢ଼ି Health Inspector Trainingକୁ ଗଲା । ସ୍ୱାମୀ ବିଚିତ୍ରାନନ୍ଦ ଦାଶ ତାର Selection ରେ ସାହାଯ୍ୟ କରିଥିଲେ । Health Inspector କାମରେ ନିଯୁକ୍ତ ହେଲା ।

ତାର ବିବାହ ହେଲା କେନ୍ଦୁପଦରର ମୋର ମାମୁଁ ଶ୍ରୀ ଭଗବତଚରଣ ଦାସଙ୍କ ଝିଅ ତଥା ନିରଞ୍ଜନ ପଟ୍ଟନାୟକଙ୍କ ଭାଣିଜୀ ସରୋଜିନୀ ସହ । ତାର ଚାରି ପୁଅ । ସମସ୍ତେ ପଢ଼ାପଢ଼ି କରି କିଏ ଡାକ୍ତର କିଏ ଇଞ୍ଜିନିୟର ହୋଇଛନ୍ତି ଏବଂ ବ୍ୟବସାୟ ମଧ କରି ଭୁବନେଶ୍ୱରରେ ସୁଖରେ କାଳ କଟାଉଛନ୍ତି । ସରୋଜିନୀ ଘର କରଣାରେ ଧୂରନ୍ଧର । ବଡ଼ ଶାନ୍ତ, ଶିଷ୍ଟ ଏବଂ ସାଧୁ ବ୍ୟବହାର ।

## ପଣ୍ଡିତ ଗୋଦାବରୀଶ ଦାଶଙ୍କ ଗୋବରା ଆଗମନ

ବେଲଗୁଣ୍ଠା ଜାତୀୟ ବିଦ୍ୟାଳୟ ଭାଙ୍ଗିବାପରେ ମୋର ଅନ୍ତରଙ୍ଗ ବନ୍ଧୁ, ସଖା, ସହାୟକ, ପରାମର୍ଶ ଦାତା ଓ ଉପକାରୀ ପଣ୍ଡିତ ଗୋଦାବରୀଶ ଦାଶଙ୍କୁ ଗୋବରା ନେଇ ଆସିଲି । ବେଲଗୁଣ୍ଠାରେ ତ ତାଙ୍କର ଘର ଜମିବାଡ଼ି କିଛି ନଥିଲା । ମାମୁଁ ଘର ଦେଇଥିବା ଏକ ଘରେ ବାସ କରୁଥାନ୍ତି । ସେ ସାମାନ୍ୟ ସଂସ୍କୃତ ଓ ଆୟୁର୍ବେଦ ଜାଣିଥିଲେ ।

ଗୋଟିଏ ଆୟୁର୍ବେଦ ଔଷଧାଳୟ ଖୋଲାଗଲା । ସଂସ୍କୃତ ଟୋଲ୍‌ଟିଏ ହେଲା । ମାନ୍ଦ୍ରାଜ ଶିକ୍ଷା ବିଭାଗଦ୍ୱାରା ମଞ୍ଜୁର କରାଗଲା । ସେ ପଣ୍ଡିତ ନିଯୁକ୍ତ ହେଲେ । ଅନେକ ଛାତ୍ର ତାଙ୍କର ଟୋଲରେ ପଢ଼ିଲେ । କିଏ କର୍ମକାଣ୍ଡ କିଏ ଆୟୁର୍ବେଦ ଆଉ କିଏ ସାଧାରଣ ସଂସ୍କୃତ ଶିକ୍ଷା କଲେ । ଗୋଦାବରୀଶବାବୁ ଅତୀବ ଲୋକପ୍ରିୟ । କୋମଳ ମଧୁର ବଚନ କହି ସମସ୍ତଙ୍କ ମନ ତୋଷଣ କରନ୍ତି । ବିପଦ ଆପଦରେ ଯେ କୌଣସି ବ୍ୟକ୍ତିଙ୍କୁ ସାହାଯ୍ୟ କରିଥାନ୍ତି । ନିଜେ ଭିକ୍ଷା କରି ଅନେକ ଛାତ୍ରଙ୍କୁ ସାହାଯ୍ୟ କରନ୍ତି । କାହାକୁ ଔଷଧ ଦେଲା ବେଳେ ଘିଅ କିମ୍ବା ମହୁ ଅନୁପାତ ବତାଇବେ, ତାପରେ ଘିଅ ବା ମହୁ ଅଛି କି ନାହିଁ ବୁଝି ନ ଥିଲେ ନିଜ ଘରୁ ଦେବେ । ଚିକିତ୍ସା ପାଇଁ ପ୍ରାପ୍ୟ ମାଗିବେ ନାହିଁ, ଯେ ଯାହା ଦେଉ ନ ଦେଉ ସନ୍ତୋଷ । ବଡ଼ ପରିଶ୍ରମୀ । କୋଶ କୋଶ ବାଟ ଚାଲି ଚାଲି ଯିବେ । ଦିନ ନାହିଁ ରାତି ନାହିଁ, ଖରା ନାହିଁ ବର୍ଷା ନାହିଁ ସାଇକେଲ ଚଳାଇ ଥିବେ । ତାଙ୍କ ପାଇଁ ଗୋବରାରେ ଖଣ୍ଡିଏ ଘରଡ଼ିହ ଯୋଗାଇ ଦିଆଗଲା । ସେଥିରେ ଘରବାନ୍ଧି ଗୋବରା ଅଧିବାସୀ ହେଲେ । ତାଙ୍କର ସବୁ ପୁଅଙ୍କର ଗୋବରାରେ ଜନ୍ମ । ସେମାନଙ୍କର ପ୍ରାଥମିକ ଶିକ୍ଷା ଗୋବରାରେ ହିଁ ହୋଇଥିଲା ।

ତାଙ୍କ ବଡ଼ ପୁଅ ଅଭେଦାନନ୍ଦର ବ୍ରତୋପନୟନ ଉତ୍ସବ ଏକ ରାଜକୀୟ

ଢଙ୍ଗରେ ଅନୁଷ୍ଠିତ ହୋଇଥିଲା । ସାମଗ୍ରୀ ଏତେ କୁଆଡୁ ଆସିଲା କେଜାଣି । ଗାଁ ଲୋକେ ଦେଖି ତାଟକା । ପ୍ରଥମେ ଅନେକେ ତାଙ୍କ ଏତେ ବଡ଼ ଆୟୋଜନ ଦେଖି ହାସ୍ୟ କରୁଥିଲେ । କେତେ ଆଡୁ ବନ୍ଧୁ ବାନ୍ଧବ, ସଙ୍ଗାତ, ମଇତ୍ର ଓ ଭଦ୍ରଲୋକ ଆସିଲେ । ଗାଁର ଆବ୍ରହ୍ମ ଚଣ୍ଡାଳ ସମସ୍ତଙ୍କୁ ଭୋଜିକୁ ଡ଼ାକରା ହେଲା । ଗାଁ ଦାଣ୍ଡରେ ଚାରିଧାଡ଼ି ହୋଇ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ଲୋକେ ଖାଇ ବସିଲେ । ତିନି ଚାରି ଶାସନର ବ୍ରାହ୍ମଣ ନିମନ୍ତ୍ରିତ ହୋଇ ଆସିଥିଲେ । ଭୋଜ୍ୟ ନାନା ରକମର । ବ୍ରାହ୍ମଣ ଭୋଜନ ଓ ସର୍ବସାଧାରଣ ଭୋଜିରେ ସମସ୍ତେ ପ୍ରୀତ ହୋଇଥିଲେ । ଆଉ କିଏ କେବେ ଏପରି ଭୋଜି କରିନାହିଁ କରିବ ନାହିଁ ବୋଲି ଲୋକେ ପ୍ରଶଂସା କଲେ । ଏଉ ଅଭେଦାନନ୍ଦର କଥା ପରେ କୁହାଯିବ ।

୧୯୨୯ ସାଲ ସଂସ୍କୃତ ବିଦ୍ୟାଳୟ ପରୀକ୍ଷା ହେବାପାଇଁ ନୋଟିସ୍ ଆସିଲା । ମୁଁ କଲିକତା କଂଗ୍ରେସରୁ ଫେରି ଭୟାନକ ଜରରେ ପଡ଼ିଲି । ଡାକ୍ତର କାଶୀନାଥ ପାଳ ସେତେବେଳେ ଗାଙ୍ଗପୁର ଡାକ୍ତରଖାନାର ଡାକ୍ତର । ମତେ ଚିକିତ୍ସା କରି ଭଲ କଲେ । ଭାରି ଦୁର୍ବଳ ହୋଇ ଯାଇଥାଏ । ସେତେବେଳେ ମାନ୍ଦ୍ରାଜ ପ୍ରଦେଶ ପାଇଁ କେବଳ ଦୁଇଜଣ ସଂସ୍କୃତ ଇନ୍‌ସପେକ୍ଟର ଥାନ୍ତି । ରାଜ ମହେନ୍ଦ୍ରୀରେ ଜଣେ ଏବଂ ମାନ୍ଦ୍ରାଜରେ ଜଣେ । ସଂସ୍କୃତ ବିଦ୍ୟାଳୟ ବହୁତ କମ୍ ଥାଏ । ଅନେକ ଦିନଯାଏ କୌଣସି କାଗଜପତ୍ର ନ ଆସିବାରୁ ପଣ୍ଡିତେ ଟୋଲ ଉଠିଗଲାଣି ବୋଲି ଭାବି ସେଥିରେ ମନ ନ ବଳାଇ ନିଜର ଚିକିତ୍ସା କାମରେ ଲାଗିଥାନ୍ତି । ନୋଟିସଟି ଆସି ମୋ ହାତରେ ପଡ଼ିଲା । ପଣ୍ଡିତେ କେଉଁ ଆଡ଼େ ଚିକିତ୍ସା ପାଇଁ ଯାଉଥିଲେ, ତାଙ୍କୁ ବାଟରୁ ଫେରାଇ ଅଣାଇଲି । ଛ'ମାସ ତଳୁ ରେଜିଷ୍ଟର ଲେଖା ହୋଇନାହିଁ, ପଢ଼ାପଢ଼ି କଥା ଆଉ କାହିଁକି କହିବା ? ରେଜିଷ୍ଟର ଖାତା କିଣାହୋଇ ଆସିଲା । ଛ'ମାସର ରେଜିଷ୍ଟର ଲେଖା ହେଲା । ଛାତ୍ର ସଂଗୃହୀତ ହେଲେ । କେଉଁ କ୍ଲାସ୍‌କୁ କ'ଣ ପଢ଼ାଇବାକୁ ହେବ ବାଛି ବାଛି ନିର୍ଦ୍ଦିଷ୍ଟ ପାଠ ଘୋଷାଇଲି । ଉତ୍ତରାଞ୍ଚଳ ପରିଦର୍ଶକ ଛୁଟିରେ ଥିବାରୁ ଦକ୍ଷିଣାଞ୍ଚଳ ପରିଦର୍ଶକ ସୁଦୂର ମାନ୍ଦ୍ରାଜରୁ ଆସିଛନ୍ତି । ତାମିଲଲୋକ । କ୍ଲାସରେ ପିଲାଏ ବସିଲେ । ଦୈବାତ୍ ଦୟାନିଧି ଓ ବାସୁଦେବ ପୁରୀରୁ ଛୁଟିରେ ଆସିଥିଲେ । ସେମାନଙ୍କୁ ମଧ୍ୟ ଉଚ୍ଚ କ୍ଲାସରେ ରଖାଯାଇଛି । ସେମାନେ ବେଦ ବିଦ୍ୟାଳୟରେ କେତେ ବେଦମନ୍ତ୍ର ସ୍ୱର ତାଳ ଲୟରେ ଘୋଷିଥିଲେ । ପରିଦର୍ଶକ ଆସି କ୍ଲାସରେ ବସିବା ମାତ୍ରେ ବେଦମନ୍ତ୍ର ପାଠ ଆରମ୍ଭ କରାଗଲା । ସେ ଆସନରୁ ଉଠି କର ପତ୍ର ଯୋଡ଼ି ଚକ୍ଷୁ ମୁଦ୍ରିତ କରି ଭକ୍ତି ଭାବରେ ବେଦମନ୍ତ୍ର ଶ୍ରବଣ କଲେ । ତାପରେ ଭକ୍ତକବି ମଧୁସୂଦନଙ୍କ ''କୋଟି ଜଗତର ରାଜରାଜେଶ୍ୱର'' ଗାନ ହେଲା । ପୁଣି ସେ ହାତ ଯୋଡ଼ି ଠିଆ ହୋଇ ଶୁଣିଲେ । ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ତାର ସାହିତ୍ୟ ଏବଂ ଏପରି ସଙ୍ଗୀତ ମାନ ଅଛି କି ବୋଲି

ପଚାରିଲେ । ସଙ୍ଗେ ସଙ୍ଗେ ପାଠାଗାରରୁ 'ବୈଦେହୀଶ ବିଳାସ' ବାହାର କରି ଆଦ୍ୟ ଯମକ, ପ୍ରାନ୍ତ ଯମକରୁ କିଛି କିଛି ପଢ଼ି ଶୁଣାଇଲି । ସାକ୍ଷାତ ସଂସ୍କୃତ ଭାଷାପରି ବୋଲି ମନ୍ତବ୍ୟ ପ୍ରକାଶ କଲେ । ପିଲାଙ୍କୁ ଯାହାକୁ ଯାହା ଶିଖେଇ ଥିଲି ପଚାରିଲି । ସମସ୍ତେ ଉପଯୁକ୍ତ ଉତ୍ତର ଦେଲେ । ସେ ସନ୍ତୋଷ ହୋଇ ନିଜ ଭାଷାରେ କହିଲେ ''ରୋମ୍ବା ସନ୍ତୋଷମ୍'' । କୃଷ୍ଣା, ଗୋଦାବରୀ, ଭାଇଯାଗ ଓ ଗଞ୍ଜାମର ଅନ୍ୟାନ୍ୟ ସ୍ଥାନ ବୁଲି ଆସିଲି, ଏପରି ବିଦ୍ୟାଳୟ ଆଉ କେଉଁଠାରେ ଦେଖିନାହିଁ ବୋଲି କହି ପୁରା ଗ୍ରାଣ୍ଟ୍ ମଞ୍ଜୁର କରିଦେଲେ ।

## ମହାତ୍ମାଗାନ୍ଧୀଙ୍କ ଖଦୀଗସ୍ତ ଓ ଗୋବରାଠାରେ ପଦାର୍ପଣ

୧୯୨୭ ସାଲରେ ଶେଷ ଭାଗରେ ମହାତ୍ମାଗାନ୍ଧୀ ଖଦୀଗସ୍ତରେ ଓଡ଼ିଶା ଆସିଥିଲେ । ଶ୍ରୀ ନିରଞ୍ଜନ ପଟ୍ଟନାୟକ ଓଡ଼ିଶା ଖଦୀ ଅନୁଷ୍ଠାନର କର୍ତ୍ତା ଭାବରେ ଗାନ୍ଧୀଜୀଙ୍କୁ ନିମନ୍ତ୍ରଣ କରି ଆଣିଥିଲେ । ସେ ନିଜେ ଗସ୍ତର ସମସ୍ତ ଆୟୋଜନ କରିଥିଲେ । ପ୍ରଥମ ଓଡ଼ିଶା ଦୈନିକ ପତ୍ରିକା ''ଗାନ୍ଧୀ ସମାଚାର'' ପ୍ରକାଶ କଲେ । ଆମ ଗୋବରା ଗାଁରେ ଗାନ୍ଧିଜୀଙ୍କୁ ଅଭ୍ୟର୍ଥନା କରିବାକୁ ଇଚ୍ଛା କଲି । କରଣ କାମତ କରୁଛି- ପ୍ରକାଶ୍ୟ ଭାବରେ କିଛି କରି ହେବନି । ସହପାଠୀ ବନ୍ଧୁ ଡକ୍ଟର କାଶୀନାଥ ପାଳ ଗାଙ୍ଗପୁର ହାସପିଟାଲର ଡାକ୍ତର । ତାଙ୍କୁ ଧରିଲି । କେତେ ଜଣଙ୍କୁ ନେଇ ନାଁକୁ ମାତ୍ର ଏକ ଅଭ୍ୟର୍ଥନା ସମିତି ଗଠିତ ହେଲା । କାଶୀନାଥ ବାବୁ ଅଭ୍ୟର୍ଥନା ସମିତିର ସଭାପତି । ଆମେ ଦୁହେଁ ମିଶି ଗାଁକୁ ଗାଁ ବୁଲି ଚାନ୍ଦା ଅସୁଲ କଲୁ । ମୋ ନିଜ ହାତ କଟା ସୂତାରେ ମହାତ୍ମାଗାନ୍ଧୀ ପରିଧାନ କଲାଭଳି ଏକ ଛୋଟ ଲୁଗା ଓ ଚାଦର ବୁଣାଇଲି । ୬-୧୨-୧୯୨୭ ଦିନ ଆସିକା, ରସଲକୋଣ୍ଡା ଗସ୍ତ କାର୍ଯ୍ୟକ୍ରମ ଥିଲା । କାର୍ଯ୍ୟକ୍ରମରେ ଗୋବରାରେ ଓହ୍ଲାଇବା କଥା ସ୍ଥାନ ପାଇ ନାହିଁ । କିନ୍ତୁ ଗୋବରାଠାରେ ବିରାଟ ସଭାର ଆୟୋଜନ । କାନ୍ତୀଅମ୍ବା ନଦୀ କୂଳରୁ ସ୍କୁଲ ଯାଏଁ, ଗୋବରା ମୁଣ୍ଡରୁ ବାସୁଦେବପୁର ଗାଁ ମୁଣ୍ଡ ଯାଏଁ ବିରାଟ ଜନତା । ମଧ୍ୟରେ ମଞ୍ଚ । ତା ନିକଟରେ ଛପା ଘେରା ହୋଇ ସ୍ତ୍ରୀ ଲୋକମାନେ ସୂତା କାଟିବା ବ୍ୟବସ୍ଥା । ନିରଞ୍ଜନ ବାବୁ ଥଳିରେ କେତେ ଟଙ୍କା ଦିଆଯିବ ବୋଲି ବାରମ୍ବାର ପଚାରନ୍ତି । ଆମେ ତ ଶେଷ ମୁହୂର୍ତ୍ତଯାଏ ସଂଗ୍ରହରେ ଲାଗିଛୁ । କେତେ କିମିତି କହିବୁ ! ସେ ଗୋବରାରେ ରହିବାପାଇଁ କାର୍ଯ୍ୟକ୍ରମରେ ରଖି ନଥିଲେ । ମହାତ୍ମାଗାନ୍ଧୀଙ୍କ ଗାଡ଼ି ଆସିବା ପୂର୍ବରୁ ଦୁଇ ତିନିଟା କାର୍ ଆସି ରସଲକୋଣ୍ଡା ସିଧା ଚାଲିଯାଇଥାଏ । ଲୋକେ ଗାଡ଼ି ଦେଖିଲେ ହୋ ହୋ ହୋଇ ଉଠିପଡ଼ନ୍ତି । କିନ୍ତୁ ଯେତେବେଳେ ଗାନ୍ଧୀଜୀଙ୍କ ଗାଡ଼ି ଆସି ପହଞ୍ଚିଲା ଲୋକଙ୍କ

ଉତ୍ତେଜନା କମି ଯାଇଥିଲା । ପୂର୍ବରୁ ଯାଉଥିବା ଗାଡ଼ି ଭଳି ଏ ମଧ ବୋଲି ଭାବି ଲୋକେ ହୋ ହୋ ନ କରି ଧୀରସ୍ଥିର ଭାବେ ବସି ରହିଥାନ୍ତି । ଗାନ୍ଧୀଜିଙ୍କ ଗାଡ଼ି ଆସି ଯିମିତି ପହଞ୍ଚିଲା ଆମେ ଫୁଲମାଳ ଧରି ତାଙ୍କୁ ଅଭ୍ୟର୍ଥନା କରିବାକୁ ଗଲାବେଳେ ସେ କହିଲେ । "Gobara ? I have not got in my programme to get down here". ଅଭ୍ୟର୍ଥନା ସମିତି ସଭାପତି ଶ୍ରୀ କାଶୀନାଥ ପାଳ ଆତୁର ସ୍ୱରରେ କହିଲେ "No Sir, you must get down here. This is a meeting of the villagers, you cannot get such audience in towns." ଗାନ୍ଧିଜୀ କହିଲେ "O, you do violence upon me ?" ଏତିକି କହି ମୋଟରରୁ ଓହ୍ଲାଇ ମଞ୍ଚ ପର୍ଯ୍ୟନ୍ତ ଗଲେ । ମଞ୍ଚ ଉପରେ ତାଙ୍କୁ ଫୁଲମାଳ, ସୂତାମାଳ, ହାତକଟା ସୂତା, ହାତବୁଣା ଲୁଗା ଏବଂ ଟ ୩୦୦/-ଙ୍କାର ଥଳି ପ୍ରଦାନ କରାଗଲା । ଗୋଟିଏ ଅଭିନନ୍ଦନପତ୍ର ମୁଁ ଲେଖି ଛପାଇଥିଲି, ଉପହାର ଦିଆଗଲା ଓ ସଭା ସ୍ଥଳରେ ସେ ପତ୍ର ନିଲାମ କରାଯାଇଥିଲା । ଉପହାର ପଦାର୍ଥମାନଙ୍କ ମଧରେ କେତେକ କମଳା ଥିଲା । ଗାନ୍ଧୀଜୀ ସେସବୁ ଗୋଟିଏ ଗୋଟିଏ ବାହାର କରି କହିଲେ "To little children, to little children" । ପାଞ୍ଚ ସାତ ମିନିଟ୍ ପାଇଁ ବିରାଟ ଜନତା ପ୍ରତି ଉପଦେଶ ଦେଲେ । ତାଙ୍କର ଭାଷଣ ପ୍ରତ୍ୟେକ ସଭାରେ ଶ୍ରୀ ରାଜକୃଷ୍ଣ ବୋଷ ଅନୁବାଦ କରିଥାନ୍ତି, କିନ୍ତୁ ଏଠାକୁ ପ୍ରଥମେ ମହାତ୍ମାଗାନ୍ଧୀଙ୍କ କାର ଆସିଲା । ତାଙ୍କ କାର ଟିକିଏ ଡ଼େରିରେ ଆସିବାରୁ ଶ୍ରୀ ନିରଞ୍ଜନ ବାବୁ ଅନୁବାଦ କରୁଥିଲେ । ଏପରି ସମୟରେ ରାଜକୃଷ୍ଣବାବୁ ଆସି ପହଞ୍ଚିଲେ । ତାଙ୍କୁ ଦେଖି ଗାନ୍ଧୀଜୀ କହିଲେ "Oh ! There comes my oriental translator" ସଙ୍ଗେ ସଙ୍ଗେ ରାଜକୃଷ୍ଣବାବୁ ଅନୁବାଦ କଲେ । ଗାନ୍ଧୀଜୀଙ୍କ ଆଶ୍ରମରେ ରହୁଥିବା ବ୍ରିଟିଶ ମହିଳା ମିସ୍ ସ୍ଲେଡ୍ । ଗାନ୍ଧିଜୀ ତାଙ୍କୁ ''ମୀରା'' ବୋଲି ନାଁ ଦେଇଥିଲେ । କଂଗ୍ରେସ ମହଲରେ ସେ ''ମୀରା ବହନ'' ନାମରେ ପରିଚିତା । ସେ ମଧ ଗାନ୍ଧୀଜୀଙ୍କ ସାଙ୍ଗରେ ଗସ୍ତ କରୁଥାନ୍ତି । ଲୋକେ ଗାନ୍ଧୀଜୀଙ୍କୁ ଦେଖିବା ସହିତ ତାଙ୍କୁ ଆଗ୍ରହରେ ଦେଖୁଥାନ୍ତି ।

## ଗୋଟିଏ ରହସ୍ୟ କଥା

ଚାନ୍ଦା ସଂଗ୍ରହ ବେଳେ ମନ୍ଦାରର ଶ୍ରୀ ନାରାୟଣ ପଣ୍ଡାଙ୍କଠାକୁ ଚାନ୍ଦାପାଇଁ ଯାଇଥିଲୁ । ସେ କାଶୀନାଥ ପାଳଙ୍କ ଅଜା । ସେ କହିଲେ ''ହଇରେ ! ଗାନ୍ଧୀ ଫଳ ଖାଉଛି ପରା ? ମୋ ବଗିଚାରୁ ଭଲ ଭଲ ଫଳ ମୁଁ ଧରି ଯିବି'', କହି ଆଲମିରାରୁ କରମଙ୍ଗା ବାହାର କରି ଆମକୁ ଏତିକି ଟିକିଏ ଛିଣ୍ଡାଇ କରି ଦେଲେ । କହିଲେ

''ଗାନ୍ଧୀ ତା' ବାପା କାଳେ ଇମିତି ମଧୁର କରମଙ୍ଗା ଖାଇଥିବ କି ?'' ବାସ୍ତବିକ ବଡ଼ ମିଠା କରମଙ୍ଗା । ଚାନ୍ଦା କିନ୍ତୁ କିଛି ଦେଲେ ନାହିଁ । ୫/୬ଟି କମଳା ମାତ୍ର ଦେଲେ । ଗାନ୍ଧିଜୀ ଆସିବାକୁ କିଛି ବିଳମ୍ବ ଥାଏ । କାଶୀନାଥକୁ କହିଲି କିଏ କେତେ ଚାନ୍ଦା ଦେଇଛନ୍ତି, କେତେ ଆଦାୟ ହୋଇଛି ପଢ଼ି ଲୋକଙ୍କୁ ଶୁଣାଇ ଦିଅ ଏବଂ ଶେଷରେ ମନ୍ଦାରର ଶ୍ରୀ ନାରାୟଣ ପଣ୍ଡା କିଛି ଦେଇ ନାହାନ୍ତି  ବୋଲି ଘୋଷଣା କର । ଏପରି କହୁ କହୁ ପଣ୍ଡେ ଟଙ୍କା ବାହାର କରି ଦେଲେ । ମହାତ୍ମାଗାନ୍ଧୀ ଚାଲିଯିବା ବେଳେ ଆମେ ସବୁ ମହାତ୍ମାଗାନ୍ଧୀଙ୍କୁ ଛାଡ଼ିବାପାଇଁ ରାସ୍ତା ଉପରକୁ ଯାଇଛୁ ସେ ଗହଳି ମଧରେ କେଉଁ ଛଟକରେ ଆସି କମଳାତକ ଅଣ୍ଟିରେ ପୁରାଇ ପଣ୍ଡେ ଚାଲି ଯାଉଛନ୍ତି । ଆମେ ଧାଇଁ ଯାଇ ଓଗାଳିଲୁ । ସେଗୁଡ଼ିକ ଛୋଟ ଛୋଟ ପିଲାଙ୍କୁ ଦେବାକୁ ଗାନ୍ଧିଜୀ କହିଛନ୍ତି ବୋଲି କହିଲୁ । ବଡ଼ କଷ୍ଟରେ ସେଥିରୁ ଗୋଟିଏ ଦେଲେ । ଆମେ ସବୁତକ ଛଡ଼ାଇ ଆଣି ପିଲାଙ୍କୁ ବାଣ୍ଟି ଦେଲୁ ।

## କଲିକତା କଂଗ୍ରେସ

୧୯୨୮ରେ କଲିକତାରେ କଂଗ୍ରେସ ଅନୁଷ୍ଠିତ ହେଲା । ଘୁମୁସରରୁ ଆମେ ବହୁତ ଲୋକ ଯାଇଥିଲୁ । କଲିକତା ପାର୍କ ସର୍କସ୍‌ରେ ବିଶାଳ ମଣ୍ଡପ । ପ୍ରତିନିଧି ନିବାସ, ପ୍ରଦର୍ଶନୀ ମଣ୍ଡପ, ଶିଖ୍‌ମାନଙ୍କର ଏକ ବିଶାଳ ମଣ୍ଡପ ଏବଂ ଗୁରୁକାଲଙ୍ଗର୍ (ଗୁରୁ ରୋଷେଇ ଶାଳା, ଯିଏ ଗଲା ତାକୁ ଗୁରୁ ରୋଷେଇ ଶାଳାରୁ ଖାଇବାକୁ ଦିଆଯାଏ), ଆର୍ଯ୍ୟ ସମାଜର ମଧ ଏକ ବିଶାଳ ମଣ୍ଡପ । ଭଜନ, ଭାଷଣ ଅନବରତ ଚାଲିଥାଏ । ପଣ୍ଡିତ ମୋତିଲାଲ ନେହେରୁ ସଭାପତି । ଶ୍ରୀ ସୁବାଷ ଚନ୍ଦ୍ର ବୋଷ ସ୍ୱେଚ୍ଛାସେବକ ବାହିନୀର ସେନାପତି ସାମରିକ ପୋଷାକ ପରିଧାନ କରି ଏକ ବିଶାଳ ଘୋଟକ ଆରୋହଣ କରି ଗଲାବେଳେ ତାଙ୍କୁ ଦେଖି ହୃଦୟରେ ଜାତୀୟ ଭାବର ସ୍ପନ୍ଦନ ହୁଏ । ପରବର୍ତ୍ତୀ କାଳରେ ସେ ଯେତେବେଳେ ବର୍ମାରେ ''ଭାରତ ଜାତୀୟ ସୈନ୍ୟବାହିନୀ'' (I.N.A) ଗଠନ କରି ବ୍ରିଟିଶ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ''ଦିଲ୍ଲୀ ଚଲୋ'' ଡାକ ଦେଇଥିଲେ, ସେତେବେଳେ ତାଙ୍କରି ସେହି କଲିକତା ସ୍ୱେଚ୍ଛାସେବକ ବାହିନୀର ପୋଷାକ ମୋର ମନେ ପଡ଼ିଥିଲା । ସତେ ଯେପରି ସେ ସେହି ସମୟରେ ଏ କଳ୍ପନା କରିଥିଲେ । ସ୍ୱେଚ୍ଛାସେବକ ସଂଗଠନ ତାଙ୍କରି ନେତୃତ୍ୱରେ ଶୃଙ୍ଖଳିତ ଭାବେ ପରିଚାଳିତ ହୋଇଥିଲା । ମୋଟର ସାଇକେଲ, ସାଇକେଲ, ଘୋଡ଼ା ସବାର ଏବଂ ପଦାତିକ ଏହିପରି ଚାରି ପ୍ରକାର ବାହିନୀ ଗଠିତ ହୋଇଥିଲା । ଏମାନଙ୍କର ବିରାଟ ବାହିନୀ ନାନା ପ୍ରକାର ଜାତୀୟ ଧ୍ୱନି ଦେଇ ଠିକ୍ ସମୟରେ

କାଇଦାରେ ନଗର ପରିକ୍ରମ କରିବା ଦୃଶ୍ୟ ବଡ଼ ଚିତ୍ତାକର୍ଷକ ହୋଇଥିଲା ।

କଂଗ୍ରେସରେ ଆମ ଓଡ଼ିଶା ସମସ୍ୟା- ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ-ସମ୍ପର୍କରେ ସଭାପତି ତାଚ୍ଛଲ୍ୟ ଭାବ ପ୍ରକାଶ କରିଥିବା ଯୋଗୁଁ କଂଗ୍ରେସ ଅଧିବେଶନର ସମସ୍ତ ଓଡ଼ିଆ ବାହାରି ଆସିଲେ । ଶ୍ରୀ ନିରଞ୍ଜନ ପଟ୍ଟନାୟକ ପଣ୍ଡିତ ଗୋପବନ୍ଧୁ ଦାଶଙ୍କୁ ନେଇ ଓଡିଆ ଶ୍ରମିକମାନଙ୍କୁ ସଂଗଠନ କରି ହାବୁଡ଼ାଠାରୁ ପାର୍କ ସର୍କସ ଯାଏଁ ବିକ୍ଷୋଭ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଏକ ବିରାଟ ପଟୁଆର ଯୋଗାଡ଼ କଲେ । ଗୋଟିଏ ମିଲ୍‌ର ଏକ ବଡ଼ ମଣ୍ଡପରେ ବିରାଟ ସଭା ହେଲା । ପଣ୍ଡିତ ଗୋପବନ୍ଧୁ ଦାଶ ସଭାପତିତ୍ୱ କରି ଉଦ୍‌ବୋଧନ ଦେଲେ । ସଭାପତି ମୋତିଲାଲ ନେହ୍ରୁ ଏକଥା ଜାଣିପାରି ଶ୍ରୀ ପଟ୍ଟାଭି ସୀତାରାମେୟାଙ୍କୁ ସେହି ସଭାକୁ ପଠାଇ ଗୋଟିଏ ରଫା କରାଇ ନେଲେ । ନିରଞ୍ଜନବାବୁ ଏକ ସ୍ମରଣିକା ଲେଖି ରାତି ରାତି ଛପାଇ ସକାଳେ ଓଡ଼ିଆ ଆନ୍ଦୋଳନ ପ୍ରତି ସମସ୍ତ କଂଗ୍ରେସ ସଭ୍ୟଙ୍କ ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ କଂଗ୍ରେସ ମଣ୍ଡପରେ ବିତରଣ କରାଇଥିଲେ ।

ବିରାଟ ପଦର୍ଶନୀ, ନାନା ପ୍ରକାର ଯନ୍ତ୍ରପାତି, ସୁନା ରୁପାର ଅଳଙ୍କାର, ଲୁଗାପଟା, ହସ୍ତଶିଳ୍ପ ଇତ୍ୟାଦି ବିଭିନ୍ନ ଜିନିଷର ଦୋକାନ ମାନ ସଜା ହୋଇଥାଏ । ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାର ମଣ୍ଡପ । କେଉଁଠାରେ ଯୁବ ସମ୍ମିଳନୀ, କେଉଁଠାରେ ନାରୀ ସମ୍ମିଳନୀ, କେଉଁଠାରେ ଶ୍ରମିକ ସମ୍ମିଳନୀ ଅନୁଷ୍ଠିତ ହେଉଥାଏ । କଂଗ୍ରେସରେ ଉଗ୍ରପନ୍ଥୀ ମାନଙ୍କର ନେତୃତ୍ୱ ନେଇଥାନ୍ତି ପଣ୍ଡିତ ଜବାହରଲାଲ ନେହ୍ରୁ ଏବଂ ଶ୍ରୀ ସୁଭାଷ ଚନ୍ଦ୍ର ବୋଷ । କଂଗ୍ରେସର କେତେକ ପ୍ରସ୍ତାବର ଏହି ଦଳ ବିରୋଧ କରିଥାନ୍ତି । ବକ୍ତୃତା ପ୍ରସଙ୍ଗରେ ମହାତ୍ମାଗାନ୍ଧୀ କହିଥିଲେ ଯେ "ଜବାହର ତ ନିଜ ବାପାଙ୍କ କଥା ଶୁଣୁ ନାହିଁ, ଆଉ ମୋ କଥା କ'ଣ ଶୁଣିବ ?"

କଂଗ୍ରେସ ଦେଖା ସରିଲା । ଆମ୍ଭେମାନେ ତ୍ରିବେଣୀ ଘାଟକୁ ଗଲୁ । ସେଠାରୁ ପୁରୀ ଯାଇ ଗାଁକୁ ଫେରିଲୁ । ସେଆଡୁ ଫେରି ମୁଁ ଭୟାନକ ଜରରେ ପଡ଼ି ୧୫/୨୦ ଦିନରେ ଆରୋଗ୍ୟ ଲାଭ କଲି । ବହୁଦିନ ଯାଏଁ ଦୁର୍ବଳ ହୋଇ ପଡ଼ିଥିଲି ।

ଗାଁରେ ନାନାପ୍ରକାର ସାପ୍ତାହିକ ସଭା ହୁଏ । ବିଭିନ୍ନ ମହାପୁରୁଷ ଏବଂ ସାହିତ୍ୟକ ତଥା ନେତାମାନଙ୍କର ଜନ୍ମ ଓ ମୃତ୍ୟୁ ତିଥି ପାଳିତ ହୁଏ । ଆମ ଘରେ କିଏ କିଏ ଆସି ବର୍ଷ ବର୍ଷ ଧରି ରହନ୍ତି । ଶ୍ରୀ ବାସୁଦେବ ତ୍ରିପାଠୀ, ଶ୍ରୀ ପ୍ରଭାକର ପଟ୍ଟନାୟକ, ଶ୍ରୀ ରାମ ମୋହନ ଦାସ ପ୍ରଭୃତି ମଝିରେ ମଝିରେ ଆସି ରହୁଥିଲେ । କିଏ କେତେବେଳେ କେଉଁ କାମରେ ନିଯୁକ୍ତ ଥାଅନ୍ତି ବା ପଢାପଢି କରନ୍ତି । ଥରେ ଏକ ସଭାରେ ବାସୁଦେବ ଏକ ଓଜସ୍ୱିନୀ ଭାଷଣ ଦେଲେ । ମୁଁ କହିଲି ଏସବୁ କେବଳ ଭାଷଣରେ ସୀମାବଦ୍ଧ ନା କିଛି ସକ୍ରିୟ କାମ କରିବ ? ସେତିକିରେ ସେ ସେହିଦିନୁଁ

କଂଗ୍ରେସରେ ଯୋଗଦେଲେ । ପରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ କାରାବରଣ କଲେ । ଏହାଙ୍କ କଥା ପରେ ଗୋଶାଳା ପ୍ରସଙ୍ଗରେ ବର୍ଣ୍ଣିତ ହେବ ।

ଶ୍ରୀ ଦୀନବନ୍ଧୁ ବେହେରା ଅନେକ ସମୟରେ ଆମ ଘରକୁ ଆସନ୍ତି ଏବଂ ଆମରି ଘର ଦେଇ ତାଙ୍କ ନିଜ ଗାଁ ରତ୍ନପୁରକୁ ଯାନ୍ତି । ଥରେ ଗୋଟିଏ ଘଟଣା ଘଟିଲା । ଦୀନବନ୍ଧୁ ବାବୁ ଜାତିରେ ଶୁଣ୍ଢୀ । ମୋ ବୋଉ କିଛି ବାରଣ ନ କରି ତାଙ୍କର ଅଇଁଠା ବାସନ ଧୁଏ । ଦିନେ କଡୁତେଇର ଦି'ଜଣ କଂଗ୍ରେସ କର୍ମୀ ଦି'ଭାଇ ଗୋଦାବରୀ ସାହୁ ଓ ଅର୍ଜୁନ ସାହୁ ଆସିଥିଲେ । ସେମାନଙ୍କ ବାସନ ଧୋଇବାକୁ ବୋଉ ମନାକଲା । ସେ ଦୁହେଁ ମଧ ଶୁଣ୍ଢୀ । ମୁଁ କହିଲି ଦୀନବନ୍ଧୁ ବାବୁ ତ ଶୁଣ୍ଢୀ, ତାଙ୍କ ବାସନ ଧୋଉଛୁ । ଆଉ ଏମାନଙ୍କ ବେଳକୁ ଆପତ୍ତି କାହିଁକି ? ବୋଉ ନିତାନ୍ତ ସରଳ ଭାଷାରେ କହିଲା ''ସେମାନେ ତ ମୋର ବାପଘର ଗାଁ ନିକଟର ପିଲା । ମୁଁ କହିଲେ ସେମାନେ ନିଜେ ସଫା କରିଦେବେ ଯେ ।'' ମୁଁ କହିଲି, ''ନା, ତୁ ନ ଧୋଇଲେ ମୁଁ ଧୋଇଦେବି ।'' ସେ ଆଉ କିଛି ନକହି ନିଜେ ଧୋଇଲା ।

୧-୪-୧୯୨୯ରେ ମୋର ପ୍ରଥମ ସନ୍ତାନ, ଝିଅ ମନ୍ଦାକିନୀର ଜନ୍ମ । ସେଦିନ ମୁଁ ଗାଁରେ ନ ଥିଲି । ଦୟାନିଧିକୁ ଆଣିବାପାଇଁ ପୁରୀ ଯାଇଥିଲି । ସେଠାରୁ ଫେରି ଗାଁରେ ଓହ୍ଲାଉ ଓହ୍ଲାଉ ତା' ଜନ୍ମ ସୁସମ୍ବାଦ ପାଇଲି । ଆନନ୍ଦରେ ଘରକୁ ଆସିଲି । ଚାରି ଘର ଯାକରେ ଏକମାତ୍ର ନବଜାତ ଶିଶୁ । ସମସ୍ତଙ୍କର ଆନନ୍ଦର ସୀମା ନାହିଁ । ବାଲ୍ୟଲୀଳା କରାଗଲା । ମୋ ବୋଉର ଗୋଡ଼ ତଳେ ପଡୁନି । ନାତୁଣୀ ପାଇଛି, କେତେ କ'ଣ କରି ପକାଉଛି । ନନା କିନ୍ତୁ ଏ ଆନନ୍ଦ ଉପଭୋଗ କରିବାକୁ ନଥିଲେ । ମନ୍ଦା (ମନ୍ଦାକିନୀ) ର ଶୈଶବ ଅତୀତ ହେଲା । ଘରେ ପଢାପଢି କଲା, ତାପରେ ଗ୍ରାମ୍ୟ ବିଦ୍ୟାଳୟରେ । କେତେଦିନ କ୍ଷତ୍ରିୟବରପୁର ମଧ ଇଁରାଜୀ ବିଦ୍ୟାଳୟରେ । ତା'ମଉସା ଶ୍ରୀ ପରଶୁରାମ ମହାନ୍ତି ସେ ସ୍କୁଲର ଶିକ୍ଷକ । ସେ ତାକୁ ସାଇକେଲରେ ବସାଇ ପଢାଇବାକୁ ନିଅନ୍ତି । ପରେ ତା କଥା କୁହାଯିବ ।

## ସରଳା ଦେବୀ

୧୯୩୦ - ଲବଣ ସତ୍ୟାଗ୍ରହ । କେତେ ଆଡ଼େ କେତେ ସଭା ସମିତି । ଆମ ଗାଁକୁ ମଧ ବହୁ ନେତା ଆସି ସଭା ସମିତି କରିଯାନ୍ତି । ଦିନେ ଶ୍ରୀମତୀ ସରଳା ଦେବୀ- ସେତେବେଳର ଓଡ଼ିଶାର ଏକମାତ୍ର ନାରୀ ନେତ୍ରୀ- ଆସି ସଭା କଲେ । ସ୍ତ୍ରୀମାନଙ୍କର ସଭା ହେଲା । ସେମାନେ ସତ୍ୟାଗ୍ରହ ପାଣ୍ଠିକୁ କେତେ ଅଳଙ୍କାର ଦାନ କଲେ । ମୋ ସ୍ତ୍ରୀ ମଧ ତାଙ୍କ କାନର ବହୁ ମୂଲ୍ୟ ଅଳଙ୍କାର ପ୍ରଦାନ କରିଥିଲେ । ମୁଁ ସତ୍ୟାଗ୍ରହରେ

ଯୋଗଦେବା ବିଷୟ ନେଇ ସରଳା ଦେବୀ ମୋ ସହିତ ଆଲୋଚନା କରିଥିଲେ । ଏଠାରୁ ଫେରି ଖବର କାଗଜରେ ମୁଁ କରଣ କାମ ଛାଡ଼ି ସତ୍ୟାଗ୍ରହରେ ଯୋଗଦେଲି ବୋଲି ପ୍ରକାଶ କରିଦେଲେ । ମୁଁ ସେ ପର୍ଯ୍ୟନ୍ତ କିଛି ସ୍ଥିର କରିନଥାଏ । ଦିନେ ସନ୍ଧ୍ୟାବେଳେ ବାସୁଦେବପୁର ଜ୍ୟୋତିର୍ବିଦ ଶ୍ରୀ ମଙ୍ଗରୁ ଶତପଥୀଙ୍କ ସହ ବିଚାର କରିବାକୁ ଯାଇଥିଲି । ସେ ଘର ଭିତରେ ଥିଲେ । ତାଙ୍କ ପୁଅ ଶ୍ରୀ ଖଳି ଶତପଥୀ ଜାତକ ଦେଖିଲେ । ସେ ହିସାବ କରି ଅମୁକ ଦଶାରେ ଅନ୍ତର ଓ ଅମୁକ ପ୍ରତ୍ୟନ୍ତର କହିବା ମାତ୍ରେ ବୁଢ଼ା ଶୁଣି ଦାଣ୍ଡ ପିଣ୍ଡାକୁ ବାହାରି ଆସିଲେ । କହିଲେ ''କିରେ ପୁଣି କ'ଣ ଇମିତି ଦଶା ପଡ଼ିଲାଣି ?'' ସ୍ଥାନାନ୍ତର, ଦୂରସ୍ଥଳ ଗମନ ଓ ବନ୍ଧନ ଯୋଗ ।'' ସତେ କ'ଣ ବନ୍ଧନ ଦଶା ପଡ଼ିଛି କି ବୋଲି ପଚାରିବାରୁ ସେ କହିଲେ ''ନିଶ୍ଚୟ ହେବ । ଫିଟିବାର ବାଟ ନାହିଁ । ମୁଁ ମନେ ମନେ ଯାହା ଭାବୁଥିଲି ତାହା ଏକଥା ଦ୍ୱାରା ଦୃଢ଼ୀଭୂତ ହେଲା । ଗୋଟିଏ ଇସ୍ତଫା ପତ୍ର ଲେଖିଲି । ଭାଇ ପୁରୁଷୋତ୍ତମ ନାମରେ କରଣ କାମ ଦେବାକୁ ନିବେଦନ କରି ତହସିଲଦାରଙ୍କ ଠାରୁ ପଠାଇ ଦେଇ ବ୍ରହ୍ମପୁର ଚାଲିଗଲି । ତହସିଲ ଅଫିସରୁ ମତେ ନୋଟିସ୍ ହେଲା । ମୁଁ ହାଜର ହେଲି । ତହସିଲଦାର ମତେ ବିଚାରଣା କଲେ । ''ତମେ ସରକାରୀ କାଗଜପତ୍ର ହସ୍ତାନ୍ତର ନ କରି ଇସ୍ତଫା ପତ୍ର ପଠାଇ ଦେଇ ଚାଲିଗଲ । ସେଥିପାଇଁ କିଏ ଦାୟୀ ।'' ମୁଁ କହିଲି କାଗଜ ପତ୍ର ଅଛି ଯତ୍ନରେ ରଖାଯାଇଛି । ସେତିକିରେ ସେ ମତେ ବିଦାୟ ଦେଲେ । ମୁଁ ଜେଲ ଯିବାପରେ ଜେଲକୁ ଏକ ନୋଟିସ୍ ଗଲା । ସେଥିରେ ଲେଖାଥିଲା'' Your resignation is not accepted, you should join your duties immediately" ମୁଁ କାହିଁକି କିଛି ଉତ୍ତର ଦିଅନ୍ତି । ତା'ର କେତେଦିନ ପରେ ଆଦେଶ ଗଲା " You are dismissed from the Karana's post for participtaing in a movement against Govemment".

## ଲବଣ ସତ୍ୟାଗ୍ରହ

ମୁଁ ବ୍ରହ୍ମପୁର ଉଦ୍ୟୋଗ ମନ୍ଦିର (ସତ୍ୟାଗ୍ରହ ଶିବିର) ରେ ଯୋଗଦେଲି । ନିରଞ୍ଜନ ବାବୁ ମତେ ଅଫିସ ଓ ଉଦ୍ୟୋଗ ମନ୍ଦିର ତତ୍ତ୍ୱାବଧାନ କାର୍ଯ୍ୟରେ ରଖିଲେ । ନିରଞ୍ଜନ ବାବୁଙ୍କ ନେତୃତ୍ୱରେ ପ୍ରଥମ ଦଳ ଗଞ୍ଜାମରେ ଲୁଣମାରି ଆଇନ ଅମାନ୍ୟ କରିବାକୁ ବାହାରିଲେ । ବ୍ରହ୍ମପୁର ଶ୍ରୀ ଗୋପୀନାଥ ମନ୍ଦିର ସମ୍ମୁଖରେ ଏକ ବିରାଟ ସଭା ହେଲା । ପ୍ରାୟ ୩୦ ଜଣ ସତ୍ୟାଗ୍ରହୀ ଜନତା ମଧ୍ୟରୁ ବହୁ ସ୍ତ୍ରୀ ପୁରୁଷଙ୍କଦ୍ୱାରା ଚନ୍ଦନ, ସିନ୍ଦୁର, ତିଳକ ଓ ପୁଷ୍ପମାଲ୍ୟ ବିମଣ୍ଡିତ ହୋଇ ଗଞ୍ଜାଯାଏ ପଦ ଯାତ୍ରାରେ ବାହାରିଲେ ।

ବ୍ରହ୍ମପୁର ଦାଣ୍ଡ ଲୋକାରଣ୍ୟ । ସ୍ଥାନେ ସ୍ଥାନେ ସତ୍ୟାଗ୍ରହୀ ମାନଙ୍କୁ ପୁଷ୍ପମାଲ୍ୟ ଚନ୍ଦନ ଅର୍ପଣ କରି ଲୋକେ ସତ୍ୟାଗ୍ରହୀଙ୍କ ବିଜୟ କାମନା କରି ଭାରତମାତାଙ୍କ ଜୟ, ମହାତ୍ମାଗାନ୍ଧୀଙ୍କ ଜୟ ନାଦରେ ଗଗନ ପବନ ପ୍ରତିଧ୍ୱନିତ କରୁଥାନ୍ତି । ବାଟରେ ଠାଏଁ ନିରଞ୍ଜନ ବାବୁଙ୍କ ବୃଦ୍ଧାମାତା ଅଶ୍ରୁପୂର୍ଣ୍ଣ ନୟନରେ ନିରଞ୍ଜନ ବାବୁଙ୍କୁ କୋଳାଗ୍ରତ କରି, ଚୁମ୍ବନ ପ୍ରଦାନ ପୂର୍ବକ ବିଦାୟ ଦେବା ଦୃଶ୍ୟ ବଡ଼ ମର୍ମସ୍ପର୍ଶୀ ହୋଇଥିଲା । ସତ୍ୟାଗ୍ରହୀମାନେ ବାଟରେ ବହୁ ଗ୍ରାମରେ ଅଭ୍ୟର୍ଥିତ ହୋଇ ଗଞ୍ଜାମରେ ପ୍ରବେଶ କରି ଲୁଣମାରିବା ଆରମ୍ଭ କଲେ ।

ତେଣେ ପଲାସାଠାରେ ଆନ୍ଧ୍ର କଂଗ୍ରେସ୍ କମିଟୀ ଦ୍ୱାରା ଅନ୍ୟ ଏକ ଲୁଣମରା ଶିବିର ସ୍ଥାପିତ ହୋଇଥିଲା । ମାଷ୍ଟର ରାମଲିଙ୍ଗମ୍ ପ୍ରଭୃତି ସେଥିରେ ନେତୃତ୍ୱ ନେଇଥିଲେ । ଉଭୟ ଶିବିରର ଦଳ ଦଳ ସତ୍ୟାଗ୍ରହୀ ଗ୍ରେପ୍ତାର ହୋଇ ଜେଲ ଗଲେ । ବ୍ରହ୍ମପୁରଠାରୁ ଦଳକୁ ଦଳ ପଠାଯାଉଥାନ୍ତି । ମୁଁ ଉଦ୍ୟୋଗ ମନ୍ଦିର ତତ୍ତ୍ୱାବଧାନରେ ଥାଏ । ଶ୍ରୀମତୀ ସରଳା ଦେବୀ ଓ ଶ୍ରୀ ହରିହର ପଟ୍ଟନାୟକ ସାରା ଗଞ୍ଜାମ ଜିଲ୍ଲା ଗସ୍ତକରି ସତ୍ୟାଗ୍ରହୀ ସଂଗ୍ରହ ଓ ଅର୍ଥ ସଂଗ୍ରହରେ ଲାଗିଥାନ୍ତି । ବିଭିନ୍ନ ଦଳରେ ନେତୃତ୍ୱ ନେଇ ଶ୍ରୀ ଦିବାକର ପଟ୍ଟନାୟକ, ଶ୍ରୀ ବନମାଳୀ ମହାରଣା, ଶ୍ରୀ ପରଶୁରାମ ମହାନ୍ତି ପ୍ରଭୃତି ଜେଲ ବରଣ କଲେ । ଉଦ୍ୟୋଗ ମନ୍ଦିରରେ କେତେଜଣ ନାରୀ କର୍ମୀ ମଧ ଥାନ୍ତି । ଶ୍ରୀମତୀ ସରଳା ଦେବୀ ସେମାନଙ୍କର ନେତୃତ୍ୱ ଓ ସମସ୍ତ ଦାୟିତ୍ୱ ଗ୍ରହଣ କରିଥାନ୍ତି । ଶ୍ରୀହର୍ଷ ମିଶ୍ର, ଆନନ୍ଦ ମୋହନ ପଟ୍ଟନାୟକ, ସହଦେବ ପଟ୍ଟନାୟକ ପ୍ରଭୃତି ନିତାନ୍ତ ଅଳ୍ପ ବୟସ୍କ କର୍ମୀମାନେ ସେମାନଙ୍କ ପରିଚର୍ଯ୍ୟାରେ ନିଯୁକ୍ତ ହୋଇଥାନ୍ତି । ଉଦ୍ୟୋଗ ମନ୍ଦିରକୁ ଅନେକ ଜେଲକୁ ନେଇଯିବା ଭୟରେ ଆସନ୍ତି ନାହିଁ । ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଆଗମନ ସମୟରେ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ତାଙ୍କ ସାଙ୍ଗରେ ମାତ୍ର ଅଳ୍ପ ସମୟ ପାଇଁ ଆସିଥିଲେ । ନୀଳକଣ୍ଠ ବାବୁ ଲିଙ୍ଗରାଜ ବାବୁଙ୍କୁ ଆନ୍ଦୋଳନରେ ଯୋଗଦେବା ପାଇଁ କହିଲେ । ସେ ନାନା ଅସୁବିଧା ଦେଖାଇ ମନା କରିଦେଲେ । ସେଥିରେ ନୀଳକଣ୍ଠ ବାବୁ ଆମ ଆଗରେ ତାଙ୍କୁ ଯାହା କହିଲେ ଶ୍ରୀମତୀ ସରଳା ଦେବୀ ଓ ମୁଁ ଲଜ୍ଜିତ ହୋଇ ପଦାକୁ ବାହାରି ଯାଇଥିଲୁ । ଲିଙ୍ଗରାଜ ବାବୁ ନାଁକୁ ମାତ୍ର ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟୀରେ କୋଷାଧ୍ୟକ୍ଷ ଥାନ୍ତି ।

ଓଡିଶାର ସମସ୍ତ ବଡ଼ ବଡ଼ ନେତା ସତ୍ୟାଗ୍ରହ କରି କାରାବରଣ କଲେ । ସର୍ବଶେଷରେ ନୀଳକଣ୍ଠ ବାବୁ ଶେଷ ଡ଼ିକ୍ଟେଟର ଭାବରେ ରହି ଗଞ୍ଜାମ ଗସ୍ତରେ ଆସି ବିଭିନ୍ନ ସ୍ଥାନରେ ବୁଲି ଲୋକଙ୍କୁ ଉତ୍ସାହିତ କରି ଯାଇଥିଲେ ।

ଶ୍ରୀମତୀ ସରଳା ଦେବୀ ଗ୍ରେପ୍ତାର ହେଲେ । ଅନ୍ୟ ନାରୀ କର୍ମୀମାନେ କେହି ହେଲେ ସତ୍ୟାଗ୍ରହରେ ଯୋଗ ନ ଦେଇ ନିଜ ନିଜର ଘରକୁ ଫେରିଗଲେ । "ଆଶା"

ସଂପାଦକ ଶ୍ରୀ ଶଶୀଭୂଷଣ ରଥ ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗ ନ ଦେଇ ଥିଲେ ହେଁ 'ଆଶା'ରେ ସତ୍ୟାଗ୍ରହ ସମ୍ବାଦ ପ୍ରକାଶ କରୁଥିବା ଯୋଗୁଁ ଗ୍ରେପ୍ତାର ହେଲେ ।

ଶ୍ରୀ ବିଶ୍ୱନାଥ ଦାଶ ଏ ଆନ୍ଦୋଳନରେ ଭାଗ ନେଇ ନଥିଲେ କିମ୍ବା କୌଣସି ଆର୍ଥିକ ସାହାଯ୍ୟ ଦେଇ ନଥିଲେ । ମୁଁ ଦିନେ ଆମର କଂଗ୍ରେସ ପତାକା ବିମଣ୍ଡିତ ଜିପ୍ ଗାଡି ଧରି ତାଙ୍କ ଦ୍ୱାରେ ହାଜର ହେଲି । ଗଞ୍ଜାଯାଇ ସତ୍ୟାଗ୍ରହୀମାନଙ୍କୁ ଉତ୍ସାହିତ କରିବାପାଇଁ ତାଙ୍କୁ ଅନୁରୋଧ କଲି । ସେ ଆଗପଛ ହୋଇ ଶେଷକୁ ରାଜି ହେଲେ । ଅଳ୍ପ ସମୟ ମଧ୍ୟରେ ଫେରି ଆସିବା ବୋଲି କହି ଜିପ୍ ଆରୋହଣ କଲେ । ଜିପ୍ ଛୁଇଁଲେତ ଜେଲରେ ଢୁକି ଯିବେ । ଅଳ୍ପ ସମୟରେ ଫେରନ୍ତୁ ବା ଗଞ୍ଜା ନ ଯାନ୍ତୁ । ଗାଡ଼ିରେ ବସିଲେ ହେଲା । ଛତ୍ରପୁରକୁ ଅଳ୍ପ ବାଟ ଅଛି କହିଲେ ''ବାବୁ ! ପତାକାମାନ କାଢ଼ିଦିଅ । ପବନରେ ଚିରି ନଷ୍ଟ ହୋଇଯିବ ।'' ମୁଁ କହିଲି ''ଆଜ୍ଞା ଏ ଦୁଇଟି କେବଳ ନୁହେଁ । ଇମିତି କେତେ ଚିରିଲାଣି । ମନ୍ଦିରରେ ବିଡ଼ାଏ ପତାକା ଅଛି । ଯୋଡ଼ିଏ ଚିରିଲେ ଆଉ ଯୋଡ଼ିଏ ।'' ଗଞ୍ଜାରେ ଆମ ଶିବିରକୁ ଆଉ ଗଲେ ନାହିଁ । ଗଞ୍ଜା ଦାଣ୍ଡରେ ତାଙ୍କ ବନ୍ଧୁ ବାନ୍ଧବ କେତେଜଣଙ୍କ ସହ ଘରୋଇ ଦୁଃଖସୁଖ କଥା ହୋଇ ''ଚାଲଯିବା'' କହିଲେ । ସେଠାରୁ ଫେରି ରାତି ରାତି ତାଙ୍କର ଜମିଦାରୀ ଗାଁ କାଙ୍କର ପାଣିକୁ ଚାଲିଗଲେ । ଦୁଇଦିନ ପରେ ସେଠାରୁ ଫେରି ଶଗଡ଼ରୁ ଓହ୍ଲାଉ ଓହ୍ଲାଉ ଗ୍ରେପ୍ତାର ହୋଇ ଜେଲକୁ ଗଲେ ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଅନେକ ସର୍କାରୀ କର୍ମଚାରୀ ଓ ଓକିଲ ଆନ୍ଦୋଳନ ପାଇଁ ଗୋପନୀୟ ଭାବରେ ଆର୍ଥିକ ସାହାଯ୍ୟ କରିଥାନ୍ତି । ଥରେ ଘୁମୁସର ତାଲୁକା ବୋର୍ଡ଼ ସଭାପତି, ଶ୍ରୀ ରଘୁନାଥ ପାଢ଼ୀ, ଓକିଲ ଉଦ୍ୟୋଗ ମନ୍ଦିର ଦୁଆରେ ଆସି ଠିଆ ହୋଇ ଏଣେ ତେଣେ ଚାହିଁ ମନ୍ଦିର ଭିତରେ ପଶିଗଲେ । ଏଠାରେ କିଏ ଦାୟିତ୍ୱରେ ଅଛନ୍ତି ବୋଲି ପଚାରିଲେ । ମୁଁ ଅଛି ବୋଲି କହିବା ମାତ୍ରେ ଗୋଟିଏ ଟ୧୦୦କିଆ ନୋଟ ମୋ ହାତକୁ ବଢ଼ାଇ ଦେଇ ରସିଦ୍ ଦେଉଁ ଦେଉଁ ଆଉ ଅପେକ୍ଷା ନ କରି ଚାଲିଗଲେ ।

ଇତି ମଧରେ ଆମ ଗଞ୍ଜାମ ଓ ପଲାସା ଉଭୟ ଶିବିରରେ ସତ୍ୟାଗ୍ରହୀ ସଂଖ୍ୟା ଉଣା ହେବାକୁ ଲାଗିଲା । ଦୁଇଟା ଶିବିର ଚଳାଇବା ପାଇଁ ଅର୍ଥ ଓ ନେତୃତ୍ୱର ଅଭାବ । ଆମ୍ଭମାନଙ୍କ ଅପେକ୍ଷା ଆନ୍ଧ୍ରମାନଙ୍କର ଅବସ୍ଥା ସ୍ୱଚ୍ଛଳ ନଥିଲେ ମଧ ସେମାନେ ଜିଦ୍‌ରେ ପଲାଶା ସତ୍ୟାଗ୍ରହ ଚଳାଇବାକୁ ଧରି ବସିଥାନ୍ତି । ଏପରି ସମୟରେ ଶ୍ରୀ ଭି.ଭି. ଗିରି ସତ୍ୟାଗ୍ରହ କିପରି ଚାଲୁଛି ଦେଖିବାକୁ ଆସିଲେ । ପଲାସା ମଧ ଗଲେ । ସେଠାରୁ ଉଦ୍ୟୋଗ ମନ୍ଦିରକୁ ଆସି ଆମର ଶୃଙ୍ଖଳା, ସଂଗଠନ ଓ ପରିଚାଳନାରେ ସନ୍ତୁଷ୍ଟ ହୋଇ ମୋ ସହିତ ପରାମର୍ଶ କରି ପଲାସା ଶିବିର ବନ୍ଦ କରି ସମସ୍ତେ ଉଦ୍ୟୋଗ ମନ୍ଦିରରେ ଯୋଗ ଦେବାକୁ

କହିଲେ । ଅନେକ ଆନ୍ଧ୍ର ଅଶିକ୍ଷିତ କର୍ମୀ ଆସି ପହଞ୍ଚିଲେ । ସେମାନଙ୍କୁ ଚଳାଇବା ମୋ ପକ୍ଷରେ କଷ୍ଟକର । ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଓଡ଼ିଆ ଜଣା ନଥାଏ । ମତେ ତେଲୁଗୁରେ ଏଣ୍ଟୁ ମେଣ୍ଟୁ କରିବା ଆସେ ନାହିଁ । ଯାହାହେଉ ଆଉ ୨/୩ ଦଳ ସତ୍ୟାଗ୍ରହୀ ଗଞ୍ଜା ପଠା ଯାଇଥିଲେ । ଶେଷକୁ ଉଦ୍ୟୋଗ ମନ୍ଦିର ପୋଲିସ ଦ୍ୱାରା ଚଡ଼ାଉ ହେଲା । ଆମେ ସବୁ ଲୁଗାପଟା ନେଇ ଆନ୍ଧ୍ରଭାଷା ବିବର୍ଦ୍ଧିନୀ ମନ୍ଦିରରେ ଆଶ୍ରୟ ନେଲୁ । ନିରଞ୍ଜନ ବାବୁଙ୍କ ମୋ ପ୍ରତି ଆଦେଶ ଥିଲା ଯେ ମୁଁ କୌଣସି ସଭା ସମିତିରେ ଯୋଗଦେଇ ଭାଷଣ ଦେବି ନାହିଁ । ଶେଷ ପର୍ଯ୍ୟନ୍ତ କେବଳ ଅଫିସ ଓ ସତ୍ୟାଗ୍ରହ ପରିଚାଳନାରେ ଯେପରି ରହିବି । ମୁଁ ସେହିପରି ରହିଥିଲେ ମଧ ମତେ ଗ୍ରେପ୍ତାର ହୋଇଯିବା ଆଶଙ୍କା ହେଲା । ଯେ କୌଣସି ମୁହୂର୍ତ୍ତରେ ଗେପ୍ତାର ହେବାର ଆଶଙ୍କା ଥିବାରୁ ଶ୍ରୀମତୀ ସରଳା ଦେବୀଙ୍କ ଯତ୍ନରେ ଯେଉଁସବୁ ଅଳଙ୍କାର ଚାନ୍ଦା ସ୍ୱରୂପ ସଂଗୃହୀତ ହୋଇଥିଲା ତା'ର ଏକ ତାଲିକା ପ୍ରସ୍ତୁତ କରି ତିନୋଟି ନକଲ କଲି । ଗୋଟିଏ ଛୋଟିଆ ପେଡ଼ିରେ ଅଳଙ୍କାର ତକ ଓ ଗୋଟିଏ ତାଲିକା ରଖି ଚାବି ପକାଇ ରାତି ପ୍ରାୟ ୧୦ଟା ବେଳେ କୋଷାଧକ୍ଷ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀଙ୍କ ଘରକୁ ଗଲି । ଲିଙ୍ଗରାଜ ବାବୁ ମତେ ଦେଖି ଛାନିଆଁ । ମୁଁ କହିଲି, ''ଏ ଅଳଙ୍କାର ସବୁ ରଖନ୍ତୁ ଆଉ ଏ ତାଲିକା ନିଅନ୍ତୁ ।'' ସେ କହିଲେ, ''ବାଞ୍ଛାନିଧି ! ତମକୁ ନମସ୍କାର, ତମେ ଏଠାରୁ ଶୀଘ୍ର ଚାଲିଯାଅ ।'' ମୁଁ କହିଲି ''ଏ ଅଳଙ୍କାର ସବୁ ନେବି କୁଆଡ଼େ ?'' ''ବିଜିପୁର ବନ୍ଧରେ ଫିଙ୍ଗିଦିଅ'' ବୋଲି କହି ମତେ ଶୀଘ୍ର ଚାଲିଯିବାକୁ ବାଧ କଲେ । ଏତେ କଷ୍ଟ ଲବ୍‌ଧ ଧନ ଶେଷକୁ ବିଜିପୁର ବନ୍ଧକୁ ଫିଙ୍ଗାଯିବ ! ଫେରିଲି, ନିରଞ୍ଜନ ବାବୁଙ୍କ ମା'ଙ୍କ ପାଖକୁ । ତାଙ୍କର ଏକ ବଡ଼ ସିନ୍ଦୁକ ଭିତରେ ଜଉମୁଦ ଦେଇ ରଖିଲି । ତାଲିକାଟି ତାଙ୍କ ହାତରେ ଦେଇ କହିଲି ''ଅପା, ଆମେ ଯାଉଛୁ, କେବେ ଫେରିବୁ କେଜାଣି । ଫେରିଲେ ଏସବୁ ନିରଞ୍ଜନ ବାବୁଙ୍କୁ ଦେବ ।'' ସେ ଆଖିରୁ ଲୁହ ଧାର ଧାର ଗଡ଼ାଇ ମତେ ବିଦାୟ ଦେଲେ ।

ତହିଁ ଆରଦିନ, ୧୯୩୦ ଜୁନ୍ ୨୩ ତାରିଖ । ଜଣେ ସବ୍ ଇନ୍‌ସପେକ୍ଟର, ତେଲୁଗୁ ଗ୍ରାଜୁଏଟ୍, ଭଦ୍ର ଏବଂ ଶିଷ୍ଟ ଚେହେରା, ଆନ୍ଧ୍ର ଭାଷା ବିବର୍ଦ୍ଧିନୀ ମନ୍ଦିରକୁ ଆସି ମତେ ଅନୁସନ୍ଧାନ କଲେ । ମୁଁ ଭିତରେ ଥିଲି, ଆସି ଦେଖା କଲି । ସେ ମୋତେ ଭଦ୍ର ଭାବରେ ନମସ୍କାର କରି Arrest warrant ଦେଖାଇଲେ । ମୁଁ ମୋର ପରବର୍ତ୍ତୀ ଆୟୋଜନ କରିବାପାଇଁ କିଛି ସମୟ ମାଗିଲି । ସେ ମୋତେ ଅନୁମତି ଦେଲେ ଓ ପିଣ୍ଡାରେ ଅପେକ୍ଷା କଲେ । କର୍ମୀମାନଙ୍କୁ ଡାକି ମୁଁ ଯିବାପରେ କ'ଣ କ'ଣ କରିବାକୁ ହେବ ବୁଝାଇ ମୋର ଲୁଗାପଟା ଧରି ବାହାରିଲି । ସଡ଼କରେ ଗାଡ଼ି ଅପେକ୍ଷାରେ ଥିଲା । ସେଥିରେ ମତେ ଛତ୍ରପୁର ନିଆଗଲା । ରାତିରେ ପୋଲିସ୍ ହାଜତରେ । ହାଜତ ଭିତରକୁ ନେବା ପୂର୍ବରୁ ଥାନା ଅଫିସର୍ ସମସ୍ତ ବିବରଣୀ ଲେଖୁଛନ୍ତି ଇମିତି ସମୟରେ ବିନା ପୋଷାକରେ ଜଣେ କନେଷ୍ଟବଳ ଆସି ମୋ ଗାଲରେ ଏକ ଚାପୁଡ଼ା କଷିକରି

ଦେଲା । ମଦ ଗନ୍ଧ ହେଉଥାଏ । କାରଣ କ'ଣ ତାକୁ ଜଣା । ଥାନା ଅଫିସରଙ୍କ ଦୃଷ୍ଟି ଆକର୍ଷଣ କଲି । ସେ କହିଲେ "କାହିଁ, ମୁଁ କିଛି ଦେଖୁନାହିଁ ।" ବାସ୍, ସେତିକିରେ ଧନ୍ଦା ତୁଟିଲା । କେତେକ ଉଚ୍ଚ ଓ ଅଧସ୍ତନ କର୍ମଚାରୀ ସତ୍ୟାଗ୍ରହୀଙ୍କୁ ଦେଖିଲେ ତାଙ୍କର ଶତ୍ରୁ ଭାବନ୍ତି । ତାଙ୍କର ପୈତୃକ ବ୍ରିଟିଶ ସମ୍ପତ୍ତି ଆମେ ଲୁଟି ନେଉଛୁ ବୋଲି ତାଙ୍କର ଧାରଣା । ଏମାନେ ଦେଶର ଶତ୍ରୁ । ବ୍ରିଟିଶ ସରକାରଙ୍କ ପୋଷା କୁକୁର । ପରବର୍ତ୍ତୀ କାଳରେ ଭାରତ ସ୍ୱାଧୀନତା ଲାଭ କରିବା ପରେ ଏମାନେ ସ୍ୱାଧୀନ ସରକାରରେ ଉଚ୍ଚ ପଦକୁ ଉନ୍ନତ ହୋଇ ମହାସୁଖରେ କାଳାତିପାତ କଲେ । ଏତ ଗାନ୍ଧିଜୀଙ୍କ ରାମରାଜ୍ୟ । ଯେଉଁମାନେ ସତ୍ୟାଗ୍ରହୀମାନଙ୍କୁ ଲାଠିମାଡ଼ ଦେଇ ଦରମରା କରି ଦେଉଥିଲେ, ଚଳନ୍ତା ଗାଡ଼ି ଉପରୁ ବଣ ଜଙ୍ଗଲ କଣ୍ଟାବୁଦା ଉପରକୁ ଫିଙ୍ଗି ଦେଉଥିଲେ କେତେ ଅତ୍ୟାଚାର କରିଥିଲେ, ଅନ୍ୟ କୌଣସି ସରକାର ହୋଇଥିଲେ ଏମାନଙ୍କୁ ଧାଡ଼ି ଧାଡ଼ି କରି ଠିଆ କରାଇ ଗୁଳି କରାଯାଇଥାନ୍ତା ।

୧୯୩୦ ଜୁନ୍ ୨୪ରେ ଛତ୍ରପୁର ଏସ୍.ଡ଼ି.ଓ.ଙ୍କ କୋର୍ଟକୁ ପ୍ରାୟ ୧୦ଟା ବେଳେ ମତେ ନିଆଗଲା । ବିଚାରଣା ହେଲା । ମୁଁ କୌଣସି ଗୋଟିଏ ସ୍ଥଳରେ ସଭାକରି ସରକାରଙ୍କ ବିରୁଦ୍ଧରେ ପ୍ରଚାର କରୁଥିଲା ପରି ଏକ ମିଥ୍ୟା ଅଭିଯୋଗ ରୁଜୁ କରାଯାଇ ଦୁଇଜଣ କନେଷ୍ଟବଳ ଓ ଆଉ ଦୁଇଜଣ ଭଡ଼ାଟିଆ ଗ୍ରାମବାସୀ ସାକ୍ଷୀ ଦେଲେ । ମତେ ଆତ୍ମପକ୍ଷ ସମର୍ଥନ କରିବାକୁ କୁହାଗଲା । ମୁଁ ପ୍ରତିବାଦ କଲି । ଏତିକି ମାତ୍ର ଜଣାଇଲି ଯେ ମୁଁ ଉଦ୍ୟୋଗ ମନ୍ଦିରରୁ ଦଳ ଦଳ ସତ୍ୟାଗ୍ରହୀ ଆଇନ ଅମାନ୍ୟ ପାଇଁ ପଠାଉ ଥାଏ । ସଭା ସମିତି କେବେ କେଉଁଠାରେ କରିନାହିଁ କି ପ୍ରଚାର ମଧ୍ୟ କରିନାହିଁ । ଏ ମିଥ୍ୟା ଅଭିଯୋଗ କାହିଁକି କରାଗଲା । ତଥାପି ମାଜିଷ୍ଟ୍ରେଟ୍ ମତେ ଏକବର୍ଷ ସଶ୍ରମ କାରାବାସ ଆଦେଶ ଦେଲେ । ବ୍ରହ୍ମପୁର ଜେଲକୁ ଅଣାଗଲା । ଦ୍ୱାର ଖୋଲୁ ଖୋଲୁ ଦେଖିଲି ବିଶ୍ୱନାଥ ବାବୁ ମତେ ସ୍ୱାଗତ କରିବାକୁ ଆସିଛନ୍ତି । ତାଙ୍କୁ ମନେ ମନେ ଈଷତ୍ ହାସ୍ୟ ସହ ଧନ୍ୟବାଦ ଦେଲି । ଭିତରେ ସତ୍ୟାଗ୍ରହୀ ବନ୍ଧୁମାନଙ୍କ ସହ ମିଳନ ହେଲା । ମହା ଆନନ୍ଦରେ କେତେଦିନ କଟିଲା ।

ଶ୍ରୀ ଶଶୀଭୂଷଣ ରଥ ଏକ ସ୍ୱତନ୍ତ୍ର ବଖରାରେ ଥାନ୍ତି । ବିଶ୍ୱନାଥ ବାବୁ ମଧ୍ୟ ସେହିପରି ଅନ୍ୟ ଏକ ଘରେ । ସେତେବେଳେକୁ ଦିବାକର ବାବୁ, ବନମାଳୀ ବାବୁ, ପରଶୁରାମ ବାବୁ, ଶ୍ରୀମତୀ ସରଳା ଦେବୀ ପ୍ରଭୃତି ଭେଲୋର ଜେଲକୁ ବଦଳି ହୋଇ ଯାଇଥାନ୍ତି । ଶଶୀଭୂଷଣବାବୁ ପ୍ରଥମେ ପ୍ରଥମେ ମକଦ୍ଦମା ଲଢ଼ିବାପାଇଁ ଇଚ୍ଛା କରିଥିଲେ । କିନ୍ତୁ ପରେ ସେଥିରୁ ବିରତ ହେଲେ । ପରିସ୍ଥିତି ସହ ନିଜକୁ ମିଳାଇ ଆନନ୍ଦରେ ରହିଲେ । ମୁଁ କେବେ ତାଙ୍କ ସହିତ ଏକାଠି ରହିବା ସୁଯୋଗ ପାଇ ନଥିଲି । ମତେ ବଡ଼ ଭଲପାନ୍ତି । କେତେ କଉତୁକିଆ କଥା କହନ୍ତି । ତକଲିରେ ସୂତା କାଟିବା

ଶିଖେଇବାକୁ ମତେ କହିଲେ । ମୁଁ ଶିଖାଇଲି । ତମେ ମୋର ଗୁରୁ ହେଲ ବୋଲି କହିଲେ । ଛୋଟ ବଡ଼ ସମସ୍ତ ସତ୍ୟାଗ୍ରହୀଙ୍କୁ ମୁଁ ଆଦରରେ ରଖିବା ଦେଖି ମତେ ବଡ଼ ପ୍ରଶଂସା କରନ୍ତି । ଏ ମଧ୍ୟରେ ଆମେ କେତେ ଜଣଙ୍କୁ ତ୍ରିଚିନ୍ନାପଲ୍ଲୀ ଜେଲକୁ ବଦଳି ହେବା ଆଦେଶ ଆସିଲା । ବିଦାୟ ନେଇ ଆସିଲା ବେଳେ ସେ ମୋତେ ଲେଉଟିଆ ଚକୁଳି ପିଠା ଖାଇବାକୁ ଦେଇ ବିଦାୟ ଦେଇଥିଲେ ।

ତ୍ରିଚିନ୍ନା ପଲ୍ଲୀ ବାହାରିଲୁ, ଟ୍ରେନ୍‌ରେ ରାତି ଦିନ ମିଶି ତିନିଦିନର ବାଟ । ୧୯୨୨ରେ ଦକ୍ଷିଣ ଆରକାଟ ଜିଲ୍ଲା କାଡ଼ାଲୋର ଜେଲରେ ଥିଲୁ । ଏବେ ତାଠାରୁ ଆହୁରି ଦକ୍ଷିଣକୁ ତ୍ରିଚିନ୍ନାପଲ୍ଲୀ ଜିଲ୍ଲା । ତ୍ରିଚିନ୍ନାପଲ୍ଲୀ ଜେଲରେ ମାନ୍ଦ୍ରାଜ ପ୍ରଦେଶର ବିଭିନ୍ନ ଜିଲ୍ଲାରୁ ରାଜନୈତିକ ବନ୍ଦୀମାନଙ୍କୁ ଠୁଳ କରାଯାଇଥିଲା । ଆନ୍ଧ୍ର, ତାମିଲ, କେରଳ ଓ କର୍ଣ୍ଣାଟକ ଭାଷାଭାଷୀଙ୍କ ସହ ମିଳନ ଓ ଭାବର ଆଦାନ ପ୍ରଦାନ ଦ୍ୱାରା ଅତିଶୟ ଆନନ୍ଦ ଉପଭୋଗ ହୋଇଥାଏ । କର୍ଣ୍ଣାଟକରୁ ଓ ସୁଦୂର ବମ୍ବେ ଉପକୂଳରୁ ବହୁ ମହାରାଷ୍ଟ୍ରୀ ମଧ୍ୟ ଆସିଥିଲେ । ସେମାନଙ୍କର ଦେଶ ପ୍ରେମ, ଚାଲି ଚଳଣି ଓ ବ୍ୟବହାର ଦ୍ୱାରା ଆମ୍ଭେମାନେ ଅନୁପ୍ରାଣିତ ହୋଇଥାଉ ।

ମାସେ ଦି' ମାସ ପରେ ଆମ୍ଭମାନଙ୍କୁ ବେଲାରୀ କ୍ୟାମ୍ପ ଜେଲକୁ ବଦଳି କରାଗଲା । ଆମ ଗଞ୍ଜାମକୁ ନେଇ ଆନ୍ଧ୍ରମାନଙ୍କର ଯେପରି ଦାବୀ, ବେଲାରୀକୁ ନେଇ ସେହିପରି ଆନ୍ଧ୍ର ଓ କର୍ଣ୍ଣାଟକମାନଙ୍କ ମଧ୍ୟରେ ବିବାଦ । ତେଣେ ତାମିଲର କେତେକାଂଶ ଆନ୍ଧ୍ରମାନେ ନିଜର ବୋଲି ଦାବୀ କରନ୍ତି । ଫଳରେ ସେମାନେ ଓଡ଼ିଆ, କର୍ଣ୍ଣାଟକ ଓ ତାମିଲଙ୍କ ସହିତ ଏହି ଭାଷାଗତ ଅଞ୍ଚଳ ବଣ୍ଟନ ନେଇ ସର୍ବଦା ବିବାଦ ଲିପ୍ତ ।

ବେଲାରୀ କ୍ୟାମ୍ପ ଜେଲ ଏକ ବିଶାଳ ଜେଲ । ଏହାର ପକ୍କା ପ୍ରାଚୀର ନାହିଁ । ଚତୁର୍ଦ୍ଦିଗରେ କେବଳ ତାର ବାଡ଼ । ବାହାରର ପ୍ରାକୃତିକ ଦୃଶ୍ୟ ସବୁବେଳେ ଆଖିରେ ପଡ଼େ । ଜେଲ କୋଠରୀଗୁଡ଼ିକ ଗୋଟିଏ ଗୋଟିଏ ବଡ଼ ହଲ୍ । ପ୍ରତ୍ୟେକ ହଲ୍‌ରେ ପ୍ରାୟ ୩୦୦/୪୦୦ ଯାଏ ବନ୍ଦୀ ରହିପାରନ୍ତି । କେରଳର ମୋପଲ ବିଦ୍ରୋହୀମାନଙ୍କୁ ଏହି ଜେଲରେ ଅଟକ ରଖାଯାଇଥିଲା । ସେଥିରୁ ଅନେକ ଆମେ ଯିବାବେଳକୁ ଖଲାସ ହୋଇ ସାରିଥିଲେ । ଆହୁରି ଅନେକ ଥାନ୍ତି । ସେମାନେ ମୁସଲମାନ ଓ ବଡ଼ ଦୁର୍ଦ୍ଧର୍ଷ । ସେମାନେ କେବେ ଗାଧୁଅନ୍ତି ନାହିଁ । ସେମାନଙ୍କ ଲୁଗାପଟାରେ ଏକ ପ୍ରକାର ଲୁଗା ଉକୁଣି ଥାନ୍ତି । ସେଗୁଡ଼ାକ ସୂତାପରି ସରୁ ଓ ଧଳା, ଏକ ପ୍ରକାର କୀଟ । ସେଗୁଡ଼ାକ ଆମ ଲୁଗାପଟାକୁ ସଞ୍ଚରି ଯୋଉ କାମୁଡ଼ା କାମୁଡ଼ନ୍ତି କହିବାକୁ ନାହିଁ । ଯେତେ ସିଝାଇ, ସଫାକରି ଖରାରେ ପକାଇଲେ ମଧ୍ୟ ସେମାନେ ମରନ୍ତି ନାହିଁ । ସେଗୁଡ଼ିକ ଗୋଟିଏ ଆଙ୍ଗୁଳର ଚଉଠେ ଲମ୍ବ ସୁତାପରି ଧଳା । ସେମାନଙ୍କ ଅନ୍ୟାନ୍ୟ ଇନ୍ଦ୍ରିୟ ସବୁ କିମିତି କେଉଁଠି ସେ ସରୁ ଦେହରେ ଥାଏ, ପ୍ରାଣ କେଉଁଠାରେ ଥାଏ କେଜାଣି । ଏତେ ପ୍ରକାର

ସିଝାସିଝି, କଚାକଚି କଲେ ମଧ୍ଯ ସେମାନଙ୍କର ପ୍ରାଣ ଯାଏ ନାହିଁ । H.H. Wilsonଙ୍କ ଭାଷାରେ "ଧାତୁର୍ଦୟ ଦୁର୍ବଳେ ।" ତା ସାଙ୍ଗକୁ ଓଡ଼ିଶ, କାଛ ମାନଙ୍କର ଧାଡ଼ି ବାନ୍ଧି ଦଗ ଦଗ ଆସି ରାତିରେ ଆଉ ଶୁଆଇ ଦିଅନ୍ତି ନାହିଁ । ଆମକୁ ଖାଇବା ସକାଶେ ଯେଉଁ ଥାଳି ଦିଆଯାଇଥାଏ, ସେଥିରେ ପାଣି ଭରତି କରି ଓଡ଼ିଶଗୁଡ଼ିକୁ ଧରି ସେ ପାଣି ଭିତରେ ଅହିଂସ ପ୍ରଣାଳୀରେ ଛାଡୁ । ପ୍ରତ୍ୟେକେ ସକାଳୁ ପ୍ରାୟ ସୋଲେ ସୋଲେ ଓଡ଼ିଶ ପଦାରେ ନେଇ ପକାଉ । ଯେଉଁ କମ୍ବଳ ଓ କଡା ଦଉଡ଼ିର ପଟି ଦିଆଯାଇଥାଏ ସେଗୁଡ଼ିକ ଓଡ଼ିଶାପାଇଁ ନିରାପଦ ଘର । କେତେ ଝଡ଼ାଝଡ଼ି ବାଡ଼ିଆ ପିଟା କଲେ ମଧ୍ଯ ସେଥିରୁ ଆଉ ସେମାନେ ଛାଡ଼ନ୍ତି ନାହିଁ । ଗୋଟିଏ ଗୋଟିଏ ହଲରେ କେବଳ ଚାରୋଟି ଲେଖାଏ seat ଥିବା ପାଇଖାନା । ରାତିରେ ଝାଡ଼ା ମାଡ଼ିଲେ ସେଥିରେ ବସିବାକୁ ପଡ଼େ । ପାହାନ୍ତିଆରୁ ଦେଖିବ ସେଠାରେ ଭିଡ଼ । ପାଣି ମଗ ମଗ ଧରି ପେଲା ଠେଲା ହୋଇ ଜଣେ ଉଠିବା ମାତ୍ରେ ଆଉ ଜଣେ ବସିବାପାଇଁ ସଂଘର୍ଷ । ଅନ୍ଧିଆ କେତେ ଠିକ୍ ତଳେ ବସି ପଡ଼ନ୍ତି । ଉପରେ ବସିଥିବା ଲୋକଙ୍କ ପରିସ୍ରା ସେମାନଙ୍କ ଉପରେ ପଡ଼େ । ହେଲେ କ'ଣ ହେବ ଝାଡ଼ା ବେଗ ସମ୍ଭାଳି ପାରିଲେତ । ସକାଳେ କବାଟ ଖୋଲା ହେବାମାତ୍ରେ ଧାଡ଼ି ଧାଡ଼ି ପାଇଖାନା ପୂର୍ଣ୍ଣ ହୋଇଯାଏ । ତେଲଙ୍ଗାମାନେ ଏତେ ରାଗ ଖାନ୍ତି ଯେ ସମସ୍ତଙ୍କର ପ୍ରାୟ ଅର୍ଶ ରୋଗ । ପାଇଖାନାରେ ଦେଖିବ ପ୍ରାୟ ପ୍ରତ୍ୟେକ seatରେ ମେଞ୍ଚା ମେଞ୍ଚା ରକ୍ତ ।

## ପୁଣି ସଂସ୍କୃତ ଅଧ୍ୟୟନ

୧୯୨୨-୨୩ରେ କାଦାଲୋର ଜେଲରେ ଯାହା ସଂସ୍କୃତ ପଢ଼ିଥିଲି । କେଲଗୁଣ୍ଡା ଜାତୀୟ ବିଦ୍ୟାଳୟରେ ପିଲାଙ୍କୁ ସଂସ୍କୃତ ପଢ଼ାଇବା ବେଳେ କିଛି ଅଧିକ ଅଭ୍ୟାସ ହୋଇଥିଲା । ତାପରେ ନାନା କାର୍ଯ୍ୟରେ ବ୍ୟସ୍ତ ରହି ଆଉ ପଢ଼ାପଢ଼ି କରିପାରି ନଥିଲି । ଏଠାରେ ପୁଣି ଆରମ୍ଭ କରିବାପାଇଁ ସଂସ୍କୃତ ଅଧ୍ୟାପକ ଅନୁସନ୍ଧାନ କଲି । ଜଣେ ତେଲୁଗୁ ସଂସ୍କୃତ ପଣ୍ଡିତଙ୍କୁ ପାଇଲି । ତାଙ୍କର ଘର ସଂଜ୍ଞା ହେଉଛି ମଲ୍ଲାବଧାନୀ । ତାଙ୍କ ବଂଶରେ ଶତାବଧାନୀ, ଅଷ୍ଟାବଧାନୀ ପ୍ରଭୃତି ଥିଲେ । ଏ ମଧ୍ଯ ଅଷ୍ଟାବଧାନ କରିବା ଜାଣନ୍ତି । ତାଙ୍କୁ କାରାବାସୀ ବନ୍ଧୁମାନେ ଅନୁରୋଧ କରିବାରୁ ସେ ଦିନେ ଅଷ୍ଟାବଧାନ ଦେଖାଇଲେ । ଏକ ସମୟରେ ଆଠଟି କାମ କରିବେ । ଜଣେ କହିଲେ ଅମୁକ ଛନ୍ଦରେ ଅମୁକ ଭାବ ଥାଇ ଏକ କବିତା ରଚନା କରିବାକୁ ହେବ । (ମଲ୍ଲାବଧାନୀ ଜଣେ ଆଶୁ କବି) । ଅନ୍ୟଜଣେ ଗୋଟିଏ ଗଳ୍ପ କହିବାକୁ କହିଲେ । ଅନ୍ୟଜଣେ କେବଳ ହାସ୍ୟରସ କଥା କହିବାପାଇଁ ବରାଦ କଲେ । କେହି ତାଙ୍କ

ହାତରେ ଗୋଟିଏ ଗୋଟିଏ ଗୋଡ଼ି ଦେଉଥାନ୍ତି । ଆଉ କେହି ତାଙ୍କ ପିଠିରେ ଏକ ଦୁଇ କରି ଆଘାତ ଦେଉଥାନ୍ତି ଇତ୍ୟାଦି । ଏହିପରି ଏକ ସମୟରେ ଆଠଟି କାମ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ସମ୍ପନ୍ନ କରିବେ । ଶେଷରେ କବିତା ରଚନା ପୂର୍ଣ୍ଣ ହୋଇଛି । ଗଳ୍ପ ସରିଛି । ପ୍ରଶ୍ନମାନଙ୍କର ଉତ୍ତର ଦିଆଯାଇଛି । ହାତରେ କେତେ ଗୋଡ଼ି ଓ ପିଠିରେ କେତେ ଆଘାତ ହୋଇଛି ଏହିପରି ଆଠଟି କାମଶେଷ କରିବାକୁ ତାଙ୍କୁ ଦୁଇଘଣ୍ଟା କାଳ ଲାଗିଥିଲା । ଏକାଗ୍ର ଭାବରେ ଏତେ ମାନସିକ ପରିଶ୍ରମ କରିବା ଫଳରେ ସେ ଆଠ ଦଶ ଦିନଯାଏ ଜ୍ୱରରେ ପୀଡ଼ିତ ହୋଇଥିଲେ ।

ଏହିପରି ଏତେ ଗୁଣ ସମ୍ପନ୍ନ ଶିକ୍ଷକଙ୍କୁ ପାଇ ମୁଁ ନିଜକୁ ଧନ୍ୟ ମନେ କଲି । ତାଙ୍କୁ ନିଜ ମାତୃଭାଷା ତେଲୁଗୁ ଏବଂ ସଂସ୍କୃତ ଛଡ଼ା ଅନ୍ୟ ଭାଷା ଜଣା ନଥାଏ । ମତେତ ତେଲୁଗୁ ଆସେ ନାହିଁ । ଅତଏବ ସରଳ ସଂସ୍କୃତରେ ବୁଝାଇବେ ବୋଲି ଠିକ୍ ହେଲା । ହେଲେ ଖାଲି ପାଠପଢ଼ା ସିନା ହେବ । ଆଉ ପରସ୍ପର ମଧ୍ୟରେ ଭଲମନ୍ଦ କଥାବାର୍ତ୍ତା ହେବନାହିଁ । ବଡ଼ ଅସୁବିଧା ବୋଧ ହେବ ବୋଲି ସେ ପ୍ରକାଶ କଲେ । ମୁଁ କହିଲି ସଂସ୍କୃତରେ କଥା ହେବା । ସେ ମଧ୍ୟ ସଂସ୍କୃତରେ କଥାଭାଷା କରିପାରୁ ନଥିଲେ । ଉଭୟେ ସ୍ଥିର କଲୁ ଭୁଲ ଭାଲ ଯାହା ହେବ ହେଉ ପଛକେ ସଂସ୍କୃତରେ ଭାବ ଆଦାନ ପ୍ରଦାନ କରିବା । ଏଥିରେ ରଘୁବଂଶ, ମେଘଦୂତ, କୁମାରସମ୍ଭବ ଓ ଦଶକୁମାର ଚରିତରୁ କିଛି କିଛି ପଢ଼ା ହୋଇଥିଲା ।

ଜଣେ ତେଲୁଗୁ ଭଦ୍ରବ୍ୟକ୍ତି ''ବାଂଲାୟ ବିପ୍ଳବ ବାଦ'' ଅନୁବାଦ କରୁଥାନ୍ତି । ତାଙ୍କୁ ବଙ୍ଗଳା ଭାଷା ଭଲ ଜଣା ନଥାଏ । ମୋର ସାହାଯ୍ୟ ଲୋଡ଼ିଲେ । ସେ କିନ୍ତୁ ହିନ୍ଦୀ ଭଲ ଜାଣନ୍ତି । ମୁଁ ତାଙ୍କୁ ହିନ୍ଦୀରେ ଅନୁବାଦ କରି କହେ । ସେ ତେଲୁଗୁରେ ଲେଖନ୍ତି ।

ହରିବନ୍ଧୁ ଖାଡ଼ଙ୍ଗା ମୋ ସାଙ୍ଗରେ ଥାନ୍ତି । ଆମେ ଦୁହେଁ ତିଳକଙ୍କ ''ଗୀତା ରହସ୍ୟ'' ନିୟମିତ ପଢ଼ୁଁ । ମୁଁ ପଢ଼େ, ସେ ଶୁଣନ୍ତି । ଓ୍ୱାର୍ଡ଼ରମାନଙ୍କ ଦ୍ୱାରା ବଜାରରୁ ଗୁଡ଼ କିଣାହୋଇ ଆସିଥାଏ । ସେ ଶୁଣୁ ଶୁଣୁ ଗୁଡ଼ ଟେଳାଏ ଲେଖା ପାଟିରେ ପକାଉଥାନ୍ତି ।

## ଆମିଷ ଭକ୍ଷଣ

ମୋର ମୁହଁବୁଲା ରୋଗ ଥାଏ । ଡାକ୍ତରମାନେ ପରୀକ୍ଷା କରି କାରଣ କିଛି ଧରି ପାରିଲେ ନାହିଁ । କହିଲେ ଦୁର୍ବଳତା ଯୋଗୁଁ ହେଉଛି । ଭଲ ଖାଦ୍ୟ ଖାଇବାକୁ ହେବ । ଡାକ୍ତର, ମାଂସ ଅଣ୍ଡା ଦୁଧ ମଞ୍ଜୁର କଲେ । ମୁଁ ତ ୧୯୧୬ରୁ ଆମିଷ ତ୍ୟାଗ କରିଛି, ମୁଁ କାଳେ ମନା କରିଦେଇ ପାରେ ସେଥିପାଇଁ ହରିବନ୍ଧୁ ବାବୁ ମୋ ପଛପଟେ

ଥାଇ ଆଙ୍ଗୁଠି ମାରି ଇଙ୍ଗିତ ଦେଲେ ଯେ, ମନାକର ନାହିଁ। ତୁମେ ନ ଖାଇଲେ ମୁଁ ଖାଇବି। ମଞ୍ଜୁର ହେଲା। ପ୍ରତିଦିନ ମିଳିଲା। ହରିବନ୍ଧୁ ବାବୁ ଖା'ନ୍ତି। ମୋ ନାଁରେ ଆସୁଛି, ସେ ଖାଉଛନ୍ତି ଏକଥା ତାଙ୍କୁ କିମିତି କିମିତି ଲାଗିଲା ସେ ମୋ ଆଗରେ ଯୁକ୍ତି ବାଢ଼ିଲେ, ଏଥିରେ କିଛି ସାର ନଥିଲେ ଡାକ୍ତରେ କାହିଁକି ମଞ୍ଜୁର କରିଥାନ୍ତେ ଇତ୍ୟାଦି। ୧୨ କାହିଁକି ୧୫ ବର୍ଷର ତପସ୍ୟା ମାଂସ, ଅଣ୍ଡାରେ ଗଲା। ତାଙ୍କରି କଥା ରହିଲା। ଉଭୟେ ବାଣ୍ଟି କରି ଖାଇଲୁ।

## ମନ୍ଦା ମନେ ପଡ଼ିଲା

ଦିନକର ଘଟଣା, ବସି ପଢ଼ାପଢ଼ି କରୁଛି ମୋର ଦୁଇ ବର୍ଷର ଝିଅ ମନ୍ଦାକିନୀ କଥା ମନେ ପଡ଼ିଗଲା। ଆଖିରୁ ଲୁହ ଧାର ଧାର ବହିବାକୁ ଲାଗିଲା। କୋହ ସମ୍ଭାଳି ହେଲାନାହିଁ। ସାଙ୍ଗସାଥୀ ମାନେ ଦେଖିଲେ କ'ଣ କହିବେ ? ସେମାନଙ୍କ ଠାରୁ ଅନ୍ତର ହେବାପାଇଁ ପଦାକୁ ବାହାରି ଗଲି। ଅଧିକ କୋହ ଉଠିଲା। କିଏ କାଳେ ଦେଖି ପକାଇବ ବୋଲି ଖଣ୍ଡେ ଦୂର ଯାଇ ପରିସ୍ରା କରି ବସିଲି। ଉଠି ଏଣେତେଣେ ବୁଲାବୁଲି କରି ବଡ଼ କଷ୍ଟରେ ମନକୁ ବନ୍ଦଲାଇ ଆସିଲି। ପ୍ରଥମ ସନ୍ତାନ ଦୁଇବର୍ଷ ପୂର୍ଣ୍ଣ ହୋଇ ନାହିଁ। ସନ୍ତାନ ବାତ୍ସଲ୍ୟ ପ୍ରେମଠାରୁ ଦେଶପ୍ରେମ ବଳି ପଡ଼ିଥିଲା। ଘରଦ୍ୱାର ଏମନ୍ତକି ଏ ଛୋଟ ପିଲାଟି ପ୍ରତି ମୋହ ମମତା ତ୍ୟାଗ କରି ପଳେଇ ଆସିଲି। କେତେ କର୍ମୀ ଲାଠି ମାଡ଼ରେ କିଏ ଗୁଳି ମାଡ଼ରେ ପ୍ରାଣ ହରାଇଛନ୍ତି। ମୋ ପକ୍ଷରେ ସେପରି କିଛି ଘଟିଥିଲେ ତ ଶେଷ ବିଦାୟ ହୋଇଥାନ୍ତା।

## ଜେଲ କର୍ମଚାରୀଙ୍କ ସହ ସଂଘର୍ଷ

ବେଲାରୀ ଜେଲକୁ ଏକ ସମୟରେ ବିଭିନ୍ନ ଜିଲ୍ଲାରୁ ପ୍ରାୟ ସମସ୍ତ ରାଜନୈତିକ ବନ୍ଦୀମାନଙ୍କୁ ଅଣାଯାଇଥିଲା। ସେଠାରେ ଜଣେ ଅବସରପ୍ରାପ୍ତ ସାମରିକ କର୍ମଚାରୀ ଅଂଗ୍ରେଜୀ ଲୋକ ସୁପରିଣ୍ଟେଣ୍ଡେଣ୍ଟ ଥିଲେ। ସେ ବନ୍ଦୀମାନଙ୍କୁ ସେମାନେ ଆଣିଥିବା ବହି ପତ୍ର ଦେଲେ ନାହିଁ। ଜେଲ ଭିତରେ ପୁସ୍ତକ ପଢ଼ିବା ଏକମାତ୍ର ସାନ୍ତ୍ୱନା। ସମସ୍ତେ ପ୍ରାୟ ଛଟପଟ ହୋଇପଡ଼ି ରହିଲେ। ପ୍ରଥମ ସୋମବାର ବନ୍ଦୀମାନେ ଧାଡ଼ି ଧାଡ଼ି ହୋଇ ଠିଆ ହେଲେ। ଡାକ୍ତର, ସୁପରିଣ୍ଟେଣ୍ଡେଣ୍ଟ ବନ୍ଦୀମାନଙ୍କୁ ପରିଦର୍ଶନ କରି କାହାର କ'ଣ ଅସୁବିଧା ବୁଝିବାକୁ ଆସିଲେ। ଆମ ଭିତରୁ ଜଣେ ତେଲୁଗୁ ବନ୍ଦୀ କେବଳ ଫଳାହାରୀ ଥିଲେ। ତାଙ୍କୁ ଅନ୍ୟ ଜେଲରେ ଫଳ ଦିଆଯାଉଥିଲା। ଏଠାରେ ଆଉ ଦିଆଗଲା ନାହିଁ। ସେ ଏକ

ସପ୍ତାହ ହେଲା କିଛି ନ ଖାଇ ଭୋକରେ ଅଛନ୍ତି । ଧାଡ଼ିରେ ଥିବା ସମସ୍ତ ବନ୍ଦୀ ନିଜ ନିଜର ସୁବିଧା ଅସୁବିଧା କଥା ନ କହି ସେଇ ଜଣକୁ ଫଳ ଦେବାପାଇଁ ଦାବୀ କଲେ । ସୁପରିଣ୍ଟେଣ୍ଡେଣ୍ଟ୍ କେବଳ ନିଜ ନିଜର କଥା କହିବାକୁ କହିଲେ । କେହି ସେଥିରେ କର୍ଣ୍ଣପାତ ନ କରି କେବଳ ସେଇକଥା ଧରି ବସିଲେ । ଏପରି ହେଉ ହେଉ କେହି କେହି ସୁପରିଣ୍ଟେଣ୍ଡେଣ୍ଟଙ୍କ ସହ ବଚସା ଆରମ୍ଭ କଲେ । ଦେଖୁଁ ଦେଖୁଁ ତୁମୁଳ ଗଣ୍ଡଗୋଳ ହେଲା । ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଉତ୍ତମ ମଧ୍ୟମ ବିଧା ଚାପୁଡ଼ା ହୋଇଗଲା । ୱାର୍ଡ଼ର ମାନଙ୍କ ଘେରରେ ଡାକ୍ତର, ସୁପରିଣ୍ଟେଣ୍ଡେଣ୍ଟ ଓ ଜେଲର ରହିଲେ । ଆମ୍ଭମାନଙ୍କ ଘେରରେ ଉତ୍ପାତକାରୀମାନେ ରହିଲେ । ଶେଷକୁ ସ୍ୱାସ୍ଥ୍ୟ କାରଣରୁ ତାଙ୍କୁ ଫଳ ମଞ୍ଜୁର ହେଲା । ସେଦିନ ସମସ୍ତଙ୍କୁ ବହିପତ୍ର ଦିଆଗଲା । ଆଉ ସୋମବାର ଫାଇଲ୍ ହେଲା ନାହିଁ । ଖଲାସ ହେବାଯାଏଁ ଆଉ ସୁପରିଣ୍ଟେଣ୍ଡେଣ୍ଟ୍ ରାଜନୈତିକ ବନ୍ଦୀମାନଙ୍କ ଫାଇଲ୍‌କୁ ଆସିଲେ ନାହିଁ । ଗାନ୍ଧୀ ଇରୱିନ୍ ଚୁକ୍ତି ପ୍ରକାରେ ଯେଉଁଦିନ ଆମେ ସମସ୍ତଙ୍କୁ ଖଲାସ କରିବା କଥା ସେହିଦିନ ସୁପରିଣ୍ଟେଣ୍ଡେଣ୍ଟ ଆସି ଏକ ସୁନ୍ଦର ଭାଷଣ ଦେଇ ଆମକୁ ତୃପ୍ତ କଲେ । ଆମେ ସବୁ ଖଲାସ ହେଲୁ ୧୯୩୦ ନଭେମ୍ବର ମାସରେ ।

ସେହିବର୍ଷ ପୁରୀରେ ଭାରତ ଜାତୀୟ କଂଗ୍ରେସ ଅଧିବେଶନ କରିବା ଉଦ୍ୟମ । ପଣ୍ଡିତ ନୀଳକଣ୍ଠ ଦାଶ ଅଭ୍ୟର୍ଥନା ସମିତିର ସଭାପତି । ଶ୍ରୀ ଗୋପବନ୍ଧୁ ଚୌଧୁରୀ ସମ୍ପାଦକ । ଶ୍ରୀ ହରେକୃଷ୍ଣ ମହତାବ ସ୍ୱେଚ୍ଛାସେବକ ବାହିନୀର ସେନାପତି । ଗାନ୍ଧୀ ଇରୱିନ୍ ଚୁକ୍ତି ହେବାରେ ସର୍ବସାଧାରଣଙ୍କ ମନରେ ନାନା ଆଶା ଓ ଉତ୍ସାହ ଖେଳିଗଲା । ଯେଉଁମାନେ କଂଗ୍ରେସ ପାଖ ମାଡୁ ନଥିଲେ ସେହିପରି ଅନେକ ଲୋକ କଂଗ୍ରେସ ଭିତରେ ପଶି ଉଚ୍ଚତମ ଆସନ ମାଡ଼ି ବସିବାକୁ ଲାଗିଲେ । ଆମ ଗଞ୍ଜାମ ଜିଲ୍ଲା କଂଗ୍ରେସର ସଭାପତି ହେଲେ ଶ୍ରୀ ଶଶୀଭୂଷଣ ରଥ । ପୁରୀ କଂଗ୍ରେସ ଅଧିବେଶନର ଅଭ୍ୟର୍ଥନା ସମିତିର ସଂପାଦକ ହେବାପାଇଁ ମଧ ବହୁ ଯତ୍ନ କରିଥିଲେ । ଶ୍ରୀ ଦିବାକର ପଟ୍ଟନାୟକ, ଶ୍ରୀ ଆନନ୍ଦ ଦାସ ଓ ମୁଁ ଜିଲ୍ଲା କଂଗ୍ରେସ କମିଟୀର ସଂପାଦକ ହେଲୁ । କେତେ ସଭା ସମିତି ହେଲା । କଂଗ୍ରେସ ପାଇଁ ଚାନ୍ଦା ସଂଗ୍ରହ, ସ୍ୱେଚ୍ଛାସେବକ ଦଳ ତାଲିମ ବ୍ୟବସ୍ଥା ହେଲା । ଡାକ୍ତର ହରଡ଼ିକାରଙ୍କ ସଙ୍ଗଠିତ ସେବା ଦଳରୁ କେତେ ଜଣ ସେବକ ଓ ସେବିକା ଆସି ତାଲିମ ଦେଲେ । ଶ୍ରୀ ରୁଦ୍ରାପ୍ପା ମାଲ୍ଲାପ୍ପା ବବଲେଶ୍ୱର୍ ବ୍ରହ୍ମପୁର ସ୍ୱେଚ୍ଛାସେବକ ତାଲିମ ଶିବିରକୁ ଶିକ୍ଷାଦାତା ରୂପେ ଆସିଲେ । ବାଲିପଦରରେ ଆମ୍ଭେମାନେ କଂଗ୍ରେସ ଶିବିର ସ୍ଥାପନ କରିଥିଲୁ । ଶ୍ରୀ ବନମାଳୀ ମହାରଣା ଓ ମଦନ ମୋହନ ପଟ୍ଟନାୟକ ପୁରୀରେ ତାଲିମପ୍ରାପ୍ତ ହୋଇ ଆସିଥିଲେ । ଶ୍ରୀ ବନମାଳୀ ମହାରଣା ବାଲିପଦର ତାଲିମ କେନ୍ଦ୍ରର ଶିକ୍ଷା ଭାର ନେଲେ । ମହିଳା ତାଲିମ କେନ୍ଦ୍ରରେ ପ୍ରଶିକ୍ଷଣ ଲାଭ କରିବାପାଇଁ ମୋର ସ୍ତ୍ରୀ କୁନ୍ଦଲତାକୁ ପୁରୀ ପଠାଯାଇଥିଲା । ଆଉ

କେତେଜଣ ମହିଳା ଗଞ୍ଜାମରୁ ଯାଇଥିଲେ । ମହାତ୍ମାଗାନ୍ଧୀ ଗୋଲଟେବୁଲ ବୈଠକରେ ଯୋଗ ଦେବାପାଇଁ ଲଣ୍ଡନ ଯାଇଥିଲେ । ଦେଶରେ ନବ ଉତ୍ସାହ ନବ ଉନ୍ମାଦନା ।

## ମୋର କରଣ କାମ

ଗାନ୍ଧୀ ଇର୍‌ୱିନ୍ ଚୁକ୍ତି ପ୍ରକାରେ ଇସ୍ତଫା ଦେଇ ଆନ୍ଦୋଳନରେ ଯୋଗ ଦେଇଥିବା କର୍ମଚାରୀମାନଙ୍କୁ ପୁନର୍ନିଯୁକ୍ତି କରାଯିବା ଫଳରେ ସର୍ବସାଧାରଣଙ୍କ କଂଗ୍ରେସ୍ ପ୍ରତି ଆସ୍ଥା ବଢ଼ିଯାଇଥିଲା । ମୋର ମଧ କରଣ କାମରେ ପୁନର୍ନିଯୁକ୍ତି ଆଦେଶ ହୋଇଥିଲା । ଗୋଲଟେବୁଲ୍ ବୈଠକରୁ ଫେରୁ ଫେରୁ ବମ୍ବେଇ ଠାରେ ମହାତ୍ମାଗାନ୍ଧୀଙ୍କୁ ଗ୍ରେପ୍ତାର କରାଗଲା । ସରକାର ଚୁକ୍ତି ଭଙ୍ଗକରି ବଡ଼ ବଡ଼ ନେତାମାନଙ୍କୁ ଆଗ ଧରି ନେଲେ । ସମସ୍ତ କଂଗ୍ରେସ ଅନୁଷ୍ଠାନ ବେଆଇନ ଘୋଷିତ ହେଲା । ପୁରୀ ସେବାଦଳ ଶିବିର ଭାଙ୍ଗିଲା । ମହିଳାମାନଙ୍କୁ ନିଜ ନିଜ ଘରକୁ ପଠାଇ ଦିଆଗଲା । ମୋର ସ୍ତ୍ରୀ ମଧ ଜଣେ ସ୍ୱେଚ୍ଛାସେବକଙ୍କ ସାଙ୍ଗରେ ଆସି ଇଚ୍ଛାପୁରରେ ପହଞ୍ଚିଲେ । ଯାହାହେଉ ଏହି କିଛିଦିନ ତାଲିମ ହେବା ଫଳରେ ତାଙ୍କ ସ୍ୱାସ୍ଥ୍ୟରେ ଘୋର ପରିବର୍ତ୍ତନ ଆସିଥିଲା । ଅଳ୍ପ ଦିନ ତାଲିମରେ ମଧ ସେ ସତେଜ ଏବଂ ଅପେକ୍ଷାକୃତ ସୁସ୍ଥ ସବଳ ହୋଇପାରିଥିଲେ । କି ସ୍ତ୍ରୀ କି ପୁରୁଷ ସମସ୍ତେ ଯଦି ଏହିପରି କୁସ୍ତି କସରତ, ନିୟମିତ ଭୋଜନ, ନିଦ୍ରା କରି ଶୃଙ୍ଖଳିତ ଜୀବନ ଅବଲମ୍ବନ କରିବାରେ ତାଲିମପ୍ରାପ୍ତ ହୁଅନ୍ତେ ତେବେ ଦେଶର ପ୍ରକୃତ ଉନ୍ନତି ସାଧିତ ହୋଇପାରନ୍ତା ।

୧୯୩୧ ଡିସେମ୍ବର ୨୯ ତାରିଖରେ କରଣ କାମରେ ପୁନର୍ନିଯୁକ୍ତି ଆଦେଶ ପାଇଲି । ଆର୍.ଡ଼ି.ଓ ନିଜେ ଆସି ଗୋବରାଠାରେ କରଣ କାମ ଗ୍ରହଣ କରିବାକୁ ପ୍ରବର୍ତ୍ତାଇଲେ । ''ହଉ, ଦେଖିବା'' ବୋଲି କହିଲି । ୧୯୩୬ ଜାନୁଆରୀ ୭ରେ ପୁରୀ ଯାଇ ସେବାଦଳ ତାଲିମ କେନ୍ଦ୍ରରୁ ମୋର ସ୍ତ୍ରୀଙ୍କୁ ଆଣିବା ସକାଶେ ବାସ୍ ଧରିବାକୁ ଗଲି । ପୋଲିସ୍ ବାସ୍‌ରେ ଯିବାକୁ ମନା କରିଦେଲେ । ହରିବାବୁ ଓ ବୀରରାଜୁଙ୍କୁ ଆସିକାରେ ଭେଟିଲି । ସେଠାରୁ ସାଇକେଲରେ ଦିଗ ପହଣ୍ଡି ଚିକିଟି ବାଟଦେଇ ଇଚ୍ଛାପୁର ଗଲି । ୯ ଓ ୧୦ତାରିଖ ଇଚ୍ଛାପୁରରେ ରହି ୧୧ରେ ବ୍ରହ୍ମପୁରରେ ହରିହର ବାବୁଙ୍କୁ ସାକ୍ଷାତ କଲି । ଦୁହେଁ ମିଶି ବାଲିପଦର ଆସିଲୁ । ୧୯୩୨ ଜାନୁଆରୀ ୨୦ରେ ଏକ ତୀବ୍ର ପ୍ରତିବାଦ ସହ କରଣ କାମ ଗ୍ରହଣ କରିବି ନାହିଁ ବୋଲି ଆର୍.ଡ଼ି.ଓଙ୍କୁ ଜଣାଇ ଦେଲି ।

ପୁଣି ସତ୍ୟାଗ୍ରହ ଆଇନ ଅମାନ୍ୟ ଚାଲିଲା । ଦଳ ଦଳ ସତ୍ୟାଗ୍ରହ ବାଲିପଦର ଶିବିରରୁ ଆଇନ ଅମାନ୍ୟ କରିବାପାଇଁ ରସଲକୋଣ୍ଡା ପଠାଗଲେ । ୧୯୩୨ ଜାନୁୟାରୀ ୧୦ ତାରିଖ ଦିନ ପ୍ରଥମ ଦଳ ରସଲକୋଣ୍ଡାରେ ଗ୍ରେପ୍ତାର ହେଲେ । ୧୨

ତାରିଖରେ ଦ୍ୱିତୀୟ ଦଳ, ୧୩ ତାରିଖରେ ତୃତୀୟ ଦଳ, ବେଲଗୁଣ୍ଠାଠାରେ ଶ୍ରୀ ବନମାଳି ମହାରଣା, ଶ୍ରୀ ଅର୍ଜୁନ ସାହୁ, ଶ୍ରୀ ପ୍ରଭାକର ପଟ୍ଟନାୟକ କାରାବରଣ କଲେ- ଚତୁର୍ଥ ଦଳରେ, ୧୫ ତାରିଖ ଦିନ ଶ୍ରୀ ବାସୁଦେବ ତ୍ରିପାଠୀ ପ୍ରଭୃତି ୫ମ ଦଳ । ଏହିପରି ଦଳକୁ ଦଳ ଗଲେ ।

ହରିହର ବାବୁ ରସୁଲକୋଣ୍ଡାରେ ଗ୍ରେପ୍ତାର ହେଲେ । ତାଙ୍କ ପରିବାର ପାଇଁ କଟକ ପ୍ରାଦେଶିକ ଅଫିସରୁ କିଛି ସାହାଯ୍ୟ ଯୋଗାଡ଼ କରିବାପାଇଁ କଟକ ଗଲି । କଟକରେ ମୁଁ ଥିବା ସମୟରେ ମୋ ଠାକୁ ସାକ୍ଷାତରେ କରଣ କାମ ଇସ୍ତଫା ଦେବା କଥା ବୁଝିବାପାଇଁ ନୋଟିସ୍ ଆସିଲା । କିନ୍ତୁ ଠିକଣା ନ ମିଳିବା ହେତୁ ଗୋବରା ଡାକରୁ ଫେରସ୍ତ ଗଲା । ଆର.ଡ଼ି.ଓ ସୁନ୍ଦରା ଚାର୍ଲୁ । ସତେ ଯେପରି ବ୍ରିଟିଶ୍ ସରକାରଙ୍କ ଦାୟାଦ ! ତାଙ୍କର ଦୁର୍ବ୍ୟବହାର ଅକଥନୀୟ । ବାଲିପଦରଠାରେ ଶ୍ରୀ ରାଧାମୋହନ କରଙ୍କୁ ଗ୍ରେପ୍ତାର କଲାବେଳେ କରଙ୍କ ଦୁଇ ଗାଲକୁ ତାଙ୍କର ଛୋଟ ଲାଠିରେ ଗେଞ୍ଜି ଦେଇ କହିଲେ "Chewing two khillis before two magistrates."ଯେତେ ଲୋକଙ୍କୁ ଜେଲ ଦିଆଗଲା ତାଙ୍କୁ ସବୁ ମାଣ୍ଡିଆଯାଉ ଖାଦ୍ୟ ଦେବାପାଇଁ ସୁପାରିଶ କଲେ । ବେଲଗୁଣ୍ଠାଠାରେ ଆମର ଏକ ଦଳକୁ ପୋଲିସ୍ ଦ୍ୱାରା ନିର୍ଦ୍ଧୁମ ଲାଠି ପ୍ରହାର କରାଇଲେ । ସତ୍ୟାଗ୍ରହୀ ଅଳ୍ପବୟସ୍କ ପିଲାମାନଙ୍କୁ ଦାଣ୍ଡରେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ଗଡ଼ାଇ ଗଡ଼ାଇ ଲାଠି ପ୍ରହାର ହେଉଥାଏ । ବଡ଼ କୋଦଣ୍ଡା ଧନୀଘର ପୁଅ ସୁନ୍ଦର ବାବୁ ପୃଷ୍ଠିଙ୍କୁ ଯେପରି ମାଡ଼ ହେଲା ତା ଏ ପର୍ଯ୍ୟନ୍ତ ଲୋକେ କରୁଣ ଭାବରେ କହୁଥିବା ଶୁଣାଯାଏ । ସବ୍‌ଇନ୍‌ସପେକ୍ଟର ବୀରରାଘବ ଦାଶ ବ୍ରିଟିଶ୍ ସରକାରଙ୍କର ବିଶ୍ୱସ୍ତ ଅନୁଚର ଭାବରେ କେତେ କ'ଣ କରିଯାଇଛନ୍ତି ତାହା ଅବର୍ଣ୍ଣନୀୟ । ଅହିଂସ ସରକାର ତ ! ପରବର୍ତ୍ତୀ କାଳରେ ସ୍ୱାଧୀନ ସରକାରରେ ସେ ସୁପରିଣ୍ଟେଣ୍ଡେଣ୍ଟ ପଦକୁ ଉନ୍ନୀତ ହୋଇଥିଲେ । ଅନ୍ୟ ଦେଶ ହୋଇଥିଲେ ହୋଇ ନ ଥାନ୍ତେ । ତଥାପି ଏହିପରି ଯେତେ ଉଚ୍ଚପଦ ଲାଭ କଲେ କେବେ କଂଗ୍ରେସଠାରେ କୃତଜ୍ଞତା ପ୍ରକାଶ କରିଛନ୍ତି ? ଅନ୍ୟ କୌଣସି ବୈଦେଶିକ ଆକ୍ରମଣ ହୋଇଥିଲେ ଏଇମାନେ ପ୍ରଥମେ ସେମାନଙ୍କ ପକ୍ଷ ଗ୍ରହଣ କରିବା ବିଚିତ୍ର ନଥିଲା । ମୋର ଠିକଣା ଜାଣି ନ ପାରି ଆର୍.ଡ଼ି.ଓ. ମୋ ଉପରେ ଦୁଇଟି ଅଭିଯୋଗ କଲେ ।

That he is nefarious in his activities on behalf of a seditious movement against government inspite of a previous dissmissal and reinstatement.

That he wrote a virulent attack against government showing himself that he is not only unfit for any service under government but a defiant law breaker.

ତାଙ୍କର ଅନୁସନ୍ଧାନରେ ସେ ଲେଖିଲେ :- One version is that he has already been arrested some where.

Another version is that he is at Cuttack and directing the movement in Ganjam from there.

ଏହିପରି ଭାବରେ ମୋର ଅନୁପସ୍ଥିତିରେ ମତେ କରଣ କାମରୁ ପୁଣି ଅନ୍ତର(dismiss) କରାଗଲା। ମୁଁ କଟକରେ ପ୍ରାୟ ୨ ମାସ ରହିଲି। ଖଦୀ କାର୍ଯ୍ୟାଳୟରେ ଥାଏ। ଶ୍ରୀ ବଂଶୀଧର ରଥ ସେତେବେଳେ ଅଧକ୍ଷ। ଶ୍ରୀ ସତ୍ୟବାଦୀ ପ୍ରଧାନ ମୋ ସହିତ ଖଦୀ କାମ କରୁଥାନ୍ତି। କଟକରୁ ଗାଁକୁ ଫେରିଲି। ଘୁମୁସରରେ ଆଉ ସତ୍ୟାଗ୍ରହୀ ନ ଥିଲେ। ଆନ୍ଦୋଳନ ଶିଥିଳ ହୋଇ ଆସିଲା।' ବ୍ରହ୍ମପୁର ଯାଇ ସେଠାରେ ଆନ୍ଦୋଳନ ଚଳାଇବା ମନସ୍ଥ କରି ୧୯୩୬ ଜାନୁଆରୀ ୧୬ରେ ଗୋଟିଏ ଶଗଡ଼ରେ ରାତି ରାତି ବ୍ରହ୍ମପୁର ଯାଉଛି ବାଟରେ ହିଞ୍ଜିଳିକାଟୁଠାରେ ଶୁଣିଲି ବ୍ରହ୍ମପୁରରେ ଗୁଳିଚାଳନା ହୋଇ ଜଣେ ଲୋକ ପ୍ରାଣ ହରାଇଲା। ଶ୍ରୀ ନାରାୟଣ ପାତ୍ର ପ୍ରଭୃତି ଗ୍ରେପ୍ତାର ହେଲେ। ପ୍ରକୃତ ଖବର ଜାଣି ନ ପାରି ଆସିକା ଫେରିଲି। ନିରଞ୍ଜନ ବାବୁଙ୍କ ସହ ପରାମର୍ଶ କରି ଗୋବରାରେ ଦୁଇଦିନ ରହି ଜଙ୍ଗଲ ଆଇନ ଅମାନ୍ୟ କରିବାକୁ ଯୋଗାଡ଼ କରିବା ପାଇଁ ଶ୍ରୀ ମହାଦେବ ରାଉତଙ୍କ ଅନୁରୋଧରେ ନାଇସିଂହ ଗଲି। ୧୯୩୨ ଜାନୁଆରୀ ୨୧ ତାରିଖରେ ଜଙ୍ଗଲ ଆଇନ ଅମାନ୍ୟ କରିବା ପୂର୍ବରୁ ଗ୍ରେପ୍ତାର ହୋଇଯିବାର ସମ୍ଭାବନା। ପ୍ରତ୍ୟେକ କରଣ, କାର୍ଯୀ, ଅବସର ପ୍ରାପ୍ତ ସାମରିକ୍ କର୍ମଚାରୀ ଓ ପୋଲିସ୍ ପୁଣି ସମସ୍ତାନ ପାଇକମାନଙ୍କୁ ଆଦେଶ ହୋଇଥିଲା ଯେ, ଆଇନ ଅମାନ୍ୟ କରିବା ପାଇଁ ସଂଶିତ ବ୍ୟକ୍ତିମାନଙ୍କୁ ଧରାଇ ଦେବେ। ମତେ ତେଣୁ ୨/୪ ଦିନ ଗୁପ୍ତ ଭାବରେ ରହିବାକୁ ପଡ଼ିଲା। ମହାଦେବ ରାଉତ ମତେ ଗୋଟିଏ ଘରେ ବନ୍ଦୀ ପରି ରଖିଦେଇ ନିଜ ଧନ୍ଦାରେ ଲାଗିଥାନ୍ତି। କିଛି ଆୟୋଜନ କଲେ ନାହିଁ। ବ୍ରହ୍ମପୁର ଫେରିଲି। ୧୫ ତାରିଖରେ ନିରଞ୍ଜନ ବାବୁଙ୍କ ନବଯୁଗ ଅଫିସ ଖାନତଲାସ ହେଲା। ସେଦିନ କଟକ ଯାଇ ସେଠାରେ ପ୍ରାୟ ଏକମାସ ରହିଲି। ସେଠାରୁ ଇଚ୍ଛାପୁର ଏବଂ ଗୋବରା ଆସି ଅବସ୍ଥାନ କଲି। କିଛିଦିନ ପରେ ହରିଜନ କର୍ମରେ ଯୋଗଦେଲି। ଗଞ୍ଜାମ ଜିଲ୍ଲା ହରିଜନ ସଂଘର ସମ୍ପାଦକ ହେଲି।

## ମନ୍ଦାକିନୀ

ମନ୍ଦାକୁ ନିଜେ ପଢାଇଲି। କେତେ ଯେ ମାଡ ଦେଇଛି। ତାକୁ ବାଳକ ବେଶ ପକାଇ ଥାଏ। ଚେଡ଼ି (Half Pant) କୁରୁତା,କ୍ରପିଙ୍ଗ୍ ବାଳ। ନ ଜାଣିବା ଲୋକେ



ବାଞ୍ଛାନିଧି ବାବୁଙ୍କ ଜ୍ୟେଷ୍ଠାକନ୍ୟା ମନ୍ଦାକିନୀ

ତାକୁ ଦେଖି ପୁତ୍ର ସନ୍ତାନ ବୋଲି ଭ୍ରମରେ ପଡ଼ନ୍ତି । ହରିଜନ କାମ କଲାବେଳେ ବ୍ରହ୍ମପୁର ନିକଟ ହଳଦିଆ ପଦର ବଙ୍ଗଳାରେ ଥାଏ । ଗାଁରେ ଥିଲାବେଳେ ବିଖ୍ୟାତ ମୃଦଙ୍ଗ ବାୟକ ଓ ସଙ୍ଗୀତଜ୍ଞ ଶ୍ରୀ କୃପାସିନ୍ଧୁ ଶତପଥି ତାକୁ ଯନ୍ତ୍ର ସଙ୍ଗୀତ (ହାରମନିଅମ୍) ଶିଖାଉଥିଲେ । ସେ ଗୀତ ଗାଇବା ଶିଖିଲା । କଣ୍ଠ କୋମଳ, ମଧୁର ଏବଂ ପ୍ରାଞ୍ଜଳ । ଯେ ଶୁଣିଲା ସେ ମୁଗ୍ଧ ହେଲା । ୧୯୩୬ରେ ହଳଦିଆ ପଦର ବଙ୍ଗଳାରେ ଏକ ବାଳଚର(scout) ଶିବିର ସ୍ଥାପିତ ହୋଇଥିଲା । ସେଠାରେ ଶିକ୍ଷା ଦେବାପାଇଁ ଆଲାହାବାଦରୁ ଶ୍ରୀ ଆନନ୍ଦ ରାଓ ଆସିଥିଲେ । ମନ୍ଦା'ର ସଙ୍ଗୀତ ଶୁଣି ଅତିଶୟ ମୁଗ୍ଧ ହୋଇଥିଲେ ଏବଂ ବହୁକାଳ ଯାଏଁ ତା ସମ୍ପର୍କରେ ମୋ ସହିତ ପତ୍ର ବ୍ୟବହାର କରିଥିଲେ । କାଳକ୍ରମେ ସେ ପ୍ରାଥମିକ ଶିକ୍ଷା ଶେଷକରି ସଂସ୍କୃତ ଶିକ୍ଷାଲାଭ ଏବଂ ପ୍ରଥମା ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା । ପରୀକ୍ଷା ଦେବାପାଇଁ ବ୍ରହ୍ମପୁର ଯାଇଥିଲା । ସେଠାରେ ଦକ୍ଷିଣ ଓଡ଼ିଶା ସଂସ୍କୃତ ପଣ୍ଡିତମାନଙ୍କ ଏକ ସଭା ତତ୍‌କାଳୀନ ସମବାୟ ବିଭାଗ ଡ଼େପୁଟି ରେଜିଷ୍ଟ୍ରର ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡାଙ୍କ ସଭାପତିତ୍ୱରେ

ଅନୁଷ୍ଠିତ ହୋଇଥିଲା । ସେଠାରେ ମଧ୍ୟ ସଂସ୍କୃତ ଓ ଓଡ଼ିଆ ସଙ୍ଗୀତ ଗାନକରି ସଭାପକ୍ଷରୁ 'ବାଣୀ ବିନୋଦିନୀ' ଉପାଧି ଲାଭ କରିଥିଲା । ଏହି ସମୟରେ ତାର ବିବାହ ପ୍ରସଙ୍ଗ ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ଉତ୍‌ଥାପନ କରିଥିଲେ । ଯଥା ସ୍ଥାନରେ ସେ କଥା ଉଲ୍ଲେଖ କରାଯିବ ।

## ଅଭେଦାନନ୍ଦ

ଏହି ହରିଜନ କାମ କଲାବେଳେ ପଣ୍ଡିତ ଗୋଦାବରୀଶ ଦାଶଙ୍କ ଜ୍ୟେଷ୍ଠ ପୁତ୍ର ଅଭେଦାନନ୍ଦ ମୋରି ପାଖରେ ଥାଏ । ତା'ର ବାଲ୍ୟ ଚପଳତା ଏବଂ ଦୁଷ୍ଟ ପଣିଆ ହେତୁ ପଣ୍ଡିତେ ମୋ ପାଖରେ ସାଧୁ ହେବାପାଇଁ ଛାଡ଼ିଥିଲେ । ସେ ବଡ଼ ଦୁର୍ଦ୍ଧର୍ଷ ହୋଇଥାଏ । ବିନା କାରଣରେ ନାନା ପ୍ରକାର ଉପଦ୍ରବ କରିଥାଏ । କେରୋସିନୀ କିଣି ଆଣୁଛି ତ କୁମୁଟୀ ମାନଙ୍କର ଦାଣ୍ଡରେ ଶୁଖୁଥିବା ବିଡ଼ି, ପାପଡ଼ ଉପରେ କେରୋସିନୀ ଢାଳି ଢାଳି ଆସିବ । ଥରେ ମୋର କ୍ଷୌର ହେବା ଏକ ବ୍ଲେଡ୍ ଧରି ବଜାର ଆଡୁ ଆସୁଥିଲା, ବାଟରେ ଆମର ଜଣେ କଂଗ୍ରେସ କର୍ମୀଙ୍କୁ ଦେଖି "ମୁଁ ଆଜି ଗାଁକୁ ଯାଉଛି ହେ" କହି ତାଙ୍କ ହାତକୁ ଚିରିଦେଇ ଆସି ହାଜର । ଥରେ ହଳଦିଆ ପଦର ବଙ୍ଗଳାରେ ଆମେ ଥିବାବେଳେ ବ୍ରହ୍ମପୁରରେ ବନମାଳୀ ମହାରଣା କରିଥିବା ହୋଟେଲ୍‌ରୁ ମାଂସ ଆଣିବାକୁ ପଠାଇଲୁ । ତରକାରି ଧରି ଆସୁ ଆସୁ ବାଟରେ ସେଥିରୁ ଖାଇ ଖାଇ ଆସିଲା । ଆମକୁ ସବୁ ଅଇଁଠା ଖୁଆଇଲା । ଏହିପରି କେତେ କ'ଣ କରେ । ମାଡ଼ ଖାଏ । ଶାସନ ଫଳରେ ସେ ପରେ ପରେ ଅତି ଧୀର, ଶାନ୍ତ, ଶିଷ୍ଟ ଓ ସଚ୍ଚରିତ୍ର ହୋଇ ଉଠିଥିଲା ।

## ପ୍ରଫୁଲ୍ଲ ଚନ୍ଦ୍ର (ପଫୁ)

୧୯୩୩ ମାର୍ଚ୍ଚ ୧୩ ତାରିଖରେ ମୋର ଜ୍ୟେଷ୍ଠ ପୁତ୍ର ପ୍ରଫୁଲ୍ଲର ଗୋବରା ଠାରେ ଜନ୍ମଲାଭ ହୋଇଥିଲା । ତା'ର ନାମକରଣ ଉତ୍ସବ ମହାସମାରୋହରେ ପାଳିତ ହୋଇଥିଲା । ଦୈବ ଯୋଗକୁ ସେଦିନ ସ୍ୱାଧୀନତା ସଂଗ୍ରାମ ସୈନିକ, ସମାଜ ସେବକ ଓ ସାମ୍ବାଦିକ ଶ୍ରୀ ଜୟମଙ୍ଗଳ ରଥ ଉପସ୍ଥିତ । ନାମକରଣ ଭାର ତାଙ୍କୁ ଦିଆଗଲା । ବୋଉ ମୋର ଆସି ତାଙ୍କୁ ବାରମ୍ବାର କହି ଲାଗିଥାଏ "ଏ ପୁଅ, ଭଲ ନାଁଟିଏ ଦେବ ।" ନାମ କରଣ ବେଳେ ସେ କହିଲେ "ଅନେକେ ନାମକରଣ କରିଥାନ୍ତି ସାଧାରଣତଃ ଦେବତା ବା ମୃତ ମହାପୁରୁଷଙ୍କ ନାମରେ । ମୁଁ କିନ୍ତୁ ଜଣେ ଜୀବିତ ମହାପୁରୁଷଙ୍କ ନାମରେ ଏହାକୁ ନାମିତ କରୁଛି । ଭାରତର ବିଶିଷ୍ଟ ବୈଜ୍ଞାନିକ, ଗାନ୍ଧୀବାଦୀ, ଆଜନ୍ମ

ବ୍ରହ୍ମଚାରୀ ବଙ୍ଗ ଦେଶର ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ନାମାନୁସାରେ ମୁଁ ଏ ପୁତ୍ରର ନାମକରଣ କରୁଛି ''ପ୍ରଫୁଲ୍ଲ ଚନ୍ଦ୍ର'' । ତାକୁ ଆମେ ସବୁ ପଫୁ ବୋଲି ଡାକୁ ।

ତା'ର ୪ବର୍ଷ ୪ ମାସ ୪ ଦିନ ବୟସରେ ବିଦ୍ୟାରମ୍ଭ କରାଗଲା । ମୁଁ ଅକ୍ଷର ଶିକ୍ଷା ଦେବାର ଏକ ସ୍ୱତନ୍ତ୍ର ପ୍ରଣାଳୀ ବାହାର କରି ଶିକ୍ଷାଦେବା ଭାର ନିଜେ ନେଲି ।

ପ୍ରଥମେ ସରଳରେଖା, ବକ୍ରରେଖା, ତ୍ରିକୋଣ, ଚତୁଷ୍କୋଣ, ବୃତ୍ତ, କାଉ, ବଗ, ଲେଖି ଦେଖାଏ ଏବଂ ତାକୁ ସେହିପରି ଦେଖି ଦେଖି ଲେଖିବାକୁ କହେ । ତାପରେ ବୃତ୍ତ ବା ୦ ବାମରୁ ଦକ୍ଷିଣକୁ ବୁଲାଇ ଲେଖିବା ପରେ କହେ ଏଇଟା ବଗ, ଏଇଟା କାଉ ଇତ୍ୟାଦି । ଏହିପରି ଭାବରେ ଅକ୍ଷର ଗୁଡ଼ିକୁ ମଧ୍ୟରୁ ଏକ ରକମର ଅକ୍ଷର ଯଥା:- ଚ,ର,ଗ ଅନୁକ୍ରମରେ ୭ ଭାଗ କରାଗଲା । ଏକା ଦିନରେ ପିଲା ଗୋଟିଏ ଗୋଟିଏ ଭାଗ ଅକ୍ଷର ଶିଖି ପାରିଲା । ଏକମାସ ମାତ୍ର ଅକ୍ଷର ଶିକ୍ଷାଦେଇ ପୁସ୍ତକ ପଢ଼ିବାରେ ପ୍ରବେଶ କରାଇଲି । ତାକୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ମୁଁ କୌଣସି ସ୍କୁଲକୁ ପଠାଇ ନାହିଁ । ୭ମ ଶ୍ରେଣୀ ଯାଏ ପ୍ରଚଳିତ ପାଠ୍ୟକ୍ରମ ଅନୁଯାୟୀ ପୁସ୍ତକ ପଢ଼ାଇ ଏକାଥରକେ ୮ମ ଶ୍ରେଣୀରେ ପ୍ରବେଶ କରାଇଲି । ପ୍ରତ୍ୟେକ ଶ୍ରେଣୀରେ ପ୍ରତ୍ୟେକ ବିଷୟରେ ପ୍ରଥମ ସ୍ଥାନ ଅଧିକାର କରି ମାଟ୍ରିକୁଲେସନ୍‌ରେ ପ୍ରଥମ ଶ୍ରେଣୀରେ ଏବଂ ସ୍କୁଲର ପରୀକ୍ଷାର୍ଥୀମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲା ।

ସେ କବିତା ରଚନା କରିବା କଥା ମୁଁ କେବେ ଜାଣି ନଥିଲି । ଥରେ ସଂସ୍କୃତ ବିଦ୍ୟାଳୟମାନଙ୍କ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ କୁଞ୍ଜ ବିହାରୀ ଦାଶ କ୍ଷତ୍ରିୟବରପୁର ଟୋଲ ପରିଦର୍ଶନରେ ଆସିଥିଲେ । ତାଙ୍କୁ ହାଇସ୍କୁଲରେ ଏକ ସମ୍ବର୍ଦ୍ଧନା ଦିଆଗଲା । ସେହି ଉଦ୍ଦେଶ୍ୟରେ ସେ ଏକ କବିତା ଲେଖି ପାଠ କରିଥିଲା । କୁଞ୍ଜବାବୁ ତ ନିଜେ କବି । ସେ କବିତାଟି ଶୁଣି ମୁଗ୍ଧ ହେଲେ ଏବଂ ଆଉ କ'ଣ କ'ଣ କବିତା ଲେଖିଛି ଦେଖିବାପାଇଁ ଆମ ଗାଁକୁ ଆସି ଆମର ଆତିଥ୍ୟ ଗ୍ରହଣ କଲେ । ଦିନଯାକ ବସି ତା କବିତା ସବୁ ଶୁଣିଲେ । କହିଲେ ''ତୁ ଲେଖିଛୁ ନା ତୋ ଭିତରେ କିଏ ଥାଇ ଲେଖାଇ ଦେଉଛି ।''

## ବିଧବା ବିବାହ ପ୍ରଚଳନ

ଏ ମଧ୍ୟରେ ଅନେକ ଗ୍ରାମ ହିତକର କାମରେ ଲାଗିପଡ଼ିଲି । ପ୍ରାୟ ତିନି ଚାରିଜଣ ବାଳ ବିଧବାଙ୍କୁ ଉପଯୁକ୍ତ ସ୍ଥଳରେ ବରପାତ୍ର ଯୋଗାଡ଼ କରାଇ ବିବାହ କରାଇଥିଲି । ପ୍ରଥମ ବିଧବାର ମା' ଆଦୌ ରାଜିହେଲା ନାହିଁ । ବହୁ ଯତ୍ନ କରି ହୋଇପାରିଲା ନାହିଁ । ଶେଷରେ ସେ ପିଲାଟି ଭ୍ରଷ୍ଟା ହୋଇଗଲା । କାଳକ୍ରମେ ସେ ଗାଁରୁ ବାହାରି ଯାଇ ବେଶ୍ୟାବୃତ୍ତି ଅବଲମ୍ବନ କଲା । ଅନ୍ୟ ଯେଉଁମାନେ ରାଜିହୋଇ

ବିଭିନ୍ନ ଘରରେ ବିବାହ କଲେ ବଡ଼ ସୁଖ ସ୍ୱାଚ୍ଛନ୍ଦ୍ୟରେ ସନ୍ତାନବତୀ ହୋଇ ଘରଦ୍ୱାର କରି ରହିଛନ୍ତି । ଗାଁର ଦୁଇଟି ବିଧବା ମଧ୍ୟରୁ ଗୋଟିକର ମା' ବାପା କେହି ନ ଥିଲେ । କଟକ ଜିଲ୍ଲାର ଏକ ବ୍ରାହ୍ମଣ ଶାସନରେ ଏକ କୃତବିଦ୍ୟ ଓ ଭୂ ସମ୍ପତ୍ତି ଶାଳୀ ଯୁବକ ସାଙ୍ଗରେ ତା'ର ବିବାହ କଟକ ସହରରେ କରାଯାଇ ଥିଲା । ଭାରତ ସେବକ ସମାଜ ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ବହୁ ବିଶିଷ୍ଟ ଭଦ୍ରବ୍ୟକ୍ତି ଯୋଗ ଦେଇଥିଲେ । ଆଉ ଗୋଟିଏ ମଧ୍ୟ ସେହିପରି ଏକ ବ୍ରାହ୍ମଣ ସନ୍ତାନକୁ କଟକ ଜିଲ୍ଲାରେ ବିବାହ କରିଥିଲା । ଏହି ବିଧବା ବିବାହ କଥା ନେଇ କିଏ କେତେ ପ୍ରକାର ସମାଲୋଚନା କରନ୍ତି । ଧର୍ମନାଶ ହୋଇଯାଉଛି । କୁଳ ଗୌରବ ନଷ୍ଟ ହୋଇଯାଉଛି ବୋଲି ରଡ଼ି ଛାଡ଼ନ୍ତି । ଆମ ଉଦ୍ୟୋକ୍ତାମାନଙ୍କୁ ହାଟରେ ବାଟରେ ଯାଚ୍ଛାପାରୁତା ଗାଳି ଦିଅନ୍ତି । କିନ୍ତୁ ଦୈବ ଯୋଗକୁ ଯେଉଁ ମାନେ ତୀବ୍ର ବିରୋଧ କରୁଥିଲେ ସେମାନଙ୍କ ନିଜ କଥା ବେଳକୁ ଆଉ ସମ୍ଭାଳି ପାରିଲେ ନାହିଁ । ନିଜ ନିଜର ବିଧବା କନ୍ୟାମାନଙ୍କ ବୈଧବ୍ୟ ଯନ୍ତ୍ରଣାରେ ବ୍ୟଥିତ ହୋଇ ସେହିମାନେ ଆଗଭର ହୋଇ ନିଜ ନିଜ କନ୍ୟାମାନଙ୍କୁ ବିବାହ ଦେଲେ । ହନୁଆ ବ୍ରାହ୍ମଣ କୁଳର ସଭାପତି ଯେ କି ତୀବ୍ର ବିରୋଧୀ ଥିଲେ, ତାଙ୍କର ବିଧବା କନ୍ୟାକୁ ବିବାହ ଦେଲେ । ବାସୁଦେବପୁର ଶାସନର ବୃଦ୍ଧ ଶିକ୍ଷକ ଖୁବ୍ ନୈଷ୍ଠିକ ବ୍ରାହ୍ମଣ ଶ୍ରୀ ଭୁବନି ଦାଶଙ୍କ କନ୍ୟାକୁ ବିବାହ ଦେବାକୁ ଖୁବ୍ ଭଲ ପ୍ରସଙ୍ଗ ଯୁଟିଲା । ଉତ୍କଳ ଖଦୀବୋର୍ଡ୍‌ର ଏକ ସମୟରେ ସଂପାଦକ, ସ୍ୱାଧୀନତା ସଂଗ୍ରାମୀ, ଏମ୍.ଏଲ୍.ଏ ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ସହ ଝିଅଟିର ବିବାହ ହେଲା । ପୁତ୍ର କନ୍ୟା ଧନ ଧାନ୍ୟ ସମ୍ପନ୍ନା ହୋଇ ସେ ମହାସୁଖରେ କାଳାତିପାତ କରୁଅଛି ।

ଏହି ବିବାହ ପରେ ଗୋଟିଏ କଥା:- କ୍ଷତ୍ରିୟବରପୁର ହାଇସ୍କୁଲ ପ୍ରତିଷ୍ଠା ହେବାବେଳେ କୌଣସି ଏକ ଜମି ରେଜିଷ୍ଟ୍ରି କରିବାକୁ ଆମେ ଉଦ୍ୟୋକ୍ତାମାନେ ରସଲକୋଣ୍ଡା ସବ୍‌ରେଜିଷ୍ଟ୍ରାର ଅଫିସକୁ ଯାଇଥିଲୁ । ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ବଡ଼ ଭାଇ ଶ୍ରୀ ବାମଦେବ ମିଶ୍ର ଥିଲେ ସବ୍‌ରେଜିଷ୍ଟ୍ରାର୍, ବଡ଼ ନୈଷ୍ଠିକ ଓ ରକ୍ଷଣଶୀଳ । ମୋର ସହକର୍ମୀ ଶ୍ରୀ ନିଶାମଣି ଶତପଥି ରେଜିଷ୍ଟ୍ରି ଶୀଘ୍ର ସମ୍ପାଦନା କରାଇବା ଉଦ୍ଦେଶ୍ୟରେ ସବ୍‌ରେଜିଷ୍ଟ୍ରାର୍‌ଙ୍କୁ ମୋର ପରିଚୟ ଦେବାକୁ ଗଲେ । ସବ୍‌ରେଜିଷ୍ଟ୍ରାର୍ କହିଲେ "ଓହୋ ମୁଁ ବାଞ୍ଛାନିଧି ପଟ୍ଟନାୟକଙ୍କୁ ଜାଣି ନାହିଁ ଯେ ମତେ ତାଙ୍କ ପରିଚୟ ଦେଉଛ ? ସେ ତ ନିଜ ଜମିବାଡ଼ି ବିକି କଂଗ୍ରେସ ଲୋକଙ୍କୁ ଖୁଆଇଲେ । ଆଉ ହେଇଟି ଅଳ୍ପଦିନ ତଳେ ମୋର ଭାଇକୁ ଗୋଟାଏ ରାଣ୍ଡଟାଏ ବିବାହ କରିଦେଇଛନ୍ତି । ମୁଁ ଯାଙ୍କୁ ଚିହ୍ନି ନାହିଁ ? ମତେ ଚିହ୍ନାଉଛ ।"

ଭଞ୍ଜନଗରରେ ମୁଁ କୃଷି ସମିତି ସୁପରିଣ୍ଟେଣ୍ଡେଣ୍ଟ୍ କାମ କଲାବେଳେ ଆମ ସାହିର ଜଣେ ବ୍ରାହ୍ମଣୀ ବୁଢ଼ୀ ଆସି ମୋ ବୋଉକୁ କହିଲା "ତୁମ ପୁଅ ବିଧବା ବିବାହ କରାଉଛନ୍ତି । ମୋ ଝିଅଟି ପାଇଁ ଗୋଟିଏ ବର ଯୋଗାଡ଼ କରିଦେବା ପାଇଁ କୁହ ।"

ସେ ତ ବାଳ ବିଧବା ନୁହେଁ, ପ୍ରାୟ ଦରବୁଢ଼ୀ । ମା ଝିଅ ଯା ଘରେ ତା ଘରେ ଧାନକୁଟି ପାଣିଦେଇ ବଞ୍ଚନ୍ତି । ଦେଖିବାକୁ ମଧ ସେ ସୁନ୍ଦରୀ ନୁହେଁ । ବୋଉ କହିବା ବେଳେ ହସୁଥାଏ । ତା ମନକୁ ପାଏନାହିଁ । ତଥାପି ଯତ୍ନ କରାଗଲା । କେନ୍ଦ୍ରାପଡ଼ାରୁ ଏକ ବୁଢ଼ା ପାକୁଆ ବର ଜୁଟିଲେ । ବିବାହ କରି ଦିଆଗଲା । ବହୁବର୍ଷ ପରେ ମୁଁ ୧୯୬୫ ସାଲରେ କେନ୍ଦ୍ରାପଡ଼ାରେ ଥିବାବେଳେ ସଂସ୍କୃତ ବିଦ୍ୟାଳୟର ପଣ୍ଡିତଙ୍କ ସହ ଦେଖାକରି ଫେରୁଛି ମୋ ପଛେ ପଛେ ଜଣେ ସଂସ୍କୃତାଧାୟୀ ଯୁବକ ଆସି କହିଲେ "ଆଜ୍ଞା ମୁଁ ଆପଣଙ୍କୁ ଆଗରୁ ଜାଣିଛି ।" ମୁଁ ଆଶ୍ଚର୍ଯ୍ୟ ହେଲି । କିମିତି ଜାଣିଛ ପଚାରିବାରୁ କହିଲେ "ମୋ ମା'ଙ୍କୁ ଆପଣ ବିବାହ କରାଇଥିଲେ ।" ଆହୁରି ଆଶ୍ଚର୍ଯ୍ୟ । ତାପରେ ସେ ଭଞ୍ଜନଗର ବିଧବା ବିବାହ କଥା କହିଲେ । ଆମେ ତ ଦେଲା ନାରୀ ହେଲା ପାରି ଭାବେ ସବୁ ପାଶୋରି ଯାଇଥିଲୁ । ସେ ମତେ ତାଙ୍କ ଘରକୁ ଯିବାପାଇଁ ଆମନ୍ତ୍ରଣ କଲେ । ଗଲି ଦେଖିଲି, ମା', ଝିଅ କେଡ଼େ ସୁଖରେ ଅଛନ୍ତି । ସର୍ବାଙ୍ଗ ବହୁମୂଲ୍ୟ ଅଳଙ୍କାର ମଣ୍ଡିତ । ବିସ୍ତର ଜମିବାଡ଼ି । ଯେଉଁ ଯୁବକ ମତେ ପରିଚୟ ଦେଇ ଡାକିନେଲେ ସେ ହେଉଛନ୍ତି ସାବତ ପୁଅ । ତାଙ୍କ ମା'ଙ୍କ ଅନ୍ତେ ଏ ବିଧବା ବିବାହ । ତା'ର ମଧ ଗୋଟିଏ ପୁଅ, ସେତେବେଳେ ଅଷ୍ଟମ ଶ୍ରେଣୀରେ ପଢୁଥିଲା । ସାବତ ପୁଅମାନେ ପଢ଼ାପଢ଼ି କରି କିଏ ଓକିଲ ଆଉ କିଏ କ'ଣ ହୋଇଛନ୍ତି । ମା, ଝିଅ ଦୁହେଁ ମତେ ଦେଖି କୃତକୃତ୍ୟ ହେଲେ । ଘରକୁ ଆସିଲେ । ମୋ ସ୍ତ୍ରୀ ମଧ ତାଙ୍କ ଘରକୁ ଗଲେ ।

## ଗ୍ରାମସେବକ ସଂଘ

୧୯୩୪ ଜୁନ୍ ୨୪ ରେ ଗୋବରାଠାରେ ଏକ ଗ୍ରାମସେବକ ସଂଘ ଗଠନ କରାଯାଇଥିଲା । ପ୍ରାୟ ୧୫/୨୦ ଜଣ ଯୁବକ ପ୍ରତିଦିନ ବଡ଼ ସକାଳୁ ଉଠି ନଗର ସଂକୀର୍ତ୍ତନ କରି ଶୌଚକର୍ମ ସମାପନ ପରେ ସଂଘ କାର୍ଯ୍ୟାଳୟ (ଆମ ମେଲା ଘରେ) ରେ ଜମା ହୁଅନ୍ତି । ଆସନାଦି ବ୍ୟାୟାମ ଅଭ୍ୟାସ କରନ୍ତି । ଗୀତା ବା ଭାଗବତ ପାଠ ହୁଏ । ପ୍ରାର୍ଥନା ହୁଏ । ସୂର୍ଯ୍ୟୋଦୟ ପରେ ଯେ ଯାହା ଘରକୁ ଫେରନ୍ତି । ସପ୍ତାହରେ ଦିନେ ଗ୍ରାମର ବିଭିନ୍ନ ସ୍ଥାନ ବୁଲି ସାଧାରଣ ସ୍ଥଳ ମାନଙ୍କର ମଇଳା ସଫା କରନ୍ତି । ଘରକୁ ମାସରେ ପଇସାଟିଏ ଲେଖାରେ ଚାନ୍ଦା ଆଦାୟ କରି ଗାଁର ଛକ ଯାଗା ମାନଙ୍କରେ ଆଲୁଅ ଖମ୍ବ ସ୍ଥାପିତ କରି ସଂଘର ସଭ୍ୟମାନେ ପାଳିକରି ଆଲୁଅ ଲଗାନ୍ତି । ସଂଘର ବାଲ୍ଟି, ଦଉଡ଼ି, ଲାଠି ପ୍ରଭୃତି ଥାଏ । ଅଗ୍ନି ଭୟ ହେବା ମାତ୍ରେ ଯେ ଯେଉଁଠାରେ ଥାନ୍ତୁ ଧାଇଁ ଆସି ବାଲ୍ଟି ପ୍ରଭୃତି ଧରି ନିଆଁ ଲିଭାଇବାରେ ସାହାଯ୍ୟ କରନ୍ତି । ସଂଘର ସଭ୍ୟମାନେ ଆକସ୍ମିକ ବିପତ୍ତି କାଳରେ ବିଭିନ୍ନ ଗ୍ରାମକୁ ଯାଇ ସେବା

କରିବାପାଇଁ ତତ୍ପର ଥାନ୍ତି । ଗ୍ରାମର ଏକମାତ୍ର ପୋଖରୀ ହୁଡ଼ାରେ ବହୁଦିନରୁ ଲୋକେ ମଳତ୍ୟାଗ କରି ପୋଖରୀ ଭିତରେ ଶୌଚ କରିଥାନ୍ତି । ସଂଘର ସଭ୍ୟମାନେ ପାଳିକରି ପୋଖରୀ ହୁଡ଼ାରେ ପହରା ଦେଇ ଲୋକଙ୍କୁ ବୁଝାଇ ସେଥିରୁ ନିବୃତ୍ତ କରାନ୍ତି । ତା'ର ପ୍ରଭାବ ଆଜିଯାଏଁ ପ୍ରାୟ ୫୦ ବର୍ଷ ହେଲା ରହିଛି । ପୋଖରୀ ହୁଡ଼ା ପରିଷ୍କାର ଓ ପରିଚ୍ଛନ୍ନ । ଚତୁର୍ଦ୍ଦିଗରେ ନଡ଼ିଆ ଗଛ ସବୁ ଲଗାଯାଇଛି । ଏହାର ଜଳ ଗ୍ରାମର ଏକମାତ୍ର ପାନୀୟ ଜଳରୂପେ ବ୍ୟବହାର ହେଉଛି । ଦିନେ ଜଣେ ୭୦ ବର୍ଷର ବୁଢ଼ା ପୋଖରୀକୁ ଲାଗିଥିବା ନାଳରେ ମଳତ୍ୟାଗ କରି ବସିଥାଏ । ମୁଁ ସେଇବାଟ ଦେଇ ଆସୁଥିଲି । ଦେଖିଲି ଡ଼ାଳ ନେଇ ନାହିଁ । ବନ୍ଧ ତୁଠକୁ ଆସିଲି, ଗାଧୋଉଥିବା ଲୋକଙ୍କଠାରୁ ଡ଼ାଳେ ପାଣି ନେଇ ବୁଢ଼ା ପାଖରେ ଥୋଇ ଦେଇ "ଏଥିରେ ଶୌଚ ହୁଅ, ବନ୍ଧକୁ ଯାଅ ନାହିଁ" କହିଲି । ବୁଢ଼ା ଅବଶ୍ୟ ସେ କଥା ମାନିଲା । କିନ୍ତୁ ଘରକୁ ଆସୁ ଆସୁ ବାଟରେ ଆମକୁ ସବୁ ଗାଳି ଦେଇ ଦେଇ କହିଲା "ଆମେ ତ କୋ ପୂର୍ବ ପୁରୁଷରୁ ଇମିତି କରିଆସିଛୁ, ଏବେ ଏ ଟୋକା ଶଳେ ବାହାରି ନୂଆ ପାଠ କାଢ଼ିଛନ୍ତି ।"

ଥରେ ନିଖିଳ ଭାରତ ହରିଜନ ସେବକ ସଂଘର ସହକାରୀ ସମ୍ପାଦକ ଅଧ୍ୟାପକ ଏନ୍.ଆର୍.ମାଲକାନୀ ଓଡ଼ିଶା ଗସ୍ତରେ ଆସିବା ବେଳେ ଗୋବରା ହରିଜନ ବିଦ୍ୟାଳୟ ପରିଦର୍ଶନରେ ଆସିଲେ । ତାଙ୍କ ସାଙ୍ଗରେ ପୁଣ୍ୟଶ୍ଳୋକ ଆଚାର୍ଯ୍ୟ ହରିହର ଦାଶ ଏବଂ ପୂଜ୍ୟ ନନ୍ଦକିଶୋର ଦାସ ଉକ୍ରଳ ହରିଜନ ସେବକ ସଂଘର କାର୍ଯ୍ୟ ଓ ନିୟମାବଳୀ ଦେଖି ସନ୍ତୋଷ ପ୍ରକାଶ କରିଥିଲେ । ମାଲ୍‌କାନୀ ସାହେବ ଏ ଯୋଜନା ସମ୍ପର୍କରେ ମୋଠାରୁ ଟିକିନିଖି ସମସ୍ତ ବିଷୟ ବୁଝି "ହରିଜନ" ପତ୍ରିକାରେ ଗୋଟିଏ ବିବରଣୀ ପ୍ରକାଶ କରିଥିଲେ ।

ଏମାନେ ଗୋବରାରେ ଆସି ପହଞ୍ଚିବା ବେଳକୁ ଗାଁରେ ଦୁଇଟି କେଳା ନାଟ ବାଦ ଲାଗିଥାଏ । ଜନଗହଳି ମଧ୍ୟରେ ଆମ୍ଭେମାନେ ଆମ ଘରକୁ ନ ଯାଇ ପାରି ଗାଁ ମଝିରେ ଥିବା ଚଉରାର ଚାନ୍ଦିନୀ ଉପରେ ବସି ନାଟ ଦେଖିଲୁ । ଅଧ୍ୟାପକ ମାଲ୍‌କାନୀଙ୍କୁ ଏହା ନୂଆଁ, ସେ ବଡ଼ ଆଗ୍ରହରେ ଦେଖୁଥାନ୍ତି । କେଳୁଣୀମାନେ ଯେତେବେଳେ ଖମ୍ବର ଶିଖରରେ ପେଟଦ୍ୱାରା ଘିରି ଘିରି ବୁଲିଲେ ସେତେବେଳେ ସେ ଆଶ୍ଚର୍ଯ୍ୟ ଓ ଆନନ୍ଦରେ ତାଳି ମାରିଥିଲେ । ତହିଁ ଆରଦିନ ହରିଜନ ସାହିରେ ବିଦ୍ୟାଳୟ ପରିଦର୍ଶନ କରିଥିଲେ ।

## ହରିଜନ ସେବା

୧୯୩୬ରେ ହରିଜନ ସେବକ ସଂଘରେ ଜଣେ କର୍ମୀ ଭାବରେ ନିଯୁକ୍ତ ହେଲି । ଶ୍ରୀ ଗୋରାଚାନ୍ଦ ପଟ୍ଟନାୟକ ହରିଜନ ସେବକ ସଂଘର ସଭାପତି ଏବଂ ଶ୍ରୀ ଜୟମଙ୍ଗଳ ରଥ ସମ୍ପାଦକ । କେତେଦିନ ପରେ ଶ୍ରୀ ଜୟମଙ୍ଗଳ ରଥ ସମ୍ପାଦକ ପଦ ତ୍ୟାଗ କଲେ ।

ମୁଁ ସମ୍ପାଦକ ହେଲି । ଆମ ଜିଲ୍ଲାର ବିଭିନ୍ନ ହରିଜନ ବସ୍ତି ମାନଙ୍କରେ ବିଦ୍ୟାଳୟମାନ ସ୍ଥାପିତ ହେଲା । ହରିଜନମାନଙ୍କ ଆର୍ଥିକ ଅବସ୍ଥା ଅନୁସନ୍ଧାନ, ସଭା, ସମିତି ଓ ପ୍ରଚାର ଇତ୍ୟାଦି କରାଗଲା ।

## ପ୍ରମୋଦଚନ୍ଦ୍ରର ଜନ୍ମ (ପାପା)

୧୯୩୫ ମାର୍ଚ୍ଚ ୧୪ ତାରିଖରେ ଇଚ୍ଛାପୁରଠାରେ ଦ୍ୱିତୀୟ ପୁତ୍ର ପ୍ରମୋଦର ଜନ୍ମ ତା ମାମୁଁ ଘରେ । ପପୁ ନିତାନ୍ତ ଛୋଟ ଦୁଇ ବର୍ଷର । ତା' ବୋଉ ପାଖରେ ନାନା ଅତୁଆ ହଟାକରେ । ତାକୁ ଗୋବରା ନେଇ ଆସିଲି । ସମ୍ଭାଳିବା ବଡ଼ କଷ୍ଟ ହେଲା । ରାତି ସାରା ବୋଉ ବୋଉ ହୋଇ କାନ୍ଦେ । ତାକୁ କାଖେଇ, କାନ୍ଧରେ ପକେଇ ରାତିଯାକ ଦାଣ୍ଡର ଏ ମୁଣ୍ଡରୁ ସେମୁଣ୍ଡ ଯାଏ ବୁଲାଇବାକୁ ପଡ଼େ । ବଡ଼ କଷ୍ଟରେ ୭/୮ ଦିନ ରଖିଲି । ତାପରେ ତାକୁ ଇଚ୍ଛାପୁରରେ ନେଇ ଛାଡ଼ିଲି । ପ୍ରମୋଦକୁ ତା ଆଈ ସ୍ନେହରେ 'ପାପା' ନାମ ଦେଲେ । ପାପା ଏକ ତେଲୁଗୁ ଶବ୍ଦ । ତା'ର ଅର୍ଥ ନେତ୍ରପିତୁଳା । ସତରେ ପିଲାଟି ଯେପରି ସମସ୍ତଙ୍କର ନେତ୍ରପିତୁଳା ।

ଥରେ ଇଚ୍ଛାପୁରରେ ପପୁକୁ ଜ୍ୱର ହେଲା । ବହୁଦିନ ପରେ ଖବର ପାଇ ଯାଇ ଦେଖିଲି, ପେଟ ବାହାରି ପଡ଼ିଛି, ହାତ ଗୋଡ଼ ଶୁଖି ଯାଇଛି । ଦେଖି ବଡ଼ ବିକଳ ଲାଗିଲା । ଗଞ୍ଜାମର ବିଖ୍ୟାତ ଡାକ୍ତର ମଣିପାତ୍ର ସେତେବେଳେ ଇଚ୍ଛାପୁର ହସପିଟାଲ୍‌ରେ ଥାନ୍ତି । ତାକୁ ନଦେଖାଇ ଗୋଟିଏ ବଟୁଆଧରା ବୈଦ୍ୟ ଦ୍ୱାରା ଚିକିତ୍ସା କରାଯାଉଥିଲା । ସେ ବୈଦ୍ୟ ଅଫିମ ପକା ଔଷଧ ଦେଇଥିବେ ବୋଲି ମୋର ସନ୍ଦେହ ହେଲା । ବୈଦ୍ୟକୁ ପଚାରିଲି, ସେ ମନାକଲେ । କେତେ ସମୟ ପରେ କହିଲେ, ''ହଁ ଟିକିଏ ଟିକିଏ ପଡ଼ିଛି ।'' ମୋର କ୍ରୋଧ ଜାତ ହେଲା । ସଙ୍ଗେ ସଙ୍ଗେ ସେ ବୈଦ୍ୟଙ୍କୁ ଛାଡ଼ି ଅନ୍ୟତ୍ର ଚିକିତ୍ସା କରାଇବାରେ ଅଳ୍ପଦିନ ପରେ ଜ୍ୱର ଛାଡ଼ିଲା । କିନ୍ତୁ ତାର ପୂର୍ବର ରୂପ ବର୍ଣ୍ଣ ଆଉ ଫେରିଲା ନାହିଁ ।

## ବବଲେଶ୍ୱର ଆସିଲେ

ହରିଜନ କାମ କଲାବେଳେ ବ୍ରହ୍ମପୁରରେ ମୁଁ ଏକ ବସା ନେଇଥାଏ । ନିଜେ ରୋଷେଇ କରି ଖାଏ । ଶ୍ରୀ ବବଲେଶ୍ୱର (ରୁଦ୍ରାପ୍‌ପା ମଲାପ୍‌ପା ବବଲେଶ୍ୱର) ଜେଲରୁ ଫେରି ମୋ ବସାରେ ରହିଲେ । ଉଭୟେ ରୋଷେଇ କରି ଖାଉଁ । ଦିନେ ବିଶ୍ୱନାଥ ବାବୁଙ୍କୁ ଦେଖା କରିବାକୁ ଯାଇଥିଲୁ । ସେଦିନ ତାଙ୍କ ବସାରେ ରାତ୍ରୀ ଭୋଜନ କରିବାକୁ ଆମ

ଦୁହିଁଙ୍କୁ ନିମନ୍ତ୍ରଣ କଲେ । ବବଲେଶ୍ୱର କର୍ଣ୍ଣାଟକୀ ବ୍ରାହ୍ମଣ । ଆମିଷ ଖାନ୍ତି ନାହିଁ । ତର୍କାରୀ ହୋଇଥିଲା ତାମ୍ବଡ଼ା ମାଛ, ସାରୁବେସର ଓ ଡାଲି । ବବଲେଶ୍ୱର ଖାଲି ଡ଼ାଲି ଟିକିଏ ଟିକିଏ ଚାଖି ଖାଉଥାନ୍ତି । ବିଶ୍ୱନାଥ ବାବୁ କହିଲେ ''କିରେ ବାଜୀ (ତାଙ୍କ ପୂଜାରୀ) ଆଉ କିଛି ତର୍କାରୀ କରିନାହୁଁ । ମୁଁ ଜଣେ ବନ୍ଧୁଙ୍କୁ ଡାକିଥିଲି ।'' ବାଜୀ କହିଲା ''ମତେ କ'ଣ କହିଥିଲ କି'' ? ''ହଉ ଟିକିଏ ଦୁଧ ଦେ'' ବୋଲି ବିଶ୍ୱନାଥ ବାବୁ କହିଲେ । ସେ କହିଲା ''ତମ ପାଇଁ କେବଳ ଅଛି'', ''ହଉ ସେଥିରୁ ଟିକିଏ ଦେ'' ବୋଲି ବିଶ୍ୱନାଥ ବାବୁ କହିବାରୁ ସେ ଗୋଟିଏ ଛୋଟ ପିତଳ ଗ୍ଲାସରେ ନାଁକୁ ମାତ୍ର ଟିକିଏ ଦୁଧ, ଟକର ମକର ଫୁଟୁଛି, ତା'ର ମଇଳା ଗାମୁଛାରେ ଧରି ଆଣି ଥୋଇଦେଲା । ଟିକିଏ ଥଣ୍ଡା କରିଦେ କହିବାରୁ ତା ପଛ ଆଡ଼େ ପଡ଼ିଥିବା କାଠ ଛାଲି ଖଣ୍ଡେ ଆଣି ଦୁଧ ଘାଣ୍ଟି ଦେଇ ଛାଲିଟି ସେଥିରେ ଛାଡ଼ି ଦେଇ ଚାଲିଗଲା । ମୁଁ ଲଜ୍ଜିତ ହୋଇ ବସିଥାଏ । ବବଲେଶ୍ୱର କ'ଣ ଭାବୁଥିବେ । ସେଠାରୁ ଫେରୁ ଫେରୁ ବବଲେଶ୍ୱରଙ୍କୁ କହିଲି ସବୁ ଓଡ଼ିଆଙ୍କୁ ଏ ଧରଣର ବୋଲି ଭାବିବ ନାହିଁ ।

## ହଳଦିଆ ପଦରରେ ଅବସ୍ଥାନ

ଶ୍ରୀ ବରଦ ରାଜୁଲୁ ନାଇଡୁ ହରିଜନ ସେବକ ସଂଘର କେତେ ଦିନ ସଭାପତି ହେଲେ । ତାଙ୍କର ହଳଦିଆ ପଦର ବଙ୍ଗଳାରେ ରହିବାକୁ ମତେ ସେ ଅନୁରୋଧ କଲେ । ସେଠାରେ କେତେଦିନ ସକୁଟୁମ୍ବେ ରହିବାକୁ ପଡ଼ିଲା । ମୋର ସ୍ତ୍ରୀ କୁନ୍ଦଲତା, ତାଙ୍କ ସାନଭଉଣୀ ରତନା, ମନ୍ଦା, ଅଭେଦ ଓ ମୋର ଜ୍ୟେଷ୍ଠ ପୁତ୍ର ପ୍ରଫୁଲ୍ଲ ଥାନ୍ତି । ସେ ବଙ୍ଗଳା ହତାରେ ଖୁବ୍ ବଡ଼ ବଡ଼ ନାଗ ସାପ ଦିନବେଳେ ଏଣେ ତେଣେ ବୁଲୁଥିବା ଦେଖିଛୁ । ପାତି ମାଙ୍କଡ଼ ମଧ ଅସଂଖ୍ୟ । ତଥାପି କେବେ କାହାର କିଛି ଅନିଷ୍ଟ ହୋଇନାହିଁ ।

ଦିନେ, ପ୍ରାୟ ଗୋଟାଏ ସମୟ ହେବ କେତେ ଜଣ ପଶ୍ଚିମା ବାବାଜୀ ସେହି ରାସ୍ତା ଦେଇ ଯାଉଁ ଯାଉଁ ବଙ୍ଗଳାକୁ ଆସି କୁଅଁରେ ସ୍ନାନ କରିବା ପାଇଁ ବାଲ୍‌ଟି ଦଉଡ଼ି ମାଗିଲେ । ମୁଁ ନିକଟରେ ପୋଖରୀ ଅଛି ବୋଲି କହିଲି । ସେମାନେ କହିଲେ ''ନହିଁ, ନହିଁ, ୟହାଁକେ ଲୋକ ଗାଣ୍ଡ୍ ଧୋତେ ହେଂ'' । ଏହା ଶୁଣି ଲଜ୍ଜିତ ହେଲି । ସଙ୍ଗେ ସଙ୍ଗେ ବାଲ୍‌ଟି ଦଉଡ଼ି ଦେଲି ।

ଆମ ଓଡ଼ିଶାରେ ଆଉ ଟିକିଏ ଦକ୍ଷିଣକୁ ଗଲେ ଆନ୍ଧ୍ର ଲୋକେ ପୋଖରୀ ହୁଡ଼ାରେ ମଳତ୍ୟାଗ କରି ପାଣି ଭିତରେ ଶୌଚ କରୁଥିବା ଅଧିକ ମାତ୍ରାରେ ଦେଖାଯାଇ ଥାଏ । ଏ ଅଭ୍ୟାସ କ'ଣ ଦୂରହେବ ? ଗୋବରାରେ ଗ୍ରାମ ସେବକ ସଂଘ ଦ୍ୱାରା ଏ ଦୁରାଭ୍ୟାସ ପୂର୍ଣ୍ଣ ମାତ୍ରାରେ ବନ୍ଦ କରାଯାଇ ଥିଲା । ପ୍ରାୟ ୫୦ ବର୍ଷ ହେଲାଣି ଆଉ ସେପରି କେହି

କରୁନାହାନ୍ତି । ଅଭ୍ୟାସରେ ପଡ଼ିଗଲାଣି । ପ୍ରତ୍ୟେକ ଗ୍ରାମରେ ଗ୍ରାମବାସୀ ଯଦି ଏଥିପ୍ରତି ଦୃଷ୍ଟି ଦିଅନ୍ତେ, ତେବେ ଯାଇ ହୋଇପାରନ୍ତା ।

ଅସ୍ପୃଶ୍ୟତା ନିବାରଣ ସଭା ସମିତି ହୁଏ । ହାଡ଼ି, ଦଣ୍ଡାସି ଶ୍ରେଣୀର ଲୋକେ ବହୁ ସଂଖ୍ୟାରେ ଯୋଗ ଦେଇଥାନ୍ତି । ବାଉରି, ଧୋବା ପ୍ରଭୃତି ଜାତିର ଲୋକେ ସେତେ ପରିମାଣରେ ଯୋଗଦିଅନ୍ତି ନାହିଁ । ଯୋଗ ଦେଲେ ମଧ୍ୟ ଏମାନଙ୍କ ସହିତ ନବସି ଟିକିଏ ଦୂରରେ ବସନ୍ତି । ହାଡ଼ି ଦଣ୍ଡାସିଙ୍କ ମେଳରେ ବସିଲେ ଛୁଆଁ ହୋଇଯିବେ । ଏବେ ସ୍ୱାଧୀନତା ହେବାପରେ ହରିଜନମାନଙ୍କୁ ସରକାରଙ୍କ ପକ୍ଷରୁ ନାନା ପ୍ରକାର ସାହାଯ୍ୟ ଓ ସୁବିଧା ମିଳିଲା । ଏହି ଧୋବା, ବାଉରି ଜାତିର ଲୋକେ ଏସବୁ ସାହାଯ୍ୟ ଓ ସୁବିଧା ପାଇଲେ । ହାଡ଼ି ଦଣ୍ଡାସିଙ୍କ ଅପେକ୍ଷା ଏମାନେ ଅଧିକ ପରିଶ୍ରମୀ, ଅବସ୍ଥା ମଧ୍ୟ ଟିକିଏ ସ୍ୱଚ୍ଛଳ । ହରିଜନମାନଙ୍କ ମଧ୍ୟରେ ଉନ୍ନତ ଓ ଅବନତ ଶ୍ରେଣୀ ବିଭାଗ କରି ଯେଉଁମାନେ ଅପେକ୍ଷାକୃତ ଅବନତ, ଘୃଣ୍ୟ ଓ ଦରିଦ୍ର ପୁଣି ଅସ୍ପୃଶ୍ୟଙ୍କ ମଧରେ ଅସ୍ପୃଶ୍ୟ, ସେହିମାନଙ୍କୁ ଏହି ସବୁ ସୁବିଧା ଭୋଗ କରିବାରେ ଅଗ୍ରାଧିକାର ଦେବା ଉଚିତ । ଏମାନଙ୍କ ମଧରେ ଏ ବାଛ ବିଚାର ଥିବା ଯାଏ ଉପର ଶ୍ରେଣୀର ଲୋକେ କେତେ ମିଳାମିଶା କଲେ ସୁଦ୍ଧା ଅସ୍ପୃଶ୍ୟତା କଳଙ୍କ ଦୂର ହୋଇପାରିବ ନାହିଁ ।

## ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ କଥା

ଏହି ସମୟରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନେଇ ଆମ ଗଞ୍ଜାମରେ ଦୁଇଦଳ- ପାରଳାଖେମୁଣ୍ଡୀ ମହାରାଜାଙ୍କ ଏକ ଦଳ ଏବଂ ଖଲିକୋଟ ରାଜାସାହେବଙ୍କ ଅନ୍ୟ ଏକ ଦଳ । ପାରଳାଖେମୁଣ୍ଡୀ ଆନ୍ଧ୍ର ପ୍ରଦେଶକୁ ଗଲେ ପଛେ ଯାଉ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଯାଉ । ଏହା ଗୋଟିଏ ଦଳର ଇଚ୍ଛା । ପାରଳା ଓ ଜୟପୁରକୁ ମିଶାଇ ସ୍ୱତନ୍ତ୍ର ପ୍ରଦେଶ ଗଠନ ହେଉ, ଅନ୍ୟ ଦଳର ଇଚ୍ଛା । ପ୍ରଥମୋକ୍ତ ଦଳରେ ଶ୍ରୀ ଶଶୀଭୂଷଣ ରଥ, ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ଏବଂ ଅନ୍ୟ ଦଳରେ ସମଗ୍ର ଗଞ୍ଜାମର ଯୁବକମାନେ । ଏହି ପ୍ରଶ୍ନ ନେଇ ବ୍ରହ୍ମପୁରରେ ଏକ ବିରାଟ ସମ୍ମିଳନୀ ଅନୁଷ୍ଠିତ ହେଲା । ମାନ୍ଦ୍ରାଜର ସୁବିଖ୍ୟାତ ନେତା ଓ ବାଗ୍ମୀ ଶ୍ରୀ ସତ୍ୟମୂର୍ତ୍ତି ସଭାପତି ପଦରେ ଅଧିଷ୍ଠିତ ହେଲେ । ଓଡ଼ିଶାର ପ୍ରଗତିବାଦୀ ନେତା ଶ୍ରୀ ଗୋଦାବରୀଶ ମିଶ୍ର ପ୍ରଭୃତି ଯୋଗଦେଇ ଥିଲେ । ଅପରଦଳ ସତ୍ୟମୂର୍ତ୍ତିଙ୍କ ନାମରେ କୁତ୍ସାରଟନା କଲେ । ଯୁବକମାନେ ଶଶୀଭୂଷଣ ବାବୁ ପ୍ରଭୃତି ସଭାକୁ ନଆସିବା ପାଇଁ ଧରିବସିଲେ । ନିମନ୍ତ୍ରିତ ହୋଇଥିଲେ ମଧ ସେମାନେ ସଭାକୁ ଆସୁଥିବା ବେଳେ ସ୍ୱେଚ୍ଛାସେବକ ମାନେ ତାଙ୍କୁ ବାରଣ କଲେ । ଶଶୀବାବୁ ସଭାକୁ ଆସିବା ପାଇଁ ଜୋର୍ ଜବରଦସ୍ତ କରୁଥିବା ବେଳେ ମୁଁ

ଧାଇଁ ଯାଇ ସ୍ୱେଚ୍ଛାସେବକମାନଙ୍କୁ ହଟାଇ ତାଙ୍କୁ ଭିତରେ ପ୍ରବେଶ କରାଇଥିଲି । ପାରଳାଖେମୁଣ୍ଡୀ ମହାରାଜା ଏ ସମ୍ମିଳନୀକୁ ସର୍ବପ୍ରକାର ସାହାଯ୍ୟ କରୁଥିଲେ । ଶ୍ରୀ ଗୋରାଚାନ୍ଦ ପଟ୍ଟନାୟକ ଏ ସମ୍ମିଳନୀର ଅଗ୍ରଣୀ ଥିଲେ । ମହାସମାରୋହରେ ସମ୍ମିଳନୀ ସାଙ୍ଗ ହୋଇଥିଲା । ଯୁବକମାନେ ବିପୁଳ ଜୟଧ୍ୱନି କରିଥିଲେ । ଅନ୍ୟ ଦଳୀୟ ବ୍ୟକ୍ତିମାନେ ଲଜ୍ଜିତ ହୋଇ ଫେରିଥିଲେ । ସମ୍ମିଳନୀକୁ ଭଣ୍ଡୁର କରିବା ପାଇଁ ସେମାନଙ୍କର ପ୍ରଚେଷ୍ଟା ବିଫଳ ହୋଇଥିଲା ।

## ଠକ୍କର ବାପାଙ୍କ ହରିଜନ ଗସ୍ତ

ଠକ୍କର ବାପା (ଶ୍ରୀଅମୃତ ଠକ୍କର) ହରିଜନ ଗସ୍ତରେ ଆସିଥିଲେ । ସେ ନିଖିଳ ଭାରତ ହରିଜନ ସଂଘର ଥିଲେ ସମ୍ପାଦକ । ଓଡ଼ିଶାର ସମସ୍ତ ଜିଲ୍ଲା ଗସ୍ତ କରି ଶେଷରେ ଗଞ୍ଜାମକୁ ଆସିଲେ । ଟ୍ରେନ୍‌ରୁ ଓହ୍ଲାଉ ଓହ୍ଲାଉ ଗଞ୍ଜାମରେ କି କି କାମ ହୋଇଛି ପଚାରିଲେ । ମୁଁ ଗୋଟିଏ ତାଲିକା ପ୍ରସ୍ତୁତ କରି ରଖିଥିଲି । ହାତକୁ ବଢ଼ାଇ ଦେଲି । ସେ ତା ଦେଖି ବଡ଼ ସନ୍ତୁଷ୍ଟ ହେଲେ । ପ୍ରାଦେଶିକ ହରିଜନ ସଂଘର ସଭାପତି ଆଚାର୍ଯ୍ୟ ହରିହର ଦାଶ ତାଙ୍କ ସଙ୍ଗରେ ଆସିଥିଲେ । ସେ ମତେ କହିଲେ ''ବାଞ୍ଛାନିଧି ! ବୁଢ଼ା ତୋ ଉପରେ ଭାରି ସନ୍ତୁଷ୍ଟ । କାଗଜ ପତ୍ର ସବୁ ଠିକ୍ ଠାକ୍ କରିଥା । ଅନ୍ୟାନ୍ୟ ଜିଲ୍ଲାର କର୍ମୀମାନଙ୍କ ଉପରେ ସେ ଭାରି ଖପା ହୋଇ ଆସିଛନ୍ତି ।'' ବ୍ରହ୍ମପୁରର ବିଭିନ୍ନ ହରିଜନ ସାହି ଏବଂ ସଂଘ ପକ୍ଷରୁ ଖୋଲାଯାଇ ଥିବା ବିଦ୍ୟାଳୟ ସବୁ ପରିଦର୍ଶନ କଲେ । ବ୍ରହ୍ମପୁର ଠାରୁ ପ୍ରାୟ ୧୫ ମାଇଲ ଦୂର ବୁରୁପଡ଼ା ଗ୍ରାମ ହରିଜନ ବିଦ୍ୟାଳୟ ଦିନେ ଦେଖିବାକୁ ଗଲେ । ଗାଁ ମୁଣ୍ଡରେ ପ୍ରଥମେ ହାଡ଼ିସାହି । ସେ ସାହିର ବିଦ୍ୟାଳୟ ଦେଖା ସରିଲା । ତା'ପରେ ବୁରୁପଡ଼ା ଗାଁ ଦେଖିବାକୁ ଗଲୁ । ଗାଁର ଅପର ମୁଣ୍ଡରେ ଏକ ବିରାଟ ବାଉରି ସାହି । ସେ ସଂପର୍କରେ ମତେ ଯାହା ପଚାରିଲେ ମୁଁ କିଛି କହିପାରିଲି ନାହିଁ । କାରଣ ମୁଁ ସେ ସାହିରେ ପାଦ ପକେଇ ନାହିଁ । ମୁଁ ଲଜ୍ଜିତ ହେଲି । ବାଟରେ ଫେରିଲା ବେଳେ ସେ ପ୍ରତି ୧୦ /୧୫ ମିନିଟ୍ ଛାଡ଼ି କହି ଲାଗିଥାନ୍ତି "So after all, Mr. Patnayak has discovered the Bauri Street of Burupada as Columbus discovered America." ଏହିପରି ବାରମ୍ବାର କହି ମତେ ଲଜ୍ଜିତ କରୁଥାନ୍ତି । ତାଙ୍କର ସେ କଥାରେ ଏହି ଇଙ୍ଗିତ ଥାଏ ଯେ ଏପରି କେବେ କରିବ ନାହିଁ । ଯେଉଁଠାକୁ ଯିବ ସେଠାରେ ସମସ୍ତ ହରିଜନ ବସ୍ତି ଦେଖିବ । କାହାର କ'ଣ ସୁବିଧା ଅସୁବିଧା ବୁଝିବ ।

ବ୍ରହ୍ମପୁର ଫେରିବାପରେ ମତେ କେଉଁଠାରେ ଖାଉଛ ବୋଲି ପଚାରିଲେ । ମୁଁ

ହୋଟେଲରେ ଖାଏ ବୋଲି କହିଲି । ସେ ନିଜ ସାଙ୍ଗରେ ଖାଇବାକୁ କହିଲେ । ଭଲ ଖାଇ ବସିଲି, ପୁଣି ସେହି ବାଉରି ସାହି discovery କଥା । ମୁଁ ସେତେବେଳକୁ ହରିଜନ ସେବକ ଥାଏ । ଭାରତ ସେବକ ସଂଘ ସଂସ୍ଥା ପରି ହରିଜନ ସେବା ଅନୁଷ୍ଠାନକୁ ସଂସ୍ଥା କରି ସେବକ ନିଯୁକ୍ତି କରାଯାଇଥାଏ । ବିଦାୟ ନେଲାବେଳେ ବୁଢ଼ା ମତେ ଟ୍ରେନ୍ ଭିତରେ ଖୋଜିଲେ, "Where is Banchha?" ମୁଁ ଦେଖା କରିବାରୁ ମୋ ପିଠିରେ ହାତମାରି କହିଲେ "I am satisfied with your work. Of corse your remuneration is too small. Still go on doing the work well." ତାଙ୍କଠାରୁ ଏପରି ପ୍ରଶଂସା ବାକ୍ୟ ଶୁଣିବା କମ୍ ଭାଗ୍ୟର କଥା ନୁହେଁ । ବ୍ରହ୍ମପୁରରେ ତାଙ୍କର ଅବସ୍ଥାନ କାଳରେ ସେଠାରେ ପ୍ରାଦେଶିକ କଂଗ୍ରେସ କର୍ମୀମାନଙ୍କ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ମୁଁ ସେଥିରେ ଅବଶ୍ୟ ଯୋଗ ଦେଇଥିବି ଅନୁମାନ କରି କହିଲେ "Did you attend the conference yesterday !" ମୁଁ ହିଁ କରିବାରୁ କହିଲେ, "Why did you go ?" ମୁଁ କହିଲି, "I went there to see friends who had come there from all over the province." ସେ କହିଲେ, "No, you should not have gone there, I have not gone, you must devote twenty four hours only for Harijan work." ଏକନିଷ୍ଠ ହୋଇ ନିଜ କର୍ତ୍ତବ୍ୟ କର୍ମରେ ଲିପ୍ତ ରୁହ ବୋଲି କହିବା ତାଙ୍କର ଉଦ୍ଦେଶ୍ୟ ।

## କୋଦଳା କଂଗ୍ରେସ୍ ସମ୍ମିଳନୀ

ମୁଁ ଏହି ହରିଜନ କାମ କରିବା ସମୟରେ କୋଦଳାଠାରେ ଗଞ୍ଜାମ ଜିଲ୍ଲା କଂଗ୍ରେସ ସମ୍ମିଳନୀ ଅନୁଷ୍ଠିତ ହେବା ସ୍ଥିର ହୋଇଥିଲା । ଶ୍ରୀ ଭି.ଭି. ଗିରି ସଭାପତି ଭାବେ ନିମନ୍ତ୍ରିତ ହୋଇଥିଲେ । କଟକରୁ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ, ଶ୍ରୀ ଗୌରାଙ୍ଗଚରଣ ଦାସ ପ୍ରଭୃତି ଆସିଥିଲେ । ଶ୍ରୀ ଦିବାକର ପଟ୍ଟନାୟକ ଏବଂ ଶ୍ରୀ ଜଗନ୍ନାଥ ମିଶ୍ର ପ୍ରଭୃତି ଏ ସମ୍ମିଳନୀର ପ୍ରଧାନ ଉଦ୍ୟୋକ୍ତା । ସମ୍ମିଳନୀ କୋଦଳା ସଡ଼କ ନିକଟରେ ଥିବା ଏକ ଆମ୍ବ ତୋଟାରେ ହେବାର ସ୍ଥିର ହୋଇଥିଲା । ଖଲିକୋଟ ରାଜାତ କଂଗ୍ରେସ ବିରୋଧୀ ଥିଲେ, ତାଙ୍କ ଇଙ୍ଗିତରେ ତୋଟା ମାଲିକ ସେଠାରେ ସଭା କରିବାକୁ ମନା କଲେ । ଶ୍ରୀ ଗିରି ଏବଂ ତାଙ୍କ ଭଗିନୀ ଶ୍ରୀମତୀ ଲକ୍ଷ୍ମୀବାଇ ଆସି ପହଞ୍ଚିବା ମାତ୍ରେ ଗିରିଙ୍କ ଜୟ ନାଦରେ ତୋଟା କମ୍ପି ଉଠିଲା । ରଜାଙ୍କ ପକ୍ଷର ଜଣେ ମାତ୍ର ସମର୍ଥକ ଦୁଇ ବାହୁ ଉପରକୁ ଟେକି ଆମକୁ ବିଦ୍ରୂପ କରି ବାଡ଼ି ନାଡ଼ି ନାଡ଼ି ଡ଼ାକ ପକାଇଲେ, ଗିରିକି ଜୟ, ମହେନ୍ଦ୍ର ଗିରିକି ଜୟ, ବିନ୍ଧ୍ୟ ଗିରିକି

ଜୟ, ହିମାଳୟ ଗିରିକି ଜୟ, ବୁଦ୍ଧ ଖୋଲ ଗିରିକି ଜୟ, କୁମାରଶୁଣୀ ଗିରିକି ଜୟ ଇତ୍ୟାଦି । ତାଙ୍କର ଏଭଳି ଡାକ ଦେଇ ଡେଙ୍ଗିବା ଦୃଶ୍ୟ ଜନଗହଳି ମଧ୍ୟରେ ହାସ୍ୟୋଦ୍ଦୀପକ ହୋଇଥିଲା । ଶେଷରେ ଗିରିଙ୍କ ପରାମର୍ଶ ଅନୁଯାୟୀ ସଭା ସେଠାରେ ହେଲା ନାହିଁ । ଗିରି ପ୍ରଭୃତି ଫେରିଗଲେ । ଆମେ ସବୁ ଯାଇ ମଠସରସିଙ୍ଗିଠାରେ ଗୋଟିଏ ପଡ଼ିଆରେ ସଭାକଲୁ । ରାତିରେ ଛଚିନା ଜଗନ୍ନାଥପୁରଠାରେ ଆମ୍ଭମାନଙ୍କର ସହକର୍ମୀ ଜଗନ୍ନାଥ ମିଶ୍ରଙ୍କ ଶ୍ୱଶୁର ରାଜଗୁରୁଙ୍କ ଘରେ ଆଶ୍ରୟ ନେଲୁ । ଆମର ଜିପ୍ ଗାଡ଼ିଟି ମଠସରସିଙ୍ଗିଠାରେ ଥାଏ । ପ୍ରାୟ ରାତି ୭/୮ଟା ବେଳେ ରାଜାଙ୍କ ବଂଶୀୟ ଜଣେ ରେଞ୍ଜ ଅଫିସର କେତେ ଲୋକ ଧରି ଆସି ଜିପ୍ ଟାୟର୍‌ରେ କଣ୍ଟାମାରି ଫଟାଇ ଦେଲେ ଏବଂ ଡ୍ରାଇଭର ଓ କ୍ଲିନର ଉପରେ ଆକ୍ରମଣ କଲେ । ଡ୍ରାଇଭରକୁ ତଳେ ପକାଇ ଦେଇ ରେଞ୍ଜର ତା ଉପରେ ମାଡ଼ିବସି ମାଡ଼ ମାରିବାକୁ ଆରମ୍ଭ କଲେ । ଡ୍ରାଇଭର ଆତ୍ମରକ୍ଷା ଉଦ୍ଦେଶ୍ୟରେ ଅଣ୍ଟାରେ ଧରିଥିବା ଏକ ବଡ଼ ଛୁରୀରେ ରେଞ୍ଜରଙ୍କ ପେଟକୁ ଭୁଷିଦେଲେ । ରେଞ୍ଜରକୁ ଧରି ତାଙ୍କ ଲୋକେ ଡ୍ରାଇଭରକୁ ଛାଡ଼ିଦେଇ ଚାଲିଗଲେ । ଏ ଖବର ପାଇ ଆମେ ସବୁ ଧାଇଁ ଗଲୁ । ଜିପ୍‌କୁ ଠେଲି ପେଲି ବଡ଼ କଷ୍ଟରେ ଜଗନ୍ନାଥପୁର ଆଣି ରାଜଗୁରୁଙ୍କ ଖଳା ଭିତରେ ରଖିଲୁ ।

ଆମେ ସବୁ ପ୍ରାୟ ୩୦/୪୦ ଜଣ । ରାଜଗୁରୁ ଆମ୍ଭମାନଙ୍କର ରାତ୍ରୀ ଭୋଜନ ବ୍ୟବସ୍ଥା କରିଥିଲେ । ଧାଡ଼ି ଧାଡ଼ି ହୋଇ ଖାଇ ବସିଲୁ । ତର୍କାରୀ ମଧ୍ୟରେ ଝଡ଼ା ମହୁର ହୋଇଥିଲା । ଆମ୍ଭମାନଙ୍କ ମଧ୍ୟରୁ ଅନେକେ ଝଡ଼ା ମହୁର କ'ଣ ଜାଣି ନଥିଲୁ । ମୁଁ ସେତେବେଳକୁ ଆମିଷ ଖାଉଥାଏ । ବଡ଼ ବଡ଼ ମାଛକୁ ସିଝାଇ ଝାଡ଼ିଦେଲେ କଣ୍ଟାରୁ ମାଂସ ସବୁ ଝଡ଼ିଯାଏ । ସେହି ଝଡ଼ା ମାଂସ ସହିତ, ଦେଶିଆଳୁ, କଦଳୀ, ବଡ଼ି ଇତ୍ୟାଦି ଦେଇ ତର୍କାରୀ ହୁଏ । ତାହାକୁ ଝଡ଼ା ମହୁର କହନ୍ତି । ସାରା ଦିନର ସଂଘର୍ଷ ଓ ପରିଶ୍ରମ ପରେ ଏ ମିଳିତ ଭୋଜନ ବଡ଼ ତୃପ୍ତି ଦାୟକ ହୋଇଥିଲା । ଭୋଜନ ଶେଷରେ ଗୋଟିଏ ବିଶାଳ ଗୃହରେ ସମସ୍ତଙ୍କ ନିଦ୍ରା, କିନ୍ତୁ ଜିପ୍ ଦୁର୍ଘଟଣା ଯୋଗୁଁ ସମସ୍ତଙ୍କ ମନରେ ଆତଙ୍କ କାଳେ ରାଜାଘର ଲୋକେ ଆସି ଆକ୍ରମଣ କରିବେ । ରାଜଗୁରୁଙ୍କ ଘରୁ ବାହାରିଲା ବଡ଼ ବଡ଼ ଠେଙ୍ଗା ପ୍ରାୟ ୪୦/୫୦ ହେବ । ଏତେ ଠେଙ୍ଗା ତାଙ୍କ ଘରେ କାହିଁକି ସାଇତା ହୋଇଥିଲା କେଜାଣି ? ସମସ୍ତେ ଗୋଟିଏ ଗୋଟିଏ ଠେଙ୍ଗା ପାଖରେ ରଖି ଶୋଇଲୁ । ବାହାରେ ସାମାନ୍ୟ ପତ୍ର ଖଡ଼ ଖଡ଼ ହେଲେ ସମସ୍ତେ ଚମକି ଉଠନ୍ତି- ହଁ ଆସିଲେ କହି ଠେଙ୍ଗା ସଜାଡ଼ି ବସନ୍ତି । ଗୌରାଙ୍ଗ ବାବୁଙ୍କର କେବଳ ଗୋଟିଏ ହାତ ଥାଏ, ମୋଟା, ଗେଡ଼ା, ବଳିଷ୍ଠ ଲୋକ । ସେ ଠେଙ୍ଗାଟିଏ ଧରି ଦୁଆର ମୁହଁରେ ବସିଥାନ୍ତି । ରାଜାଘର ଲୋକେ ଆସିଲେ ଆତ୍ମରକ୍ଷା କରିବା ସଙ୍ଗେ ସଙ୍ଗେ ପାନେ ପାନେ ଦେବେ । ମୁଁ ସେ ଦିନ ଗାଁରୁ ସାଇକେଲ ଚଢ଼ି ଯାଉଥିଲି, ଖାଇବା ସଙ୍ଗେ ସଙ୍ଗେ ଘୋର ନିଦରେ

ଶୋର ପଡ଼ିଲି । ସକାଳୁ ପୋଲିସ ଆସି ଦିବାକର ବାବୁ ସମେତ କେତେ ଜଣଙ୍କୁ ଗ୍ରେପ୍ତାର କଲେ । ମତେ କେଜାଣି କାହିଁକି ଛାଡ଼ି ଦେଇଥିଲେ । ସମସ୍ତେ ଜାମିନରେ ଖଲାସ ହେଲେ । ଦୀର୍ଘଦିନ ଧରି କେସ୍ ଚାଲିଲା । ଶେଷରେ କେବଳ ଡ୍ରାଇଭର କ୍ଲିନର୍ ଦଣ୍ଡିତ ହେଲେ ।

## ଠକ୍କର ବାପାଙ୍କ ପୁନର୍ବାର ଗସ୍ତ

ଠକ୍କର ବାପା ଥରେ କଟକ ଆସିଲେ । ମୋର ସ୍ୱାସ୍ଥ୍ୟ ଖରାପ ଥିବା ହେତୁ କୈବଲ୍ୟ କୁଟୀରରୁ ଗାଁକୁ ଆସିଥିଲି । ସେ ଖଦୀଭଣ୍ଡାର ମେନେଜର କୃପାସିନ୍ଧୁ ପଣ୍ଡାଙ୍କ ଠାକୁ ଗୋଟିଏ ଟେଲିଗ୍ରାମ କରି ମତେ କଟକ ପଠାଇବାକୁ କହିଲେ । ମୁଁ ତାଙ୍କୁ ଗୋଟିଏ ପତ୍ର ଦେଇ ଜଣାଇଲି ଯେ ମୋର ସ୍ୱାସ୍ଥ୍ୟ ଖରାପ, ଆଉ ସେ କେତେଦିନ କଟକରେ ରହିବେ ଜଣାଇଲେ ମୁଁ ସେ ମଧରେ ଦେଖା କରିବାକୁ ଯିବି । ସେ ଉତ୍ତର ଦେଲେ ଯେ ଅମୁକ ତାରିଖ ଯାଏଁ ରହୁଛନ୍ତି । ମୁଁ ଆଉ ଉତ୍ତର ନ ଦେଇ ଦେଖା କରିବାକୁ ବାହାରିଲି । ମୁଁ ଗଲାବେଳକୁ ସେ ଗୋଟିଏ ଆଦିବାସୀ କମିଟୀରେ ବସିଛନ୍ତି । ଅଧ ଘଣ୍ଟାଏ ତାଙ୍କୁ ଅପେକ୍ଷା କରି ବାହାରଘରେ ବସିଲି । ସେ ଆସିଲେ, ମୁଁ କେତେବେଳୁଁ ଆସିଲିଣି ପଚାରିଲେ । ତାଙ୍କୁ କାହିଁକି ଆସିବା ସଙ୍ଗେ ସଙ୍ଗେ ଦେଖା କଲି ନାହିଁ ବୋଲି କହିବାରୁ ସେତ ସଭାରେ ବସିଥିଲେ, ସେଥିପାଇଁ ମୁଁ ବାହାରେ ଅପେକ୍ଷା କଲି ବୋଲି ଜଣାଇଲି । ସେ କହିଲେ, ''ସେ କମିଟୀ କାମ କ'ଣ ଆମ କାମଠୁଁ ଅଧିକ ?'' ସଙ୍ଗେ ସଙ୍ଗେ ଦେଖା ନ କରିବା ହେତୁ ମୃଦୁ ଭର୍ତ୍ସନା କଲେ । ତାପରେ ତାଙ୍କର ପତ୍ରର ଉତ୍ତର କାହିଁକି ନଦେଲି ପଚାରିଲେ । ମୁଁ କହିଲି ମୁଁ ତ ଜାଣିଲି ଅମୁକ ତାରିଖ ଯାଏଁ ସେ ରହୁଛନ୍ତି । ସେଥିପାଇଁ ପ୍ରସ୍ତୁତ ହୋଇ ଆସିଲି । ଉତ୍ତର ଦେବା ଆବଶ୍ୟକ ମନେ କଲି ନାହିଁ । ସେତିକିରେ ସେଦିନ ଯାକ ଘଡ଼ିକେ ପହଡକେ କହିବାକୁ ଲାଗିଲେ, "You have no courtesy even to reply to my letter." ମୁଁ ଲଜ୍ଜିତ ହେଲି । କୈବଲ୍ୟ କୁଟୀର ଦେଖିବାକୁ ଗଲେ, ମୁଁ ସାଙ୍ଗରେ ଯାଉଥାଏ । ମୁଁ ଆସନ ଠିକ୍ କରିବି ବୋଲି ଟିକିଏ ଆଗରେ ଗଲି । ଗୋଡ଼ରୁ ଜୋତା ଦୁଇଟି ତର ତର ଫିଙ୍ଗି ଦେଇ ଆସନ ଠିକ୍ କରୁଛି, ଠକ୍କର ବାପା ପଚାରିଲେ, "Who had kept shoes like this, one this way and the other that way" ଏହା କହି ନିଜର ବାଡ଼ିରେ ଜୋତା ଦୁଇଟି ସମାନ କରି ସଜେଇ ରଖିଲେ ।

ସଂଧ୍ୟାରେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ଡାକିବା ପାଇଁ ସେ ମତେ ପଠାଇଲେ । ମୁଁ ଯାଇ ତାଙ୍କ ବସାରେ ତାଙ୍କୁ ଦେଖିଲି ନାହିଁ । ଏକଥା କହିବାରୁ ସେ

କହିଲେ, "Did you enquire where he had gone" ମୁଁ ବଡ଼ ସଂକୋଚରେ କହିଲି, "He has gone to Cinema" କହିବା ମାତ୍ରେ ସେ କହିଲେ "Hang him, hang him". ତାପରେ ପ୍ରଶ୍ନ କଲେ କେତୋଟି ସିନେମା ହଲ୍ ଅଛି ? ମୁଁ କହିଲି ଦୁଇଟା । ସେ କହିଲେ, "Alright, you go and get him from any cinema hall. Let us see how intelligent you are" କ'ଣ କରିବି, କିମିତି ସିନେମା ହଲ୍‌ରେ ପଶିବି, ଅନ୍ଧାରରେ କିମିତି ଦେଖିବି । ଦେବାତ୍ ମୁଁ ଗଲାବେଳକୁ ସିନେମା ସରିଥିଲା । ମୁଁ ଆସି ପହଞ୍ଚିଲା ବେଳକୁ ବିଶ୍ୱାସ ରାୟ ଆସି ହାଜର । ପଚାରିଲେ "Well Biswasaray ! where did you go ?" ସେ ଦମ୍ଭର ସହ କହିଲେ, "Why Sir, Cinema" ସେ କହିଲେ, "Cinema, Hang you, hang you" ବିଶ୍ୱାସ ରାୟ କହିଲେ, "Why Sir, Subash Babu goes, Jawaharlal goes." ସେତିକିରେ ଠକ୍କର ବାପା ନିରୁତ୍ତର ହେଲେ । ଅନ୍ୟ ପ୍ରସଙ୍ଗ ଉଠାଇ ଥିଲେ । ସେ ଥରେ ମତେ ତାଙ୍କର ଲୁଗା ଧୋଇବାକୁ କହିଲେ । ମୁଁ ତାଙ୍କର ସେବାକରି ଧନ୍ୟ ହେବା ପାଇଁ ଆନନ୍ଦରେ ଲୁଗା ନେଇଗଲି । ସେ ଏତେ ବଡ଼ ଲୋକ ଏତେ ବଡ଼ ଲମ୍ବା କୋଟ, ଗୋଟାଏ ମୋଟା ଲମ୍ବା ଚଉଡ଼ା ଖଦଡ଼ ଲୁଗା, ପାଣିରେ ଯିମିତି ପକାଉଛି ଆଉ ଉଠାଇ ପାରିଲି ନାହିଁ । ବଡ଼ କଷ୍ଟରେ ଧୋଇ ଶୁଖାଇଲି । କିନ୍ତୁ ବଡ଼ ଆନନ୍ଦ, ତାଙ୍କ ଭଳି ଜଣେ ମହାପୁରୁଷଙ୍କ ସେବା କରିବା ସୁଯୋଗ ମିଳିଲା ।

ଆଉଥରେ ଡେଲାଙ୍ଗ ଗାନ୍ଧୀ ସେବା ସଂଘ ସମ୍ମିଳନୀରେ ଦେଖାହେଲା । ସେତେବେଳକୁ ମୁଁ ଜିଲ୍ଲାବୋର୍ଡ଼ ମେମ୍ବର । ହରିଜନସେବା ନିୟମିତ ଭାବରେ କରି ନ ପାରି ମୋର ପାରିଶ୍ରମିକ ନେଉନଥିଲି । ଏକଥା ପ୍ରାଦେଶିକ ହରିଜନ ସଂଘକୁ ଜଣାଇ ଦେଇଥିଲି । ସେ ମତେ ସେଠାରେ ପଚାରିଲେ ହରିଜନ କାମ କିପରି ଚାଲିଛି ? ମୁଁ କହିଲି ଟିକିଏ ଟିକିଏ ଢ଼ିଲା ହୋଇଯାଇଛି । ସେ କହିଲେ, "You have become the District Board member, you have become a great man, why should you think of poor Harijans." ସମ୍ମିଳନୀ ଶେଷହେଲା । ସେ ଗଞ୍ଜାମ ଗସ୍ତରେ ଆସିଲେ । ଭାରତ ସେବକ ସମାଜ ସଭ୍ୟ ଲକ୍ଷ୍ମୀନାରାୟଣ ସାହୁ ମଧ ତାଙ୍କ ସାଙ୍ଗରେ ଆସିଥିଲେ । ବ୍ରହ୍ମପୁର ଷ୍ଟେସନ ନିକଟ ଡାକ ବଙ୍ଗଳାରେ ରହିଲୁ । ସେଠାରୁ ହରିଜନ ବସ୍ତି ଦେଖିବାକୁ ଯାଉଁ ଯାଉଁ ବାଟରେ ପୋଷ୍ଟ ଅଫିସ ନିକଟରେ ଡାକ ଟିକଟ ଆଣିବା ପାଇଁ ମତେ ପଠାଇଲେ । ଏହି ଅବସରରେ ମୋର କେତେ ଜଣ ବିପକ୍ଷ କଂଗ୍ରେସ କର୍ମୀ ଆସି କହିଲେ, ଏ କିଛି କାମ କରୁନାହାନ୍ତି, କିନ୍ତୁ ହରିଜନ ସେବକ ସଂଘରୁ ଦରମା ପାଉଛନ୍ତି । ମୁଁ ଫେରିବା ପରେ ଠକ୍କର ବାପା କହିଲେ, "Banchanidhi, listen to what they say" ମୁଁ କହିଲି, ‘‘କଣ ଆପଣମାନେ

କହୁଛତି ?'' ସେମାନେ କହିଲେ ''ତୁମେ କିଛି କାମ କରୁନାହଁ ।'' ମୁଁ ଠକ୍କରବାପାଙ୍କୁ କହିଲି "That is what I told you at Delang, and that is why I do not take my remuneration" ସେ ସେମାନଙ୍କୁ କହିଲେ ''କାମ କର୍‌ତେ ନାହିଁ, ପୈସାଭି ଲେତେ ନହିଁ ।'' ସେମାନେ ଲଜ୍ଜିତ ହେଲେ । ପରେ ମତେ ସେମାନେ କହିଲେ, ''ତମେ କେଡ଼େ ଚାଲାକ ହେ । ଦରମା ନେଉ ନାହିଁ ଅଥଚ ଆମକୁ କେବେ କହିନାହିଁ । ଆମେ ସବୁ ବୋକା ହେଲୁ ।''

୧୯୩୨ ଠାରୁ ୧୯୪୧ ଯାଏ ହରିଜନ ସେବକ ସଂଘରେ କାମ କଲି । ପ୍ରଥମେ ଗଞ୍ଜାମ ଜିଲ୍ଲା ହରିଜନ ସେବକ ସଂଘରେ କର୍ମୀ ଭାବରେ । ତତ୍‌ପରେ ସଂପାଦକ ଏବଂ ଶେଷରେ ହରିଜନ ସେବକ । ଠକ୍କର ବାପାଙ୍କ ନିର୍ଦ୍ଦେଶରେ କଟକ ହରିଜନ ଛାତ୍ରାବାସ କୈବଲ୍ୟ କୁଟୀରରେ ସୁପରିଣ୍ଟେଣ୍ଡେଣ୍ଟ ଭାବରେ ୧୨/୩/୩୮ ଠାରୁ ୨୫/୨/୪୧ ଯାଏ ରହିଲି । ଏହି ସମୟରେ ସମସ୍ତ ପରିବାର ସହ କଟକରେ ବାସ କରିଥିଲି । ନିଖିଳ ଓଡ଼ିଶା ସଙ୍ଗୀତ ସମ୍ମିଳନୀରେ ମନ୍ଦା ପ୍ରତିଯୋଗିତା କରି



କଟକ କୈବଲ୍ୟ କୁଟୀରର ସୁପରିଣ୍ଟେଣ୍ଡେଣ୍ଟ ଥିଲାବେଳେ
ନିଜର ଦୁଇପୁତ୍ର ପ୍ରଫୁଲ୍ଲ ଓ ପ୍ରମୋଦଙ୍କ ସହିତ

ପ୍ରଥମଶ୍ରେଣୀ ପ୍ରମାଣପତ୍ର ଲାଭ କରିଥିଲା । ୧୯୩୬-୩୭ରେ ଗଞ୍ଜାମ ଜିଲ୍ଲା ବୋର୍ଡ଼ର ସଭ୍ୟ ଥିଲି । ଏହି ସଭ୍ୟ ଥିବା ସମୟରେ ହଳଦିଆ ପଦର ଠାରେ ଭାରତ ସ୍କାଉଟ ମାଷ୍ଟର ଟ୍ରେନିଂ ଲାଭ କରିଥିଲି, ଏବଂ ପରେ କ୍ଷତ୍ରିବରପୁର ନିକଟରେ ରସାଳବନ ସ୍କାଉଟ କ୍ୟାମ୍ପରେ ଜିଲ୍ଲା ବୋର୍ଡ଼ ଶିକ୍ଷକମାନେ ସ୍କାଉଟ ଟ୍ରେନିଂ ପାଇବା ବ୍ୟବସ୍ଥା କରାଇଥିଲି । ଲାଗେ ଲାଗେ ଦୁଇଟି କ୍ୟାମ୍ପ ହୋଇଥିଲା । ପ୍ରଥମଟିରେ ଶ୍ରୀ ଉମାଚରଣ ପଟ୍ଟନାୟକ ଡାଇରେକ୍ଟର, ଏବଂ ଦ୍ୱିତୀୟଟିରେ ମୁଁ । ଉଦ୍‌ଘାଟନ ଦିବସରେ ଶ୍ରୀ ହରେକୃଷ୍ଣ ମହାତାବ ସଭାପତିତ୍ୱ କରିଥିଲେ । ମନ୍ଦାକିନୀ ସ୍କାଉଟ ଟ୍ରେନିଂ ଲାଭ କରିଥିଲା, ଏବଂ ସେଦିନ ତାର ଶିକ୍ଷା ପ୍ରଦର୍ଶନ କରି ସମସ୍ତଙ୍କର ପ୍ରଶଂସା ଭାଜନ ହୋଇଥିଲା ।

କଂଗ୍ରେସ ମନ୍ତୀମଣ୍ଡଳ ଗଠିତ ହେଲା । ଶ୍ରୀ ବିଶ୍ୱନାଥ ଦାଶ ପ୍ରଧାନମନ୍ତ୍ରୀ ହେଲେ । ମୁଁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିବା ଦୋଷରେ ପାରମ୍ପରିକ କରଣ କାମରୁ ଡ଼ିସ୍‌ମିସ୍ ହୋଇଥିଲି । କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ହେବାରୁ ପୁଣି ମୁଁ ଉକ୍ତ କାମରେ ପୁର୍ନନିଯୁକ୍ତି ଆଦେଶ ପାଇଲି ୪-୯-୩୯ରେ । ତଥାପି କୈବଲ୍ୟ କୁଟୀର ଛାଡ଼ି ନଥାଏ । ୩୫-୨-୪୧ରେ କୈବଲ୍ୟ କୁଟୀର ଛାଡ଼ିଲି । ପରଶୁରାମ ମହାନ୍ତି (ମୋ ସନ୍ତୁ) ଉକ୍ତ କାର୍ଯ୍ୟରେ ନିଯୁକ୍ତ ହେଲେ ।

ଏଥିପୂର୍ବରୁ ଓଡ଼ିଶାର ପ୍ରଧାନ ମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାଶଙ୍କ ପ୍ରେରଣାରେ Intensive Cultivation ନୂତନ ଯୋଜନା ପ୍ରକାରେ ଏକ ସାହାଯ୍ୟ ପ୍ରାପ୍ତ ଫାର୍ମ କରିଥିଲି । (Subsidised Agricultural Farm) । ସାହାଯ୍ୟ ପ୍ରାପ୍ତିର ଅର୍ଥ କୃଷି ବିଭାଗ କର୍ମଚାରୀମାନେ କେବଳ ପରାମର୍ଶ ଦେବେ, କେଉଁ କିଆରୀରେ କ'ଣ କରିବାକୁ ହେବ, କିମିତି କରିବାକୁ ହେବ । ଖର୍ଚ୍ଚ ସବୁ ଆମ ହାତରୁ । କୋଡ଼ିଏ ପଚିଶି ଏକର ଜମିରେ ବିଭିନ୍ନ ପ୍ରକାର ଫସଲ, ଆମ୍ବ, ନଡ଼ିଆ, ଲେମ୍ବୁ ପ୍ରଭୃତି ବୃକ୍ଷ ରୋପଣ । ଗାଡ଼ିଆରେ ମାଛ ଚାଷ ଇତ୍ୟାଦି । ସବୁ ତାଙ୍କରି ପରାମର୍ଶରେ କଲି । କିଛି ହେଲା ନାହିଁ । ଆଗେ ପୂର୍ବ କାଳିଆ ଚାଷ ଅନୁସାରେ ଯାହା ଧାନ ଆଦାୟ ହେଉଥିଲା ତା' ମଧ ହେଲା ନାହିଁ । କଟକୀ ପୋଟଳ, ବଡ଼ ବଡ଼ ମୂଳା ଲଗାଯାଇ ଥିଲା, ସବୁଗଲା । କଟକରୁ ଯାଆଁଳ ଆଣି ଗାଡ଼ିଆରେ ଛାଡ଼ିଥିଲି । ଏ ଧୃଷ୍ଟତା ଗଞ୍ଜାମରେ ସେ ସମୟରେ ମୋ ଛଡ଼ା ଆଉ କେହି କରି ନଥିବେ । ତିନିଥର ଯାଆଁଳ ଆସିଲା, ଶେଷକୁ ଖାଲି ବାଉଁଶ ପତ୍ରି ମାଛ । ଆମ୍ବ, ଲେମ୍ବୁ ବଡ଼ ବଡ଼ ଗଛ ହେଲା, ଫଳ ନାହିଁ । ଓଭରସିଅରଙ୍କୁ ପଚାରିବାରୁ ସେ କହିଲେ, "Perhaps this soil is not fit for this crop" ସାଇ ପଡ଼ିଶା ପୁରୁଖା ଚଷାମାନେ କହିଲେ ''କିରେ ପୁଅ ଆମକୁ ପଚାରିଥିଲେ ତୋ କିଆରୀରେ କ'ଣ ହେବ କହିଥାନ୍ତୁ । ଯାଙ୍କ କଥାରେ ପଡ଼ିଲୁ, କେତେ ନଷ୍ଟ ହେଲା ।''

Director of Agriculture Mr. Majumdar ଓ Deputy Director Mr. Dutt" ଗଞ୍ଜାମ ଗସ୍ତରେ ଆସିଥିଲେ । ମୋର ଜଣେ ବନ୍ଧୁଙ୍କ ଗୋଟିଏ ଯୋଜନା ବଦ୍ଧଫାର୍ମ ତାଙ୍କୁ ଦେଖାଇବା ପ୍ରୋଗ୍ରାମ ଥିଲା । ମୁଁ ଏକ ଲମ୍ବା ଚିଠି ଲେଖି ଜଣାଇଲି ଯେ ମୋ ଫାର୍ମରେ ପ୍ରତ୍ୟେକ କ୍ଷେତ୍ରରେ ଫସଲ ଅଛି । ଏହା ନ ଦେଖାଇ ଆପଣଙ୍କୁ ଭବିଷ୍ୟତରେ ହେବାକୁ ଥିବା ଏକ ଫାର୍ମ ଦେଖାଉଛନ୍ତି । ସେ ଉତ୍ତର ଦେଇ ନପାରି ଆବା କାବା ହୋଇ ଠିଆ ହେଲେ । ମାଛ କଥା କହିବାରୁ ଫିସେରି ଅଫିସରଙ୍କୁ ପଠାଇବେ କହିଲେ । ଫିସେରି ଅଫିସର ଆସିଲେ । ଜାଇ ପକାଇ ମାଛ ଧରା ହେଲା । ସବୁ ବାର୍ଡ଼ଁଶ ପତ୍ରି ଓ ଦଣ୍ଡକିଳି ମାଛ । ଦୈବାତ୍ ଏକ ବଡ଼ ବ୍ରାହ୍ମଣିଆବେଙ୍ଗ ଜାଲରେ ପଡ଼ିଲା । କହିଲେ ହଁ "ଅୟଂ ବିଶେଷଃ" । ବେଙ୍ଗ ସବୁମାଛ ଖାଇ ଦେଲେ । ଲମ୍ବା ଚଉଡ଼ା ରିପୋର୍ଟ ଦେଲେ । କିନ୍ତୁ ମୋ କ୍ଷତି ପୂରଣ ଦେଉଛି କିଏ ? ସବୁକଥା ବିଶ୍ୱନାଥ ବାବୁଙ୍କୁ କହିଲି । ସେ କ'ଣ କରିବେ । ତୁନି ରହିଲେ । ଶେଷ ଫଳ ହେଲା ଉକ୍ତ ଓଭରସିଅରଙ୍କୁ କାମଦାର ପଦକୁ ଖସାଇ ଦିଆଗଲା ।

୨୦/୧/୪୧ରେ ପୁଣି କରଣ କାମରୁ ଇସ୍ତଫା ଦେଲି । ମୋର ଦଦାପୁଅ ଭାଇ ପୁରୁଷୋତ୍ତମ ଉକ୍ତ କାମରେ ନିଯୁକ୍ତ ହେଲା ।

ଗୃହର ଦୟନୀୟ ଆର୍ଥିକ ଅବସ୍ଥା ଯୋଗୁଁ ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇପାରିଲି ନାହିଁ । ଏହି ହରିଜନ ସେବକ କାମ କଲାବେଳେ ଗୋବରାଠାରେ ଏକ ରାଷ୍ଟ୍ରଭାଷା ପରୀକ୍ଷାକେନ୍ଦ୍ର ମାନ୍ଦ୍ରାଜ ରାଷ୍ଟ୍ରଭାଷା ପ୍ରଚାର ସମିତି ଅଧୀନରେ ଖୋଲା ଯାଇଥିଲା । ବହୁ ପରୀକ୍ଷାର୍ଥୀ ବିଭିନ୍ନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଅବଶେଷରେ ଏହି କେନ୍ଦ୍ର ଓଡ଼ିଶା ରାଷ୍ଟ୍ରଭାଷା ପ୍ରଚାର ସମିତି ଅଧୀନକୁ ଆସିଗଲା । ଆମ କେନ୍ଦ୍ର ପକ୍ଷରୁ ୩ଜଣ ରାଷ୍ଟ୍ରଭାଷା କୋବିଦ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ମୋର ଝିଅ ମନ୍ଦାକିନୀ ଓ ଶ୍ରୀ ଭୁବନି ମିଶ୍ର ପରେ ରାଷ୍ଟ୍ରଭାଷା ପ୍ରଚାରକ ହେଲେ । ଶ୍ରୀଭୁବନି ମିଶ୍ର ଅନ୍ୟ କାମରେ ଯୋଗ ଦେଲେ । ମନ୍ଦାକିନୀକୁ ଅଧିକ ପାଠ ପଢ଼ାଇବାର ସୁଯୋଗ ନଥିଲା । ଭଞ୍ଜନଗର ନେଇ ପଢ଼ାଇବା ବହୁତ ଅସୁବିଧା । ଅନ୍ୟ ଉପାୟ ନ ଦେଖି ତାକୁ ସଂସ୍କୃତ ପଢ଼ାଇଲି । ଶ୍ରୀ କୃପାସିନ୍ଧୁ ଶତପଥି ସଙ୍ଗୀତ ଶିଖାନ୍ତି । ମୁଁ ପିଲାମାନଙ୍କୁ ପଢ଼ାଇବାରେ ନିଜକୁ ନିୟୋଜିତ କଲି । ଆଗରୁ ମୋର ଭାଇ ପୁରୁଷୋତ୍ତମ ଓ ଗୋଦାବରୀ ପ୍ରାସାଦକୁ ପଢ଼ାଇବା ଅଭ୍ୟାସ ଥିଲା । ମନ୍ଦାକିନୀ ସଂସ୍କୃତ ପ୍ରଥମା ପରୀକ୍ଷାରେ ପ୍ରଥମ ସ୍ଥାନ ରଖି ଉତ୍ତୀର୍ଣ୍ଣ ହୋଇଥିଲା । ବ୍ରହ୍ମପୁର ସଂସ୍କୃତ କେନ୍ଦ୍ରରେ ତାର ପରୀକ୍ଷା ହୋଇଥିଲା । ସେହି ଅବସରରେ ଦକ୍ଷିଣ ଓଡ଼ିଶା ପଣ୍ଡିତମାନଙ୍କର ଏକ ସମ୍ମିଳନୀ ଶ୍ରୀ କନ୍ୟାକା ପରମେଶ୍ୱରୀ ମନ୍ଦିରରେ ଶ୍ରୀ ସୁରେୟା ରାଜୁଙ୍କ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିଲା । ସେ ସମୟର ସମବାୟ ବିଭାଗ ଆସିଷ୍ଟେଣ୍ଟ ରେଜିଷ୍ଟ୍ରର୍ ଶ୍ରୀ

ଅନନ୍ତ ପ୍ରସାଦ ପଣ୍ଡା ସଭାପତି ହୋଇଥିଲେ । ସେ ସଭାରେ ମନ୍ଦାକିନୀ ସଂସ୍କୃତ ଗୀତଗୋବିନ୍ଦ ଏବଂ ଅନ୍ୟାନ୍ୟ କେତେକ ଓଡ଼ିଆ ସଙ୍ଗୀତ ଗାନ କରିଥିଲା । ସଭାପକ୍ଷରୁ ସଭାପତି ମହୋଦୟ ତାକୁ 'ବାଣୀ ବିନୋଦିନୀ' ଉପାଧି ପ୍ରଦାନ କରିଥିଲେ । ରାଜୁ ମହାଶୟ ଅତ୍ୟନ୍ତ ଶ୍ରଦ୍ଧାରେ ସଙ୍ଗେ ସଙ୍ଗେ ଦୋକାନରୁ ଗୋଟିଏ ଶାଢ଼ୀ ଆଣି ଉପହାର ଦେଇଥିଲେ । ସେଇ ପରୀକ୍ଷା ପରେ ଆଉ ଅଧିକ ପଢ଼ାପଢ଼ି ହୋଇପାରିଲା ନାହିଁ । ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ତାର ବିବାହ ପ୍ରସଙ୍ଗ ଉଠାଇ ଥିଲେ ଏବଂ ତାଙ୍କର ସାହିତ୍ୟିକ ବନ୍ଧୁ ଆଡ଼ଭୋକେଟ୍ କବି ଶ୍ରୀ ନବକିଶୋର ଦାସଙ୍କ ସହ ବିବାହ ପାଇଁ ପ୍ରସ୍ତାବ କଲେ । ଘର, ବର, ଦେଖିଲୁ । ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ସହ ପରାମର୍ଶ କଲୁ । ଶ୍ରୀ ଦୀନବନ୍ଧୁ ବେହେରା ନବକିଶୋରଙ୍କ ସହପାଠୀ ଥିଲେ । ସେ ମଧ ସମର୍ଥନ କଲେ । ନବକିଶୋରଙ୍କ ଇଚ୍ଛା ପ୍ରକାରେ ବିବାହ ଆମ ଗାଁରେ ନ ହୋଇ ଶ୍ରୀବଂଷ ଗୋରକ୍ଷାଶ୍ରମ ଠାରେ ଅନୁଷ୍ଠିତ ହୋଇଥିଲା । କଟକରୁ ମାତୃଭୂମି ସମ୍ପାଦକ ତଥା ପ୍ରତିଷ୍ଠାତା ଶ୍ରୀ ବାଳକୃଷ୍ଣ କର, ଭାରତ ସେବକ ସମାଜ ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ବରଯାତ୍ରୀ ଭାବରେ ଆସିଥିଲେ । ଶ୍ରୀ ଦୀନବନ୍ଧୁ ବେହେରା ବରାବର ସାହାଯ୍ୟ ଓ ସହାନୁଭୂତି ପ୍ରଦର୍ଶନ କରିଥିଲେ । ଜାକ ଜମକରେ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ୧୯୪୪ରେ ବିବାହ ସରିବା ସଙ୍ଗେ ସଙ୍ଗେ ଭଞ୍ଜନଗର ଠାରେ ଭଞ୍ଜ ସାହିତ୍ୟ ପରିଷଦ ଏହିମାନଙ୍କ ଉପସ୍ଥିତିରେ ସ୍ଥାପିତ ହେଲା । ଶ୍ରୀ ଶ୍ରୀକଣ୍ଠ ଶତପଥି (ଅବସର ପ୍ରାପ୍ତ ଶିକ୍ଷାଧିକାରୀ) ସଭାପତି ଏବଂ ସରକାରୀ ମୌଳିକ ପ୍ରଶିକ୍ଷଣ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ଲଳିତ ମୋହନ ରଥ ସମ୍ପାଦକ ହେଲେ । ମୁଁ ମଧ କିଛିଦିନ ଏହି ଅନୁଷ୍ଠାନର ସମ୍ପାଦକ ଥିଲି । ତତ୍‌ପରେ ଆଡ଼ଭୋକେଟ୍ ଶ୍ରୀ ସୋମନାଥ ରଥ (ସଭାପତିଙ୍କ ଜ୍ୱାଁଇ) ସମ୍ପାଦକ ହେଲେ । ବାର୍ଷିକ ଭଞ୍ଜଜୟନ୍ତୀ ବ୍ୟତୀତ ଆଉ ଏ ପରିଷଦରେ ସାହିତ୍ୟ ଚର୍ଚ୍ଚା କିମ୍ୱା ଅନ୍ୟ କୌଣସି ସାଂସ୍କୃତିକ ଅନୁଷ୍ଠାନ ହେଲା ନାହିଁ । ଏହି ପରିଷଦରେ ସାହିତ୍ୟ ଚର୍ଚ୍ଚାଦିର ଆଶା ଦେଖା ନ ଯିବା ହେତୁ ପୁରୁଣା ଘୁମୁସର ଗଡ଼ଠାରେ ଉପେନ୍ଦ୍ର ଭଞ୍ଜ କଳା ସଂସଦ ନାମରେ ଅନ୍ୟ ଏକ ଅନୁଷ୍ଠାନ କରାଗଲା । ସଂସଦର ଆନୁକୂଲ୍ୟରେ ପାକ୍ଷିକ ସାହିତ୍ୟଚର୍ଚ୍ଚା କରାଗଲା । ସମୟେ ସମୟେ ସଭାମାନ କରାଯାଇ ବିଶିଷ୍ଟ ସାହିତ୍ୟିକ ମାନଙ୍କୁ ନିମନ୍ତ୍ରଣ କରି ସାହିତ୍ୟ ଆଲୋଚନା ହେଲା । ଅଧାପକ ଗୌରୀ କୁମାର ବ୍ରହ୍ମା, ପଣ୍ଡିତ ଗୋଦାବରୀଶ ମିଶ୍ର, ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ନିମନ୍ତ୍ରିତ ହୋଇ ଆସି ଏହି ସଂସଦର ସମ୍ମିଳନୀ ମାନଙ୍କରେ ଭାଷଣ ଦେଇଥିଲେ । ପଣ୍ଡିତ ଗୋଦାବରୀଶ ଦାଶ ଏହି ସଂସଦର ସଭାପତି ଓ ମୁଁ ସମ୍ପାଦକ ଥିଲୁ । କେତେ କାଳପରେ ସାହିତ୍ୟିକ ୰ଷଲିଦାଶ (ସ୍କୁଲ ସବ୍ ଇନସ୍‌ପେକ୍ଟର) ତାଙ୍କର ଅକାଳ ବିୟୋଗ ଯାଏଁ ସଂପାଦକ ରହି ସଂସଦର ବହୁ ଉନ୍ନତି ସାଧନ କରିଥିଲେ ।

## ॥ ୧୨୪ ॥

# କ୍ଷତ୍ରିୟବରପୁର ହାଇସ୍କୁଲ

୧୯୪୪ରେ କ୍ଷତ୍ରିୟବରପୁରଠାରେ ହାଇସ୍କୁଲ ସ୍ଥାପିତ ହେଲା । ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ଥରେ କ୍ଷତ୍ରିୟବରପୁର ଗସ୍ତରେ ଆସିଥିଲେ । ମଧ୍ୟଇଂରାଜୀ ବିଦ୍ୟାଳୟରେ ଅବସ୍ଥାନ କରିଥିଲେ । ଆମେ ସବୁ ତାଙ୍କସହ ଦେଖା କରିବାକୁ ଯାଇଥିଲୁ । ମଧ୍ୟ ଇଂରାଜୀ ବିଦ୍ୟାଳୟର ସମ୍ମୁଖରେ ରାସ୍ତାର ଆରପଟେ ଏକ ଭଲ ପଡ଼ିଆ ଓ ସୁନ୍ଦର ଆମ୍ବତୋଟା ଦେଖି ସେଠାରେ ଗୋଟିଏ ହାଇସ୍କୁଲ ସ୍ଥାପିତ ହେଲେ ଭଲ ହୁଅନ୍ତା ବୋଲି ମତ ପ୍ରକାଶ କଲେ । ସେତିକିରେ ଆମେ କେତେଜଣ ଉଦ୍‌ବୁଦ୍ଧ ହୋଇ ସ୍କୁଲ ସ୍ଥାପନ କରିବାକୁ ଉଦ୍ୟମ କଲୁ । ଏକ ସମିତି ଗଠିତ ହେଲା । ମୁଁ ସମ୍ପାଦକ ହେଲି । ଶ୍ରୀ ନିଶାମଣି ଶତପଥି, ଶ୍ରୀ ଅନ୍ତର୍ଯ୍ୟାମୀ ତ୍ରିପାଠୀ, ଶ୍ରୀ ମୁକ୍ତେଶ୍ୱର ତ୍ରିପାଠୀ ପ୍ରଭୃତି ସଭ୍ୟ ରହି ପୂର୍ଣ୍ଣ ପ୍ରାଣରେ ସହଯୋଗ କଲେ । ଗ୍ରାମେ ଗ୍ରାମେ ବୁଲି ଚାନ୍ଦା ସ୍ୱୀକୃତି ଆଣିଲୁ । ସ୍କୁଲର ସ୍ଥାୟୀ ସଭ୍ୟ ହେବା ପାଇଁ ଟ୫୦/- ଚାନ୍ଦା ସ୍ଥିର କରାଗଲା । ଏହିପରି କେତେଜଣ ସ୍ଥାୟୀ ସଭ୍ୟ ହେଲେ । ପ୍ରଥମେ କେବଳ ୮ମ ଶ୍ରେଣୀ ଖୋଲିବା ସ୍ଥିର ହେଲା । ସ୍କୁଲକାମ କେଉଁଠାରେ ହେବ ବିଚାର ହେଲା, ଆପାତତଃ ସଂସ୍କୃତ ଟୋଲ୍‌ରେ ଆରମ୍ଭ କରିବାପାଇଁ ସ୍ଥିର ହେଲା । ବିଭିନ୍ନ ଗ୍ରାମରୁ ଛାତ୍ର ସଂଗ୍ରହ କରିବାରେ ଲାଗିଲୁ । କେତେ ପିଲା ୭ମ ଶ୍ରେଣୀ ପାସ୍ କରି ଅର୍ଥାଭାବରୁ ଦୂର ଦୂରାନ୍ତକୁ ଯାଇ ପଢ଼ିବା ପାଇଁ ଅକ୍ଷମ ହେତୁ ନିଜ ନିଜ କାମ ଧନ୍ଦାରେ ଲାଗିଥିଲେ । ସେମାନଙ୍କ ନାମ ଲେଖାଗଲା । ଆମ ଗାଁର କୁରୁପା ସାହୁଙ୍କ ପୁଅ କ୍ଷେତ୍ରବାସୀ ସାହୁ ୭ମ ପାଶ୍ କରି ପାରମ୍ପରିକ ଧନ୍ଦା ଲୁଗାବୁଣାରେ ଲାଗିଥିଲେ । ତାଙ୍କୁ ଆଣିବାପାଇଁ ବିଶେଷ ଯତ୍ନ କରିବାକୁ ପଡ଼ିଥିଲା । ବାପ ପୁଅ ଦୁହେଁ ଲୁଗାବୁଣି କୁଟୁମ୍ବ ପ୍ରତିପୋଷଣ କରୁଥିଲେ । ସେ ପାଠ ପଢ଼ିବାକୁ ବାହାରିଗଲେ ପିଲାକୁଟୁମ୍ବ ଭୋକ ଉପାସରେ ମରିଯିବେ ବୋଲି ତାଙ୍କ ବାପା ମନା କଲେ । ବହୁତ ବୁଝା ଶୁଝା କରେଇ ତାଙ୍କୁ ଆଣିଲି । ସେ କୃତିତ୍ୱର ସହ ମାଟ୍ରିକ ପାସ୍ କରି ବଦାନ୍ୟ ବ୍ୟକ୍ତିମାନଙ୍କ ସାହାଯ୍ୟରେ ଉଚ୍ଚଶିକ୍ଷା ପାଇ ବି.ଏସ୍‌ସି. ପାସ୍ କଲେ । ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ୍‌ରେ କିରାଣୀ ଭାବରେ ନିଯୁକ୍ତି ପାଇ କ୍ରମେ ଉଚ୍ଚ ପଦକୁ ଉନ୍ନୀତ ହୋଇ ଅବସର ଗ୍ରହଣ କଲେ । ଏହିପରି ପ୍ରାୟ ୩୦ ଜଣରୁ ଅଧିକ ଛାତ୍ର ସଂଗ୍ରହ କରି କ୍ଲାସ ଆରମ୍ଭ କରାଗଲା । ଶିକ୍ଷକ ଖୋଜା ଚାଲିଥାଏ । ପଢ଼ା ନ ହେଲେ ପିଲାଗୁଡ଼ାକ ବିରକ୍ତ ହୋଇ ପଡ଼ିବେ ଏହି ବିଚାରରେ ମୁଁ ପ୍ରାୟ ୧୫ଦିନ ଯାଏ ସେମାନଙ୍କୁ ପ୍ରତ୍ୟେକ ବିଷୟରେ ପଢ଼ାଇବାକୁ ଲାଗିଲି । ଜଣେ I.A ପାସ୍ ଲୋକ ମିଳିଲା । ସେ କେତେଦିନ ଚଳେଇଲେ । ତାପରେ ବେଲଗୁଣ୍ଠାର ଶ୍ରୀ ନବଘନ ପାତ୍ର B.A.B.Ed. ଆସିଲେ । ସେ ଏଠାରେ ନରହି ପ୍ରତ୍ୟହ ଗାଁକୁ ଯିବା ଆସିବା କରିବାରେ

ପଢ଼ାପଢ଼ିରେ ଅବହେଳା ଦେଖାଗଲା । ସ୍କୁଲ ମଞ୍ଜୁରିପାଇଁ ଆବେଦନ ହୋଇଥିଲା । ଜିଲ୍ଲା ଇନ୍ସପେକ୍ଟର ଶ୍ରୀ ହରିହର ମିଶ୍ର ଦିନେ ପ୍ରଚଣ୍ଡ ଖରାରେ ଆସି ପହଞ୍ଚିଲେ । ମତେ ଡାକରା ଆସିଲା । ମୁଁ ଗଲି । ବଡ଼ ଆଦରରେ କଥାବାର୍ତ୍ତା କଲେ । ସେ କହିବା ପ୍ରକାରେ କାମ କଲେ ସ୍କୁଲ ମଞ୍ଜୁର କରିବେ ବୋଲି କହିଲେ । ଆମେ ସ୍ୱୀକାର କଲୁ । ସେ କହିଲେ ପ୍ରଥମେ ଟ୧୦୦୦/- ବ୍ୟାଙ୍କରେ ଡ଼ିପୋଜିଟ୍ ହେବ ଏବଂ ନୁଆଁପଡ଼ା ହାଇସ୍କୁଲରେ କାମ କରୁଥିବା ଶ୍ରୀ ଚିତ୍ତରଞ୍ଜନ ପଟ୍ଟନାୟକଙ୍କୁ ପ୍ରଧାନ ଶିକ୍ଷକ ରୂପେ ଆଣିବାକୁ ହେବ । ତାଙ୍କ ଇଚ୍ଛାନୁସାରେ ସେପରି କରାଗଲା । ସ୍କୁଲ ମଞ୍ଜୁର ହେଲା । ହେଲେ ଘର କିମିତି ହେଉଛି ? ଆମେ ପ୍ରତିଦିନ ଗାଁ ଗାଁ ବୁଲି ଚାନ୍ଦା ସଂଗ୍ରହରେ ଲାଗିଲୁ । ପ୍ରସ୍ତାବ ହେଲା ବଡ଼କୋଦଣ୍ଡା ବିଶ୍ୱନାଥ ପୃଷ୍ଟିଙ୍କଠାକୁ ଯାଇ ଘର କରିଦେବା ପାଇଁ ଅନୁରୋଧ କରିବା । ସେଠାକୁ ଗଲୁ । ସେ ଏକଥା ଶୁଣି ଭାରି ଥଟ୍ଟା କଲେ । ହଉ ଅମୁକ ଦିନ ଆସ ବୋଲି କହିଲେ । ମୁଁ ସେଦିନ ଗଲିନାହିଁ । ଅନ୍ୟମାନେ ଗଲେ । ମୁଁ ନିମନ୍ତ୍ରଣ ପତ୍ର ଲେଖାରେ ଲାଗିଲି । ଅନ୍ୟମାନେ ଫେରି କହିଲେ ଯେ ସେ ନାସ୍ତି କଲେ । ଏଣେ ନିମନ୍ତ୍ରଣ ପତ୍ର ପଠାଯାଇ ସାରିଛି । କୋଦଣ୍ଡାରେ ନିମନ୍ତ୍ରଣ ପତ୍ର ବଣ୍ଟାଯିବାରେ ସେହି ଗାଁ ଲୋକେ ବିଶ୍ୱନାଥ ପୃଷ୍ଟିଙ୍କୁ କହିଲେ ଯେ ତୁମେ ସ୍କୁଲଘର ତିଆରି କରିବାପାଇଁ ଭିତ୍ତିସ୍ଥାପନ କରିବ ବୋଲି ନିମନ୍ତ୍ରଣ ବଣ୍ଟା ସରିଲାଣି । ତାଙ୍କ ପୁରୋହିତ ଶ୍ରୀ ଚୋରୀ ଶତପଥି ଯାଇ ପ୍ରବର୍ତ୍ତାଇଲେ । ଶେଷରେ ସେ ରାଜି ହୋଇ ସାନଭାଇ କାଶୀନାଥ ପୃଷ୍ଟିଙ୍କୁ ପଠାଇଲେ । ସେ ଆସି କଥାବାର୍ତ୍ତା ହୋଇଯାଇ ପୁରୋହିତ ଓ ବଡ଼ଭାଇଙ୍କୁ ଧରି ପୁଣି ଆସିଲେ । କେଉଁଠି ହେବ କିପରି ହେବ ସବୁ ଦେଖା ଦେଖି କରି ତହିଁ ଆରଦିନ ଭିତ୍ତିସ୍ଥାନର ଅଯୋଜନ କଲେ । ଡାଲି, ଚାଉଳ, ପନିପରିବା ଇତ୍ୟାଦି ସବୁ ଧରି ଆସିଲେ । ମହାସମାରୋହରେ ହୋମ, ପୂଜା, ଇତ୍ୟାଦି ବୈଦିକ ରୀତିରେ ଶୁଭ ଦିଆଗଲା । ଭୁରି ଭୋଜନର ବ୍ୟବସ୍ଥା ହୋଇଥିଲା । ଶ୍ରୀ ଚିତ୍ତରଂଜନ ପଟ୍ଟନାୟକ ଜିଲ୍ଲାବୋର୍ଡ଼ ସ୍କୁଲରେ କାମ କରୁଥିଲେ । ତାଙ୍କର Confirmation (ସ୍ଥାୟୀ) ହୋଇନଥିଲା । ଜିଲ୍ଲାବୋର୍ଡ଼ ସଭାପତି ଦିବାକର ବାବୁଙ୍କଠାକୁ ଗଲି । ସଙ୍ଗେ ସଙ୍ଗେ ତାଙ୍କୁ ସ୍ଥାୟୀ କରାଯାଇ ଜିଲ୍ଲାବୋର୍ଡ଼ରୁ Loan serviceରେ କ୍ଷତ୍ରିୟବରପୁର ପଠାଗଲା । ସେ ଜଣେ ଚରିତ୍ରବାନ, କର୍ମଠ ଓ କାର୍ଯ୍ୟଦକ୍ଷ ଶିକ୍ଷକ । ତାଙ୍କ ପରିଚାଳନାରେ ସ୍କୁଲ ଖୁବ୍ ଉନ୍ନତି ଲାଭ କଲା । ମୋର ଜ୍ୟେଷ୍ଠ ପୁତ୍ର ପ୍ରଫୁଲ୍ଲଚନ୍ଦ୍ର ରସଲକୋଣ୍ଡା ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ଯୋଗ ଦେଇଥିଲା । ଏହି ସ୍କୁଲ ଚାଲିବାରୁ ତାକୁ ଏଠାକୁ ନେଇ ଆସିଲି ।

ସ୍କୁଲ ଘର ତିଆରି କାମ ଚାଲିଲା । ଜିଲ୍ଲାବୋର୍ଡ଼ ସଭାପତି ଶ୍ରୀ ଦିବାକର ପଟ୍ଟନାୟକ ଜିଲ୍ଲାବୋର୍ଡ଼ ରୋଡ଼ କଡ଼ରେ ଥିବା ଶାଳ, ପିଆଶାଳ ଆଦି ଗଛ ସ୍କୁଲ ପାଇଁ

ଦାନ କଲେ । ସୁନ୍ଦର ସ୍କୁଲ ଘର ତିଆରି ହେଲା ।

ଏହି ସମୟରେ ଓଡ଼ିଶା ଗଭର୍ନର ''ଲୁଇ''ଙ୍କର ଭଞ୍ଜନଗର ଗସ୍ତ ଥିଲା । ତାଙ୍କୁ ଗୃହ ଉନ୍ମୋଚନ କରିବା ପାଇଁ ନିମନ୍ତ୍ରଣ କରାଗଲା । ସେ ରାଜି ହୋଇ ତାଙ୍କର ଗସ୍ତ କ୍ରମରେ ଏହି ବିଷୟ ରଖିଲେ । ଘୁମୁସର R.D.O ମତେ ଡକାଇ କହିଲେ ସ୍କୁଲର ନାମ ଲୁଇଙ୍କ ନାମରେ ନାମିତ କରିବାପାଇଁ । ମୁଁ ମନା କଲି । ମୁଁ କହିଲି କେବଳ ଉନ୍ମୋଚନ କରିବା ପାଇଁ ନିମନ୍ତ୍ରଣ କରାଯାଇଛି । ସ୍କୁଲର ନାମ କ'ଣ ହେବ ଆମେ ଠିକ୍ କରିନାହୁଁ । ସ୍କୁଲ କମିଟୀରେ ଯାହା ସ୍ଥିର ହେବ ସେପରି କରାଯିବ । ସେ କହିଲେ ତା ହେଲେ କମିଟି ଡକାଇ ଗଭର୍ଣ୍ଣରଙ୍କ ନାମରେ ନାମକରଣ କରିବା ସ୍ଥିର କରନ୍ତୁ । ମୁଁ ହଁଟିଏ ମାରିଦେଇ ଚାଲିଆସିଲି । ସ୍କୁଲ କମିଟି ସଭାପତି ଦିବାକର ବାବୁଙ୍କୁ ଡ଼କାହେଲା । ଅନ୍ୟାନ୍ୟ ସମସ୍ତ ସଭ୍ୟ ଉପସ୍ଥିତ ହେଲେ । ଗଭର୍ଣ୍ଣରଙ୍କ ନାମରେ ନାମିତ କରିବାକୁ କମିଟୀ ରାଜିହେଲେ ନାହିଁ । ଏ ବିଷୟ R.D.Oଙ୍କୁ ଜଣାଇ ଦିଆଗଲା । ସେ କ'ଣ ଲେଖିଲେ୍ କେଜାଣି ଗଭର୍ଣ୍ଣରଙ୍କ ଉନ୍ମୋଚନ କରିବା ପ୍ରସ୍ତାବ ରଦ୍ଦ ହୋଇଗଲା । ଗଭର୍ଣ୍ଣର ସେଦିନ ସେବାଟ ଦେଇ ଗଲାବେଳେ ଆମେ କାଳେ ବିକ୍ଷୋଭ ପ୍ରଦର୍ଶନ କରିବୁ ବୋଲି ଦୁଇଜଣ ସର୍କଲ ଇନ୍‌ସପେକ୍ଟର ଓ ଦୁଇଜଣ କନେଷ୍ଟବଳ ଆସି ଜଗିଲେ । ଗଭର୍ଣ୍ଣର ଭଞ୍ଜନଗର ଗଲେ, ଫେରିଲେ, ଆମ ସ୍କୁଲ କାମ ଯଥାବିଧି ଚାଲିଥାଏ ।

ଏହି ସ୍କୁଲରେ ମୋର ଅନ୍ୟ ଦୁଇ ପୁଅ ପ୍ରମୋଦ ଓ ପ୍ରଶାନ୍ତ ଯୋଗ ଦେଇଥିଲେ । ପ୍ରଶାନ୍ତ ୪ର୍ଥ ରେ ଥିଲା । ଗ୍ରୀଷ୍ମାବକାଶରେ ୫ମର ସମସ୍ତ ପାଠ ପଢ଼ି ଦେଇପାରିଲେ ୬ଷ୍ଠରେ ଯୋଗଦେଇ ପାରିବ କି ବୋଲି ପଚାରିଲା । ମୁଁ କହିଲି ପରୀକ୍ଷା ହେବ ସେଥିରେ ପାସ୍ କଲେ ହେବ । ସେ ମନଦେଇ ପଢ଼ିଲା । ଷଷ୍ଠରେ ଯୋଗଦେବାକୁ ଆସିଥିବା ପ୍ରାୟ ୨୦/୨୫ ଜଣ ପିଲାଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ୬ଷ୍ଠରେ ନାଁ ଲେଖାଗଲା । ସେ ପିଲାଦିନୁ ତାରି ଭାଷାରେ ଗୀତ ଯୋଟେ । ପ୍ରତିଦିନ ଖାଇ ବସିବା ବେଳେ ମୁଁ ତାକୁ ଗୋଟିଏ ଗୋଟିଏ ଶ୍ଳୋକ ଶିଖାଇ ଦିଏ । ସେ ସାଙ୍ଗେ ସାଙ୍ଗେ ଅର୍ଥ ସହ କଣ୍ଠସ୍ଥ କରିପକାଏ । ପ୍ରାୟ ୧୫୦/୨୦୦ ଯାଏଁ ଶ୍ଳୋକ ସେ ଏହିପରି ଭାବେ କଣ୍ଠସ୍ଥ କରିଥିଲା । ଥରେ ଆମ ସ୍କୁଲ କମିଟିର ସଭାନେତ୍ରୀ ଶ୍ରୀମତୀ ସୀତାଦେବୀ ଖାଡ଼ଙ୍ଗା ଆସିଥିଲେ । ପ୍ରଶାନ୍ତର ଶ୍ଳୋକ ଓ ଭାବାର୍ଥ ଶୁଣି ଅବାକ୍ ହୋଇଥିଲେ ।

ଭଞ୍ଜନଗରକୁ ଯେଉଁ ବଡ଼ ବଡ଼ ଲୋକ ଆସନ୍ତି କି ସରକାରୀ କି ବେସରକାରୀ ସମସ୍ତଙ୍କୁ ସ୍କୁଲ ଦେଖିବା ପାଇଁ ମୁଁ ଯାଇ ନିମନ୍ତ୍ରଣ କରିଥାଏ । ଡକ୍ଟର ହରେକୃଷ୍ଣ ମହତାବ, ସେ ସମୟର ଶିକ୍ଷାମନ୍ତ୍ରୀ ଶ୍ରୀ ଲିଙ୍ଗରାଜ ମିଶ୍ର, ଶ୍ରୀ ରାଜକୃଷ୍ଣ ବୋଷ, ଜିଲ୍ଲା କଲେକ୍ଟର ପ୍ରଭୃତି । ଗୋଟିଏ ବର୍ଷ ସ୍କୁଲର ବାର୍ଷିକୋତ୍ସବ ଓ ପୁରସ୍କାର ବିତରଣୀ ସଭାର

ସଭାପତି ଭାବେ ଡକ୍ଟର ମହତାବ ଆସିଥିଲେ । ବହୁ ପ୍ରଶଂସା ଓ ଉତ୍ସାହ ମଧ୍ୟରେ ସ୍କୁଲଟି ଜିଲ୍ଲାରେ ନାମ କରିଥିଲା । ସେ ସମୟରେ ଜିଲ୍ଲା ବୋର୍ଡ଼ ହାଇସ୍କୁଲ ମାନ ଥାଏ । କେହି କେହି ରାଜା ଜମିଦାର ପ୍ରାଇଭେଟ୍ ସ୍କୁଲ କରିଥାନ୍ତି । ସର୍ବସାଧାରଣଙ୍କ ଯତ୍ନରେ ପ୍ରାଇଭେଟ୍ ସ୍କୁଲ ସ୍ଥାପିତ ହେବା ଆମ ଜିଲ୍ଲାରେ ଏହା ପ୍ରଥମ ।

## ସ୍କୁଲ ଘର ଉଦ୍‌ଘାଟନ କଥା

ଗଭର୍ଣ୍ଣର ଲୁଇତ ଆସିବାର ନୋହିଲା । କାହାକୁ ଡାକିବା ବିଚାର ପଡ଼ିଥାଏ । ଇତି ମଧ୍ୟରେ ଜିଲ୍ଲା ଶିକ୍ଷାଧିକାରୀ ଶ୍ରୀ ରାମ ନାରାୟଣ ମହାନ୍ତି ସ୍କୁଲ ପରିଦର୍ଶନରେ ଆସିଥିଲେ । ତାଙ୍କ ଆଗରେ ଆମର ଏ ବିଚାର ପଡ଼ିଲା । ସେ କହିଲେ ଶିକ୍ଷା ବିଭାଗ ଡାଇରେକ୍ଟରଙ୍କୁ ଡାକନ୍ତୁ । ସେ ଆସିଲେ ଆପଣମାନଙ୍କ ସ୍କୁଲର ସମସ୍ତ ଅଭାବ ଦୂରୀଭୂତ ହୋଇଯିବ । ନିମନ୍ତ୍ରଣ କରିବାକୁ ଗଲୁ । ଡାଇରେକ୍ଟର୍ ଶ୍ରୀ ଶ୍ୟାମାଚରଣ ତ୍ରିପାଠୀ । ଘୁମୁସର ଆର୍.ଡ଼ି.ଓ ଶ୍ରୀ ଉଦୟନାଥ ରଥ ତାଙ୍କୁ ସାଙ୍ଗରେ ଧରି ଆସିଲେ । ମହା ସମାରୋହରେ ସ୍କୁଲଘର ଉଦ୍‌ଘାଟନ ହେଲା । ସ୍କୁଲ ପରିଦର୍ଶନ କରି ଡାଇରେକ୍ଟର୍ ସାହେବ ବଡ଼ ପ୍ରୀତ ହେଲେ । ଆମ ସ୍କୁଲ ପାଇଁ ଯାହା ଯେତେବେଳେ ଦରକାର ଟଙ୍କା ମଞ୍ଜୁର କଲେ । ସ୍କୁଲର ବହୁ ଅଭାବ ଦୂର ହେଲା ।

ସେହି ସମୟରେ ଶ୍ରୀ ବିଶ୍ୱନାଥ ଦାଶ ଜେଲ୍‌ରୁ ଖଲାସ ହୋଇ ଦିନେ ଆମ ସ୍କୁଲ ଦେଇ ଯାଇଥିଲେ । ମୁଁ ସ୍କୁଲ ସ୍ଥାପନରେ ମନଯୋଗୀ ହେବା ଦେଖି କହିଲେ "ବାବୁ ଏଭଳି ସ୍କୁଲ ସ୍ଥାପନରେ କିଛି ଲାଭ ନାହିଁ । ଏଥିରେ ଜାତୀୟ ଭାବ ନଷ୍ଟ ହୋଇଯାଉଛି ।" ମୁଁ କହିଲି, "ଆଜ୍ଞା, ଏ ଶିକ୍ଷାଦ୍ୱାରା ଜାତୀୟ ଭାବ ନଷ୍ଟ ହେଉଥିବା ଦେଖାଯାଇ ନାହିଁ । ଆମ ଛୋଟ ଛୋଟ ଲୋକଙ୍କ କଥା ଛାଡ଼ନ୍ତୁ, ମହାତ୍ମାଗାନ୍ଧୀ, ଜବାହରଲାଲ ନେହୁରୁ, ରାଜେନ୍ଦ୍ର ପ୍ରସାଦଙ୍କଠାରୁ ଆରମ୍ଭ କରି ଆପଣଙ୍କ ପରି ନେତୃସ୍ଥାନୀୟ ସମସ୍ତ ବ୍ୟକ୍ତି ଏହି ଶିକ୍ଷା ଲାଭ କରି ଜାତୀୟ ଆନ୍ଦୋଳନରେ ଯୋଗଦେଇଛନ୍ତି । ପୁରୀ ସଂସ୍କୃତ କଲେଜ ଓ ରେଭେନ୍‌ସା କଲେଜ ମଧ୍ୟରେ ତୁଳନା କରାଯାଉ । ସଂସ୍କୃତ କଲେଜରୁ କେତେଜଣ ପାଠ ଛାଡ଼ି ଜାତୀୟ ଆନ୍ଦୋଳନରେ ଯୋଗ ଦେଇଥିଲେ ଆଉ ରେଭେନ୍‌ସାରୁ କେତେଜଣ ।" ପରବର୍ତ୍ତୀ କାଳରେ ବିଶ୍ୱନାଥବାବୁ ନିଜେ ବେଲଗୁଣ୍ଠାରେ ସେହି ଅନୁରୂପ ଗୋଟିଏ ହାଇସ୍କୁଲ ସ୍ଥାପନ କରିଥିଲେ ।

ଏ ଶିକ୍ଷାନୀତିର ପରିବର୍ତ୍ତନ ହେବାକୁ ନାହିଁ । ବଡ଼ ବଡ଼ ଶିକ୍ଷାବିଦ୍ ଥାଇ ନିଜେ ବିଶ୍ୱନାଥ ବାବୁ ଶିକ୍ଷାମନ୍ତ୍ରୀ ଥାଇ ସୁଦ୍ଧା ଏ ଶିକ୍ଷାର କେହି କିଛି ପରିବର୍ତ୍ତନ କରିପାରୁ

ନାହାନ୍ତି । ବରଂ ଏହି ଧରଣର ସ୍କୁଲ କଲେଜ ବଢ଼ିବାରେ ଲାଗିଛି । ଲୋକେ ଗତ୍ୟନ୍ତର ନ ଦେଖି ବାଧହୋଇ ଏହି ଶିକ୍ଷାଲାଭ କରୁଛନ୍ତି ।

ପ୍ରାୟ ୪/୫ ବର୍ଷକାଳ ଏହି ସ୍କୁଲ କାର୍ଯ୍ୟରେ ପ୍ରବୃତ୍ତ ହେଲି । ଏଣେ ଅନ୍ୟ କୌଣସି ରୋଜଗାର ନାହିଁ । ଜମିବାଡ଼ି ବିକି ପରିବାର ପ୍ରତିପୋଷଣ କରୁଥାଏ । ଶେଷକୁ ଅର୍ଥାଭାବରୁ କେତେଦିନ ବାଧହୋଇ ସେହି ସ୍କୁଲରେ ବେତନଭୋଗୀ ଶିକ୍ଷକ ହେବାକୁ ପଡ଼ିଥିଲା ।

## କେନ୍ଦୁପଦର ହାଇସ୍କୁଲ ପ୍ରତିଷ୍ଠା

ଏହି ସମୟରେ କେନ୍ଦୁପଦର ଠାରେ ବଡ଼ ବିଚିତ୍ର ଭାବରେ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ମୁଁ ଦିନେ ପ୍ରୋଜେକ୍ଟ କାମରେ ସେଠାକୁ ଯାଇଛି ମାଧମିକ ବିଦ୍ୟାଳୟ ପ୍ରଧାନ ଶିକ୍ଷକ ଶ୍ରୀ ସଦାଶିବ ଖାଡ଼ଙ୍ଗା କହିଲେ ''ବୋର୍ଡ଼ ସ୍କୁଲର ଦୁଇଟି ଘର ମଧରେ ଯେଉଁ ଫାଙ୍କ ଜାଗାଟି ଅଛି ତାହା ଉକ୍ତ ଗ୍ରାମ ନିବାସୀ ଶ୍ରୀ ଉଦୟ ନାଥ ମେକାପଙ୍କର । ସେ ଜାଗାଟି ସ୍କୁଲକୁ ଦେଲେ ବିଶେଷ କାମରେ ଆସନ୍ତା । ଆପଣ ତାଙ୍କୁ ବୁଝାଇ ସେତକ କରାଇ ଦିଅନ୍ତୁ'', ମୁଁ ଗାଁକୁ ଗଲି । ଗାଁର ଆଉ କେତେଜଣ ବ୍ୟକ୍ତି ଆଗରେ ଉଦୟ ନାଥ ବାବୁଙ୍କୁ ସେ ଜାଗାଟି ସ୍କୁଲକୁ ଦେବାପାଇଁ ଅନୁରୋଧ କଲି । ସେ ତାଙ୍କ ଗାଁରେ କୌଣସି ଲୋକ ହିତକର ଅନୁଷ୍ଠାନ ହେଉନାହିଁ, ନିକଟସ୍ଥ ନିମିନା ଗାଁରେ ପୋଷ୍ଟ ଅଫିସ, ଡାକ୍ତରଖାନା ଇତ୍ୟାଦି ହେଲା ବୋଲି ଦୁଃଖ ପ୍ରକାଶ କଲେ । ସେମାନଙ୍କୁ କହିଲି, ''ଆଚ୍ଛା ତମ ଗାଁର ନାଁ ଯେପରି ପ୍ରତିଷ୍ଠା ପାଇବ ସେପରି ଏକ କାମ କରିବା । ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଦେବା ଯେ ନିମିନା ଠାରୁ ତୁମ ଗାଁ ଅଧିକ ଖ୍ୟାତି ଲାଭ କରିବ ।'' ଏକଥା ଶୁଣିବା କ୍ଷଣି ସମସ୍ତେ ଏକ ସ୍ୱରରେ ହଁ କରି ହରିବୋଲି ଡ଼ାକଦେଲେ । ଗାଁର ଜଣେ ମୁଖ୍ୟଲୋକ ଶ୍ରୀ ଭୁବନି ଆପଟ ନେତୃତ୍ୱ ନେଲେ । ଗ୍ରାମର ବହୁମୂଲ୍ୟ କୋଠଜମି ସବୁ ବିକ୍ରି କରି ସ୍କୁଲ, ବସାଇବା କଥା ସ୍ଥିର ହେଲା । ମଧ ଇଂରାଜୀ ବିଦ୍ୟାଳୟ ନିକଟରେ ଥିବା ପାଠାଗାରରେ ସ୍କୁଲ ଆରମ୍ଭ ହେବାସ୍ଥିର ହେଲା । ସ୍କୁଲ, କମିଟୀ ଗଠନ ହେଲା ମୁଁ ସଭାପତି ଓ ଶ୍ରୀ ସଦାଶିବ ଖାଡ଼ଙ୍ଗା ସଂପାଦକ ମନୋନୀତ ହେଲୁ ।

ସବୁ ସିନା ହେଲା କିନ୍ତୁ ଛାତ୍ର କାହାନ୍ତି ? ଗାଁ ଗାଁ ବୁଲି ସପ୍ତମ ଶ୍ରେଣୀ ପାସ୍ କରି ବୁଲୁଥିବା ପ୍ରାୟ ୩୦ଜଣ ସଂଗ୍ରହ କଲୁ । ଶ୍ରୀରାଧାକୃଷ୍ଣ ପଣ୍ଡା ଶିକ୍ଷକ ରୂପେ ନିଯୁକ୍ତ ହେଲେ ।

ଛାତ୍ର ସଂଗ୍ରହ ବେଳର ଗୋଟିଏ କୌତୁହଳ ଘଟଣା । ନିକଟସ୍ଥ ବାଁଙ୍ଗରଡ଼ା ଗ୍ରାମକୁ

ଯାଉଥିଲୁ, କେତେଜଣ ଛାତ୍ର ପାଉଲୁ ଆଉ ଜଣେ ପିଲାକୁ କେହି ଦେଖାଇ କହିଲେ ଏ ପିଲାଟି ୭ମ ପାଶ୍ କରିଛି ଯେ''ସେତ ସାଧନ ଆଖଡ଼ାରେ ମିଶି ବୁଲୁଛି । ସେ ପାଠ କ'ଣ ପଢ଼ିବ ?'' ମୁଁ କହିଲି ଆଚ୍ଛା ଡ଼ାକ ଦେଖିବା । ଆସିଲା, ପାଠ କଥା କହିବା ମାତ୍ରେ ମୁହଁ ମୋଡ଼ିଦେଇ ଚାଲିଗଲା । ତିନି ଚାରିଦିନ ପରେ ଅନ୍ୟ କାମରେ ସେ ଗାଁକୁ ଯାଇଥିଲି । ସେ ପିଲାଟିକୁ ପୁଣି ଡାକିବାକୁ କହିଲି । ଗାଁ ଲୋକେ କହିଲେ ''ସେଦିନତ ସେ ମୁହଁ ମୋଡ଼ିଦେଇ ଚାଲିଗଲା । ସେ କ'ଣ ଆସିବ ନା ପାଠ ପଢ଼ିବାକୁ ଯିବ ?'' ମୁଁ କହିଲି ''ଆଛା ଡ଼ାକ ଦେଖିବା ।'' ସେଦିନ କିନ୍ତୁ ଆସିଲା । ତାକୁ ସ୍କୁଲରେ ଯୋଇନ୍ ହେବାକୁ କହିଲି, ବାରିତଳେ ସ୍କୁଲ, ଘରେ ମୁଠେଖାଇ ପଢ଼ାପଢ଼ି କରିବୁ ଏହିପରି ନାନା ପ୍ରକାର ବୁଝାଇଲି । ଯାହାହେଉ ଠିଆ ହୋଇ ସବୁକଥା ଶୁଣିଲା । ଦୁଇ ଦିନ ପରେ ଆସି ଯୋଇନ୍ କଲା । ପରେ ଶୁଣିଲି ମାଟ୍ରିକ୍ ପାସ୍ କରି କେଉଁଠି ଚାକିରି କରୁଛି । ଏପରି ଅନେକ ପିଲା ଅଛନ୍ତି ସୁବିଧା, ସୁଯୋଗ ପାଇଲେ ଶିକ୍ଷାଲାଭ କରି କୌଣସି ନା କୌଣସି କାମ କରି ଅନ୍ନ ସଂସ୍ଥାନ ତଥା ପରିବାର ପୋଷଣ କରି ପାରନ୍ତେ ।

## ଇନ୍‌ସପେକ୍ଟର ଆସିଲେ

ସ୍କୁଲ ମଞ୍ଜୁର କରିବା ପାଇଁ ଅବେଦନ କରାଯାଇଥିଲା । କେତେଦିନ ପରେ ଇନ୍ସପେକ୍ଟର ଶ୍ରୀ ଗୋକୁଳଚନ୍ଦ୍ର ଶତପଥୀ ସ୍କୁଲ-ପରିଦର୍ଶନରେ ଆସିଲେ । ସେ ବଡ଼ ରହସ୍ୟ ପ୍ରିୟ । ଗମ୍ଭୀର ଭାବରେ ବସି ନାନା-ହସ କୌତୁକ କଥା କହି ପିଲାମାନଙ୍କୁ ତାଙ୍କର ପ୍ରଶ୍ନ ଦ୍ୱାରା ତ୍ରସ୍ତ କରିପକାନ୍ତି । ଏହିପରି ଭାବେ ପରିଦର୍ଶନ ଶେଷକରି ନିକଟରେ ମାଧମିକ ସ୍କୁଲ ଥିବା ଦେଖି ସେଠାକୁ ଗଲେ । କ୍ଲାସରେ କିଛି ନା କିଛି ହାସ୍ୟୋଦ୍ଦୀପକ ପ୍ରଶ୍ନମାନ କରି ଶେଷରେ ଜାତୀୟ ସଙ୍ଗୀତ ଗାନ କରିବା ପାଇଁ ପିଲାଙ୍କୁ କହିଲେ, ପିଲେ ଗାଇଲେ ''ଜଅ ନଅ ଗଅ ମଅ ଣଅ'' । ସେ କହିଲେ କିଏ ଶିଖାଇ ଛନ୍ତି ? ଜଣେ ଶିକ୍ଷକ ଆସିଲେ । ତାଙ୍କୁ ଗାଇବାକୁ କହିଲେ । ସେ ମଧ ପିଲେ ଗାଇଲା ପରି ଗାଇଲେ । ସେ କହିଲେ ''ଆହା କପି ତୁ କାହୁଁ ଅଇଲୁରେ'' କହି ନିଜେ ସାବଧାନ ହୋଇ ଛିଡା ହୋଇ ଠିକ୍ ସ୍ୱରରେ ସୁନ୍ଦର ଗାଇଲେ ।

ସେ ପରିଦର୍ଶନ କରି ଯିବାର ଅଳ୍ପ ଦିନ ମଧରେ ମଞ୍ଜୁର ଆଦେଶ ଆସିଲା । ସ୍କୁଲ କାର୍ଯ୍ୟ ପରିଚାଳିତ ହେଲା । ରୋଡ଼ ନିକଟରେ ଥିଲା ବିସ୍ତୃତ ପଦର ଭୂମି । ସେଠାରେ ସ୍କୁଲସ୍ଥାପନ କରିବା ନିଶ୍ଚୟ କରି ଭୂମ୍ୟଧିକାରୀମାନଙ୍କୁ ଭୂମିଦାନ କରିବା ପାଇଁ ଅନୁରୋଧ କରାଗଲା । ସମସ୍ତେ ଆଗ୍ରହର ସହିତ ଦାନ କଲେ । କେନ୍ଦୁପଦର ଏବଂ ଆଖପାଖ ଗ୍ରାମର ଧନୀ ବ୍ୟକ୍ତିଙ୍କୁ ଉକ୍ତ ଭୂମିରେ ଗୋଟିଏ ଗୋଟିଏ ବଖରା ଘର ତିଆରି କରିବା ପାଇଁ

ଅନୁରୋଧ କରାଗଲା । କେତେଜଣ କେତୋଟି ବଖରା ଘର ନିର୍ମାଣ କରିଦେଲେ । ପାଠାଗାରରୁ ସ୍କୁଲ ଏକ ଶୁଭଦିନରେ ସେଠାକୁ ଅଣାଗଲା । ପ୍ରୋଜେକ୍ଟ ଅଫିସର, ଶ୍ରୀଜ୍ଞାନେନ୍ଦ୍ର ମହାନ୍ତି ବହୁଦିନ ଯାଏ ସ୍କୁଲ କମିଟିରେ ସଭାପତି ରହିଲେ । ତତ୍‌ପରେ ଜିଲ୍ଲା ବୋର୍ଡ଼ ସଭାପତି ଓ ପରେ ପରିଷଦ ଚେୟାରମେନ୍ ଶ୍ରୀ ଦୀନବନ୍ଧୁ ବେହେରାଙ୍କ ସଭାପତିତ୍ୱରେ ସ୍କୁଲ କାର୍ଯ୍ୟ ପରିଚାଳିତ ହେଲା । ଏବେ ସେହି ଉଚ୍ଚ ବିଦ୍ୟାଳୟ ନିକଟରେ ସ୍ଥାନୀୟ ଭଦ୍ରବ୍ୟକ୍ତିମାନଙ୍କ ଉଦ୍ୟମରେ ଏକ ମହା ବିଦ୍ୟାଳୟ ସ୍ଥାପିତ ହୋଇଅଛି ।

## ମୋ ଜୀବନରେ ଏକ ପରିବର୍ତ୍ତନ

୧୯୫୦ ଖ୍ରୀଷ୍ଟାବ୍ଦରେ ମୋ ଜୀବନରେ ଏକ ଘୋର ପରିବର୍ତ୍ତନ ହୋଇଥିଲା । ଥରେ ମୋର ଜଣେ ବନ୍ଧୁ ବୋଇରାଣୀ (କବିସୂର୍ଯ୍ୟ ନଗର)ର ଦିବାକର ଦାସଙ୍କଠାରେ ମାସ ଫଳ ନାମକ ଏକ ବଙ୍ଗଳା ଜ୍ୟୋତିଷ ପୁସ୍ତକରୁ ମୋର ଆଶ୍ୱିନ ମାସ ଜନ୍ମଫଳ ଦେଖି ଟିପାଖାତାରେ ଟିପି ରଖିଥିଲି । ସେଥିରେ ଆଶ୍ୱିନ ମାସରେ ଜନ୍ମଲାଭ କରିଥିବା ବ୍ୟକ୍ତିମାନଙ୍କର ଜୀବନରେ ୨୧,୩୧ ଓ ୫୦ ବର୍ଷ ବୟସରେ ସ୍ମରଣୀୟ ପରିବର୍ତ୍ତନ ଘଟିବ ବୋଲି ଲେଖାଥିଲା । ତା ସାଙ୍ଗକୁ ନିଜର ପ୍ରଭାବ ସମ୍ପର୍କରେ ନିମ୍ନଲିଖିତ କେତେକ ବିଷୟ ମଧ ଲେଖାଥିଲା ।

"ସାଧୁ ଓ ଅସାଧୁ ଭାବର ଦୁଇ ଦିଗରୁ ସମାନ ଆକର୍ଷଣ । ଚେଷ୍ଟାକଲେ ସାଧୁ ହେବା କଷ୍ଟକର ନୁହେଁ । ପ୍ରଲୋଭନ ଏଡି ନ ପାରିଲେ ଅଧୋପତନ ମଧ ସହଜରେ ହେବ ।

ସାଧାରଣତଃ ନିର୍ମଳ ଚରିତ୍ର କିନ୍ତୁ ମଧେ ମଧେ ଘୋର ବିଷୟାସକ୍ତ । ଏ ସମ୍ପର୍କରେ ମୁଁ ମୋର ଆଧାତ୍ମିକ ସାଧନାରେ ଲକ୍ଷ୍ୟକରି ଆସିଛି କେତେଦିନ ଖୁବ୍ ନିଷ୍ଠାପର ଭାବେ ଜପ, ଧ୍ୟାନ, ସ୍ମରଣ, ଗ୍ରନ୍ଥପାଠ କରିଆସିଛି, ପୁଣି କେତେଦିନ ପରେ ସେ ନିଷ୍ଠା କୁଆଡ଼େ ଚାଲିଯାଏ । ସେଥିଯୋଗୁଁ ପ୍ରାର୍ଥନା ବେଳେ ମୁଁ ରବୀନ୍ଦ୍ରନାଥ ଠାକୁରଙ୍କର ଏକ ସଙ୍ଗୀତ ଗାନ କରିଥାଏ ।

"ଯତବାର୍ ଆଲୋ ଜ୍ୱାଲାଇତେ ଚାଇ, ନିଭେଯାୟ ବାରେ ବାରେ ।
ଆମାର ହୃଦୟେ ତୋମାର ଆସନ ଗଭୀର ଅନ୍ଧକାରେ ।"

ଧର୍ମ ଜୀବନ ଅପେକ୍ଷା ନୈତିକ ଜୀବନର ବିଶେଷ ପକ୍ଷପାତୀ । ଆଦର୍ଶ ଓ କଳ୍ପନା କାର୍ଯ୍ୟରେ ପରିଣତ ନ କଲେ ସେ ସବୁ କିଛି ନୁହେଁ ବୋଲି ଜ୍ଞାନ ।

ସୂକ୍ଷ୍ମ ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତି, ବ୍ୟବସାୟ ବୁଦ୍ଧି ଖୁବ୍ ବେଶି । ଅନ୍ୟ ଲୋକଙ୍କୁ କାମରେ ଲଗାଇବାରେ ପଟୁ ।

ନିଜ ସମ୍ବନ୍ଧରେ ସବୁବେଳେ ସତର୍କ । ଏଣୁ କେହି ଠକିଦେବା ସମ୍ଭବ ନୁହେଁ । ସହସ୍ର ପ୍ରତିକୂଳ ଅବସ୍ଥାରେ ମଧ ପ୍ରତ୍ୟୁତ୍ପନ୍ନମତି ।

ନିଜ ବୁଦ୍ଧିର ମାପ କାଠିରେ ସବୁ ବିଚାର କରିବା । ନ୍ୟାୟ ହେଉ ବା ଅନ୍ୟାୟ ହେଉ ନିଜମତ ଠିକ୍ ବୋଲି ଭାବିବା ।

ମହାତ୍ମାଗାନ୍ଧୀ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଆନିବେସାଣ୍ଟ ପ୍ରଭୃତିଙ୍କର ଏହି ଆଶ୍ୱିନ ମାସରେ ଜନ୍ମ ।

ସ୍ୱାସ୍ଥ୍ୟ : ସାଧାରଣତଃ ଭଲ । ପୀଡ଼ା ଖୁବ୍ କମ୍ । ନଷ୍ଟ ସ୍ୱାସ୍ଥ୍ୟର ପରିପୂରଣ ଖୁବ୍ ଶୀଘ୍ର ହୋଇପାରିବ । ବୃଥାରେ ଗୁଡ଼ାଏ ଔଷଧ ଖାଇବା ଅପେକ୍ଷା ପ୍ରାକୃତିକ ଚିକିତ୍ସା ଭଲ ଭାବି ସେହିପରି ଚଳିବା ପ୍ରବୃତ୍ତି ।

ପାରିବାରିକ ଶାନ୍ତି, ପରିଷ୍କାର ପରିଚ୍ଛନ୍ନତା ପ୍ରତି ତୀବ୍ର ଦୃଷ୍ଟି । ମାଦକଦ୍ରବ୍ୟ ପ୍ରତି ଘୃଣା ।

ସ୍ୱାର୍ଥକୁ ବଡ଼ ବୋଲି ଭାବିଲେ ଅନ୍ୟମାନଙ୍କୁ ଭୁଲାଇ ସହଜରେ କାର୍ଯ୍ୟ ହାସଲ କରିବା ଶକ୍ତି, କିନ୍ତୁ ଯେଉଁ କାର୍ଯ୍ୟ କଲେ ମଧ କେଉଁ କାର୍ଯ୍ୟଟି ଭଲ କେଉଁ କାର୍ଯ୍ୟଟି ମନ୍ଦ ଅବିଦିତ ରହିବ ନାହିଁ ।

ଭାଗ୍ୟ, ବିଶେଷ ଭାବେ ନିଜ ହାତରେ । ଉଦ୍‌ଭାବନୀ ଶକ୍ତି ଓ ଅକ୍ଳାନ୍ତ ପରିଶ୍ରମ କରିବା କ୍ଷମତା ।

ସାହିତ୍ୟ ସଂକ୍ରାନ୍ତ ଯେ କୌଣସି କାର୍ଯ୍ୟ ଯଥା, ଲିଖନ, ଅଧ୍ୟୟନ, ଅଧ୍ୟାପନା, ସାହିତ୍ୟିକ ସମ୍ପାଦକତ୍ୱ ଇତ୍ୟାଦି ।

ନିୟମ ଓ ଶୃଙ୍ଖଳାର ବିଶେଷ ପକ୍ଷାପାତୀ । ନିୟମ ଲଂଘନ ଓ ବିଶୃଙ୍ଖଳା ବଡ଼ ଅସହ୍ୟ । ସମାଲୋଚନା କରିବା ଏକ ସହଜାତ ପ୍ରବୃତ୍ତି ।

ପରର ଯେପରି ନିଜର ମଧ ଦୋଷ ଦେଖିବା ଏକ ବିଶେଷତ୍ୱ । ନିଜ ଚରିତ୍ରର ଦୁର୍ବଳତା ଅଳ୍ପ ଆୟାସରେ ସଂଶୋଧନ କରିପାରିବା । ଆତ୍ମାଭିମାନ ଯଥେଷ୍ଟ ।

ଭଲ ମନ୍ଦ, ଦୋଷ ଗୁଣ ଅନ୍ୟର ତଥା ନିଜର ଭଲ ଭାବରେ ଜାଣିପାରିବା ଯୋଗୁଁ ନିଜର କୃତିତ୍ୱ ଓ ଗୁଣାବଳୀ ଯାହା ଅଛି ସେ ସମ୍ବନ୍ଧେ ମନେ ମନେ ଗର୍ବ କରିବା ସମ୍ଭାବନା ।''

ଉପର୍ଯ୍ୟୁକ୍ତ ସମସ୍ତ ଗୁଣ ଓ ସ୍ୱଭାବ ଜଣା ଅଧିକେ ମୋ ଜୀବନରେ ମୁଁ ଅନୁଭବ କରିଆସିଛି । ଅନ୍ୟ ଯେଉଁମାନଙ୍କର ଏହି ମାସରେ ଜନ୍ମ ସେମାନଙ୍କର ଜୀବନରେ ଏ ସବୁ ଘଟିଥିବ କି ନାହିଁ କେଜାଣି । ପ୍ରତ୍ୟେକ ଦଶନ୍ଧିରେ ଯେଉଁସବୁ ପରିବର୍ତ୍ତନ ଘଟିଛି, ସେ ସବୁ ପ୍ରାୟ ଏହି ଆଶ୍ୱିନ ମାସ ଜନ୍ମଫଳ ଅନୁଯାୟୀ ହୋଇଥିବା ତାତ୍ପର୍ଯ୍ୟପୂର୍ଣ୍ଣ ।

୧୯୨୧ରେ ବିଦ୍ୟାଧ୍ୟୟନ ତ୍ୟାଗକରି ସ୍ୱାଧୀନତା ସଂଗ୍ରାମ- ଅସହଯୋଗ ଆନ୍ଦୋଳନରେ ଯୋଗଦାନ ଓ କାରାବରଣ ।

୧୯୩୧ରେ ସତ୍ୟାଗ୍ରହ ପରିଚାଳନ ଏବଂ ପ୍ରତ୍ୟକ୍ଷ୍ୟ ରାଜନୀତି ତ୍ୟାଗକରି

ଠକ୍କର ବାପା (ଅମୃତ ଲାଲ ଠକ୍କର) ହରିଜନ ସେବକ ସଂଘର ସମ୍ପାଦକଙ୍କ ପରାମର୍ଶ ପ୍ରକାରେ ହରିଜନ କାମରେ ଯୋଗଦାନ ।

୧୯୪୧ ପ୍ରତ୍ୟକ୍ଷ୍ୟ ରାଜନୀତିରୁ ସଂପୂର୍ଣ୍ଣ ଭାବରେ ଅବସର ନେଇ, ସହଯୋଗ ସମିତି ଓ ଉଚ୍ଚ ବିଦ୍ୟାଳୟ (High School) ମାନ ସ୍ଥାପନ, ବିଧବା ବିବାହ ପ୍ରବର୍ତ୍ତନ, ଦେବୀ ମନ୍ଦିରମାନଙ୍କରେ ପଶୁବଳି ନିବାରଣ, ଗ୍ରାମ ସେବାସଂଘ ଗଠନ ପ୍ରଭୃତି ନାନାବିଧ ସାମାଜିକ କାର୍ଯ୍ୟରେ ମନଯୋଗ ।

୧୯୫୦ରେ ଘୋର ପରିବର୍ତ୍ତନ, ଜନ୍ମସ୍ଥାନ ତ୍ୟାଗ । ବଡ଼ ଆକସ୍ମିକ ଭାବରେ ''ବଳାଦିବ ନିୟୋଜିତ'' ନ୍ୟାୟରେ ଗ୍ରାମ ତ୍ୟାଗ କଲି । ନିଜ ଗାଁରେ ଏବଂ ଆଖପାଖ ଗାଁ ମାନଙ୍କରେ ମୋର ଖ୍ୟାତି ଓ ପ୍ରାଧାନ୍ୟ ଅସହ୍ୟ ବୋଧକରି ଗ୍ରାମର କେତେଜଣ ଯୁବକ ମୋ ବିପକ୍ଷରେ ନାନାପ୍ରକାର କାର୍ଯ୍ୟ କରିବାର ଜାଣିପାରିଲି । ସେମାନଙ୍କ ପ୍ରତି ଅତିଶୟ ସ୍ନେହ ଯୋଗୁଁ ସେମାନଙ୍କୁ କିଛି କହି ନ ପାରି ହଠାତ୍ ଠିକ୍ କଲି 'ସ୍ଥାନ ତ୍ୟାଗେନ ଦୁର୍ଜନଃ ।'' ଦିନେ ସମସ୍ତ ପରିବାରଙ୍କୁ ନେଇ ଶ୍ରୀବତ୍ସ ଗୋରକ୍ଷାଶ୍ରମରେ ଆଶ୍ରୟ ନେଲି । ମୁଁ ତ ଶ୍ରୀବତ୍ସ ଗୋବକ୍ଷାଶ୍ରମର ସମ୍ପାଦକ ଥାଏ । ସେ ସମୟରେ ସେଠାର ଆର୍ଯ୍ୟ ମନ୍ଦିର ନିର୍ମାଣ କାର୍ଯ୍ୟ ଚାଲିଥିଲା । ଅତଏବ ମୁଁ ସେଠାରେ ରହି ସେହି କାମ ଦେଖିବା ଏବଂ ଗୋଶାଳା ପରିଚାଳନା କରିବା ଇତ୍ୟାଦି ସୁବିଧା ହେବ ଭାବି ସେଠାକୁ ଚାଲିଯାଇଥିଲି । ସେଠାରେ ସେତେବେଳେ ଏକ ସଂସ୍କୃତ ଟୋଲ୍ ସ୍ଥାପିତ ହୋଇଥିଲା ।

ସ୍ଥାନୀୟ ମୌଳିକ ବିଦ୍ୟାଳୟର ଦୁଇଜଣ ଶିକ୍ଷକ ସେଠାରେ ବାସ କରୁଥିଲେ । ଶ୍ରୀବତ୍ସ ପଣ୍ଡା ଯେଉଁ ଘରେ ରହୁଥିଲେ ସେହି ଘରର ଗୋଟିଏ ବଖରାରେ ମୌଳିକ ବିଦ୍ୟାଳୟର ସହକାରୀ ଶିକ୍ଷକ ଶ୍ରୀ ଆଦିକନ୍ଦ ମହାନ୍ତି ସକୁଟୁମ୍ବେ ଥାନ୍ତି । ଆମେ ଅନ୍ୟ ବଖରାଟିରେ ରହିଲୁ । ମୌଳିକ ବିଦ୍ୟାଳୟ ପ୍ରଧାନ ଶିକ୍ଷକ ଶ୍ରୀ କୃପାସିନ୍ଧୁ ଶତପଥୀ ଅନ୍ୟ ଏକ ଘରେ ଏବଂ ଟୋଲ୍ ପଣ୍ଡିତ ଶ୍ରୀ କାଶୀନାଥ କର ଛାତ୍ରମାନଙ୍କ ସହ ଅନ୍ୟ ଏକ ଘରେ ବାସ କରୁଥିଲେ । ମୁଁ ସେଠାରେ କିଛିଦିନ ରହି ପୁଣି ଗ୍ରାମକୁ ଫେରିଯିବା ବାସନା ଥିଲା । କିନ୍ତୁ ତା ଆଉ ହୋଇ ପାରିଲା ନାହିଁ । ମୋର ୨ୟ ଓ ୩ୟ ପୁତ୍ର ପ୍ରମୋଦ ଓ ପ୍ରଶାନ୍ତଙ୍କୁ କ୍ଷତ୍ରିୟବରପୁର ସ୍କୁଲରୁ ଆଣି ବେଲଗୁଣ୍ଠାରେ ଉଚ୍ଚ ବିଦ୍ୟାଳୟ ଓ ମାଧମିକ ବିଦ୍ୟାଳୟରେ ଯଥାକ୍ରମେ ପ୍ରବେଶ କରାଗଲା । ସେ ଦୁହେଁ ପ୍ରତିଦିନ ଶ୍ରୀବତ୍ସ ଗୋରକ୍ଷାଶ୍ରମରୁ ବେଲଗୁଣ୍ଠା ଚାଲି ଚାଲି ଯାଇ ପଢ଼ାପଢ଼ି କରି ଆସନ୍ତି । ସେଠାରେ ଟୋଲ ପଣ୍ଡିତ, ମୌଳିକ ବିଦ୍ୟାଳୟର ଶିକ୍ଷକ ଓ ଟୋଲ୍ ଛାତ୍ରମାନଙ୍କ ସହ ଘନିଷ୍ଠ ଆତ୍ମୀୟତା ସହ ଆନନ୍ଦରେ ରହିଲୁ ।

ଏହି ଗୋରକ୍ଷାଶ୍ରମରେ ଥିବାବେଳେ ଆଜୀବନ ଦେଶ ସେବକ, ସ୍ୱାଧୀନତା

ସଂଗ୍ରାମୀ ଗାନ୍ଧୀବାଦୀ, ସର୍ବୋଦୟ ନେତା, ଋଷିପ୍ରାଣ ଆଦର୍ଶ ଅଧ୍ୟାପକ, ପୁଣ୍ୟଶ୍ଳୋକ ଆଚାର୍ଯ୍ୟ ହରିହର ଦାଶ ମହାଶୟ ସର୍ବୋଦୟ ସମ୍ମିଳନୀ ଉଦ୍ଦେଶ୍ୟ ପ୍ରଚାର କରିବା ପାଇଁ ଗଞ୍ଜାମ ଗସ୍ତରେ ଆସିଥିଲେ । ସେ କ୍ଷତ୍ରିୟବରପୁରରେ ଯେଉଁଦିନ ପହଞ୍ଚିଲେ ମୁଁ ସେଦିନ ସେଠାକୁ ଯାଇ ତାଙ୍କୁ ଗୋରକ୍ଷାଶ୍ରମରେ ପଦାର୍ପଣ କରିବାପାଇଁ ଅନୁରୋଧ କଲି । ସେ ମୋର ଅନୁରୋଧ ରକ୍ଷାକରି ଆଶ୍ରମକୁ ଆସିଲେ । ତାଙ୍କ ସାଙ୍ଗରେ ଆଉ ଜଣେ ନାରୀ କର୍ମୀ ଆସିଥାନ୍ତି । ଉଭୟେ ଆଶ୍ରମରେ ରହିଲେ । ବେଲଗୁଣ୍ଠା ସଭାରେ ଯୋଗ ଦେବାପାଇଁ ମୁଁ ତାଙ୍କ ସାଙ୍ଗରେ ଗଲି । ତହିଁ ଆରଦିନ ସେ ପୁଣି ବଡ଼ ସକାଳେ ଆସି ଆଶ୍ରମରେ ପହଞ୍ଚିଲେ । ଚୁଡ଼ା, ଗୁଡ଼ ଓ ଟଭାରସ ଜଳଖିଆ ଦିଆଗଲା । ଭାରି ସନ୍ତୋଷରେ ଖାଇଲେ । ମୁଁ ତାଙ୍କ ସାଙ୍ଗରେ ବାଲିପଦର, ବୁଗୁଡ଼ା ଓ ଜଗନ୍ନାଥ ପ୍ରସାଦ ଯାଇଥିଲି ।

ତାଙ୍କ ସହିତ ମୁଁ ସତ୍ୟାଗ୍ରହ ଆନ୍ଦୋଳନ, ହରିଜନ ଆନ୍ଦୋଳନ ପ୍ରଭୃତିରେ କାମ କରିଥିଲି । ତାଙ୍କର ମହାନ ବ୍ୟକ୍ତିତ୍ୱ, ଆଧ୍ୟାତ୍ମିକ ଭାବଧାରା, ନିରାଡ଼ମ୍ବର ଓ ସରଳ ବ୍ୟବହାର ହେତୁ ତାଙ୍କର ପାଦତଳେ ମୋର ହୃଦୟର ଭକ୍ତି ଉଚ୍ଛୁଳି ପଡ଼ିଥିଲା । ଏହିପରି ମହାପୁରୁଷମାନଙ୍କ ସମ୍ପର୍କରେ ଆସିବା ଜୀବନରେ ସୌଭାଗ୍ୟ କ୍ରମେ ଘଟିଥିଲା । ଆଉ ଜଣେ ମହାପୁରୁଷ ଥିଲେ ଶ୍ରୀ ଅମୃତଲାଲ ଠକ୍କର ବାପା । ଏମାନଙ୍କ ସହ କାମ କରିବା ଏବଂ ସେମାନଙ୍କ ଯତ୍‌କିଞ୍ଚିତ୍ ସେବା କରିବା ସୁଯୋଗ ମିଳିବା ପୂର୍ବ କର୍ମର ଫଳ ।

ଦୁର୍ଲ୍ଲଭଂ ତ୍ରୟମେବୈତଦ୍ ଦୈବାନୁଗ୍ରହହେତୁକଂ
ମନୁଷ୍ୟତ୍ୱଂ, ମୁମୁକ୍ଷତ୍ୱଂ, ମହାପୁରୁଷ ସଂଶ୍ରୟଃ ।।

ଏହିପରି ମହାପୁରୁଷମାନଙ୍କର ସଂଶ୍ରୟ ଲାଭ, ଦୈବାନୁଗ୍ରହ ବିନା ମିଳିବା ସମ୍ଭବ ନୁହେଁ ।

ବିପଦ୍ ସମ୍ପଦିବାଭାତି ମୃତ୍ୟୁଶ୍ଚାପ୍ୟମୃତାୟତେ
ଶୂନ୍ୟଂ ସଂପୂର୍ଣତାମେତି ଭଗବଦ୍‌ଜନ ସମାଗମାତ୍ ।।

ବାସ୍ତବିକ ଏମାନଙ୍କ ସମ୍ପର୍କରେ ଆସି ମୋର ଏହି ଭାବ ଉଦୟ ହୋଇଥିଲା ଏବଂ ସେମାନଙ୍କ ଅନୁଗ୍ରହ ଲାଭ କରି ମୁଁ କୃତାର୍ଥ ହୋଇଥିଲି ।

ଆଉ ଏକ ପରିବର୍ତ୍ତନ ।

ଏହି ସମୟରେ ମୋର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ଥିଲା । ପିଲାମାନେ ପାଠ ପଢୁଥାନ୍ତି କୌଣସି ରୋଜଗାର ପନ୍ଥା ନାହିଁ । କେବଳ ପୈତୃକ ଭୂ ସଂପତ୍ତିରୁ ଖଣ୍ଡେ ଖଣ୍ଡେ ବିକ୍ରି କରି ଚଳିବାକୁ ହୁଏ ।

ଇତି ମଧ୍ୟରେ ସରକାରଙ୍କ ସଘନ କୃଷି ଯୋଜନା ପ୍ରବର୍ତ୍ତିତ ହେଲା । କୃଷି ସମିତିମାନ ଗଠନ କରାଗଲା । ଜଣେ ଜଣେ କୃଷି ସମିତି ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ ହେବା

ବ୍ୟବସ୍ଥା ଥିଲା । ଶିକ୍ଷିତ କୃଷକମାନଙ୍କ ମଧ୍ୟରୁ ଯେଉଁମାନଙ୍କର ଅନ୍ତତଃ ଦୁଇଟି ହଳର ଚାଷଥିବ ସେହିମାନଙ୍କ ମଧ୍ୟରୁ କେତେଜଣଙ୍କୁ କୃଷି ସମିତି ପରିଚାଳକ ଭାବରେ ନିଯୁକ୍ତ କରାଗଲା । ଘୁମୁସରରେ ଗୋଟିଏ ସମିତି ଗଠିତ ହେଲା । ଘୁମୁସରର ତତ୍‌କାଳୀନ ତହସିଲଦାର ଶ୍ରୀ ରାମ ମୂର୍ତ୍ତିଙ୍କ ସହ ମୋର ପରିଚୟ ଥିଲା । ମୋର ଚାଷରେ ଯୋଗ୍ୟତା ଥିବା ସେ ଜାଣିଥିଲେ । ଏ କାର୍ଯ୍ୟ ପାଇଁ ଆବେଦନ କରିବାକୁ ମତେ ପରାମର୍ଶ ଦେଲେ । ମୁଁ ଗୋଟିଏ ଦରଖାସ୍ତ ଦେଲି । ବହୁଦିନ ପରେ ଗଞ୍ଜାମ ଜିଲ୍ଲା କଲେକ୍ଟର ଶ୍ରୀ ଗୋପୀନାଥ ବେହେରାଙ୍କ ଠାରୁ ରସୁଲକୋଣ୍ଡା ଗସ୍ତରେ ଆସୁଥିବା ରେଭିନ୍ୟୁ କମିସନର୍ ଶ୍ରୀ ରାମନାଥନ୍‌ଙ୍କ ସହ ସାକ୍ଷାତ୍ କରିବା ପାଇଁ ଏକ ଆଦେଶ ପାଇଲି । ଯଥା ସମୟରେ ଯାଇ ଦେଖାକଲି । ରେଭିନ୍ୟୁ କମିଶନର, ଗଞ୍ଜାମ ଜିଲ୍ଲା କଲେକ୍ଟର ଏବଂ ଘୁମୁସର ଆର୍.ଡି.ଓ. ଶ୍ରୀ ଦୁର୍ଗାପ୍ରସାଦ ତ୍ରିପାଠୀଙ୍କ ସମ୍ମୁଖରେ ମତେ କାମରେ ଯୋଗ ଦେବାପାଇଁ ମୌଖିକ ଆଦେଶ ଦେଲେ । ବିଧିବଦ୍ଧ ଆଦେଶ ବିନା କିପରି ସେ କାମରେ ଯୋଗ ଦେବେ ବୋଲି ଆର୍.ଡି.ଓ ପଚାରିବାରୁ ସେ କହିଲେ "Let him write that as per the desire of the Commissioner I join my duties as Krishi Samiti Superintendent on such and such date." ତଦନୁଯାୟୀ ଲେଖି ମୁଁ ୨୫/୫/୫୦ରେ ଉକ୍ତ କାମରେ ଯୋଗଦେଲି । ଆର୍.ଡ଼ି.ଓ ଶ୍ରୀ ଦୁର୍ଗା ପ୍ରସାଦ ତ୍ରିପାଠୀ । ଜଣେ ସାଧୁ, ସଚ୍ଚୋଟ ବ୍ୟକ୍ତି । ତାଙ୍କରି ଅଧୀନରେ ମତେ କାମ କରିବାକୁ ପଡ଼ିଲା । ଗୋଟିଏ ଚପରାସି ଦିଆଗଲା । ମୋର ଦରମା ମାସିକ ଟ୨୦୦/- । ରସୁଲକୋଣ୍ଡାରେ ଶ୍ରୀ ଜନାର୍ଦ୍ଦନ ସିଂହଙ୍କ ଏକ ଘରଭଡ଼ା ନେଇ ସପରିବାର ବାସକଲି । ପିଲାମାନେ ବେଲଗୁଣ୍ଠାରୁ ଆସି ଏଠାର High Schoolରେ ପଢ଼ିଲେ । ମୋର ନିଯୁକ୍ତି ଆଦେଶ କୃଷି ବିଭାଗ ଡାଇରେକ୍ଟରଙ୍କ ଠାରୁ ଆସିବା କଥା । ଡାଇରେକ୍ଟର ଥିଲେ ଶ୍ରୀ ଆର୍.କେ.ପାଢ଼ୀ ।

କାର୍ଯ୍ୟଭାର ଗ୍ରହଣ କରିବା ସଙ୍ଗେ ସଙ୍ଗେ ମଫସଲ ଗସ୍ତରେ ବାହାରିଲି । ନୂଆଁଗାଁ, ଇଙ୍ଗିନାଠି ହୋଇ ମନ୍ଦାରରେ ପହଞ୍ଚିଲି । ଏହିସବୁ ଗାଁରେ ବହୁଳ ଛଣିଚାଷ ହୁଏ । ସେଠାରେ ଛଣି ମଞ୍ଜି ଅପେକ୍ଷାକୃତ ବେଶୀ ବିକ୍ରି ହୁଏ । ବିହନ କରିବାପାଇଁ କିମ୍ବା ଖତ କରିବାପାଇଁ ଏ ଗାଁରୁ ବହୁତ ଚାଷୀ ଆସି ଛଣି ମଞ୍ଜି କିଣି ନିଅନ୍ତି ।

ସଘନ ଚାଷ ଯୋଜନା ପ୍ରକାରେ ଛଣି ମଞ୍ଜି ମହଣ ଟ୧୨/-ରେ କିଣି ସରକାର ଚାଷୀମାନଙ୍କୁ ଟ୪/- ରେ ଦିଅନ୍ତି । କୃଷି ବିଭାଗ ଓଭରସିଅର୍ ଏହି କିଣାବିକା କରିଥାନ୍ତି । ଏହି ମନ୍ଦାର ଗ୍ରାମର କେତେଜଣ ଚାଷୀଙ୍କୁ ହାତକରି ରସଲକୋଣ୍ଡା କୃଷି ବିଭାଗ ଓଭରସିଅର ୧୦୦ ମହଣ ଛଣି ମଞ୍ଜି କିଣିଲା ପରି କେବଳ କାଗଜ ପତ୍ରରେ ଦର୍ଶାଇ ଟଙ୍କା ଆତ୍ମସାତ୍ କରିଥିଲେ । ଏ କଥା ମୋ କାନକୁ ଆସିଲା । ମୁଁ ସେଠାର ଲୋକଙ୍କଠାରୁ ତଥ୍ୟ ସଂଗ୍ରହ କରି ସଙ୍ଗେ ସଙ୍ଗେ ଆର.ଡ଼ି.ଓଙ୍କୁ ଜଣାଇଲି । ସେ କିନ୍ତୁ

ହଠାତ୍ କିଛି ବିଧାନ ନ କରିବା ଦେଖି ଲିଖିତ ଭାବରେ ଏକ ରିପୋର୍ଟ ଦେଲି । ସେ ନିଜେ ତଦନ୍ତ ନ କରି କୃଷି ବିଭାଗକୁ ତଦନ୍ତ ପାଇଁ ପଠାଇ ଦେଲେ । ଇତି ମଧ୍ୟରେ କୃଷି ବିଭାଗ ଡେପୁଟି ଡାଇରେକ୍ଟର ଶ୍ରୀ ଦାମୋଦର ମିଶ୍ର ଗସ୍ତରେ ଆସିଲେ ତାଙ୍କୁ ମଧ୍ୟ ଏ ବିଷୟ ଲେଖି ଜଣାଇଲି । ସେ କି ଭାବରେ କେଜାଣି ମୋର ଏ ବିଷୟରେ ରିପୋର୍ଟ କରିବା ଅଧିକାର ନାହିଁ ବୋଲି ଧମକ ଦେଲେ । କିନ୍ତୁ ଜିଲ୍ଲା କୃଷି ଅଫିସର୍ ଶ୍ରୀ ହରିହର ମିଶ୍ର ତାଙ୍କୁ ବୁଝାଇ କହିଲେ ଯେ କୃଷି ସମିତି ସୁପରିଣ୍ଟେଣ୍ଡେଣ୍ଟଙ୍କର ଏସବୁ ବିଷୟ ଦେଖିବା ଏବଂ ରିପୋର୍ଟ କରିବା ଅଧିକାର ଅଛି ।

ଧାନ ଅମଳ ହେବାର କିଛିଦିନ ପରେ କୃଷି ବିଭାଗ ଅଫିସରମାନେ ଆସି କେଉଁଠାରେ କି ଅନୁସନ୍ଧାନ କଲେ କେଜାଣି କିନ୍ତୁ ଓଭରସିଅର୍ ସପକ୍ଷରେ ଏବଂ ମୋ ବିରୁଦ୍ଧରେ ରିପୋର୍ଟ ଦେଲେ ।

ଇତି ମଧ୍ୟରେ ଓଡ଼ିଶା Food Commissioner ଶ୍ରୀ ନୀଳମଣି ସେନାପତିଙ୍କ କାନକୁ ଏ କାରବାର ସମ୍ପର୍କରେ କୌଣସି ପ୍ରକାରେ ଖବର ଗଲା । ସେ ସମସ୍ତ କାଗଜପତ୍ର ମଗାଇ ରେଭିନ୍ୟୁ ବିଭାଗଦ୍ୱାରା ପୁଣି ତଦନ୍ତ କରିବାପାଇଁ ଆଦେଶ ଦେଲେ । ଘୁମୁସର ତହସିଲଦାର ବିଭିନ୍ନ ଗ୍ରାମ ଗସ୍ତକରି ଶେଷରେ ମନ୍ଦାର ଗ୍ରାମକୁ ଗଲେ । ମୁଁ ମଧ୍ୟ ଗୋଟିଏ ପିଣ୍ଡାରେ ବସି ରାମ ନାମ ଜପ କରୁଥାଏ । ତଦନ୍ତ ସରିଲା । ଏ ସବୁ କାରସାଦିର ଯଥାର୍ଥ ତଦନ୍ତ କରି ମୁଁ ପ୍ରକୃତ କଥା ରିପୋର୍ଟ କରିଥିବା ଯୋଗୁଁ ମତେ ପ୍ରଶଂସା କରି ତହସିଲଦାର ତାଙ୍କ ରିପୋର୍ଟ ଦେଲେ । ଓଭରସିଅର ଦୋଷୀ ସାବ୍ୟସ୍ତ ହେଲେ । ଦଣ୍ଡ ସ୍ୱରୂପ ତାଙ୍କୁ କାମଦାର ପଦକୁ ଖସାଇ ଦିଆଗଲା ।

ଏସବୁ ହେଉ ହେଉ ଛ'ମାସ ଗଡ଼ିଗଲା । ମୋର ଦରମା ମିଳିବାକୁ ନାହିଁ । ଇତି ମଧ୍ୟରେ ଓଡ଼ିଶା Food Commissioner ଶ୍ରୀ ନୀଳମଣି ସେନାପତି ରସଲକୋଣ୍ଡା ଗସ୍ତରେ ଆସିଲେ । ମୋ ସହିତ କୃଷି ସମିତି କାର୍ଯ୍ୟ କଳାପ ସମ୍ପର୍କରେ କଥାବାର୍ତ୍ତା କରୁକରୁ ୬ମାସ ହେଲା ନିଯୁକ୍ତ ହୋଇଥିଲେ ସୁଦ୍ଧା ଏ ପର୍ଯ୍ୟନ୍ତ ନିଯୁକ୍ତି ଆଦେଶ ଓ ଦରମା ପାଇନାହାନ୍ତି ବୋଲି ଆର୍.ଡ଼ି.ଓ ଶ୍ରୀ ଦୁର୍ଗା ପ୍ରସାଦ ତ୍ରିପାଠୀ କମିଶନର୍‌ଙ୍କୁ ଜଣାଇଲେ । କମିଶନର୍ "Why not ?" ବୋଲି ଜୋର୍‌ରେ ପଚାରିବା ମାତ୍ରେ ଜିଲ୍ଲା କୃଷି ଅଫିସର ଶ୍ରୀ ହରିହର ମିଶ୍ର ତରବର ହୋଇ କହିଲେ ଯେ ନିଯୁକ୍ତି ଆଦେଶ ଆସିଗଲାଣି । ଦରମା ବିଲ୍ ତିଆରି ହେଉଛି, ଦିନେ ଦୁଇଦିନ ମଧ୍ୟରେ ନିଯୁକ୍ତି ସଙ୍ଗରେ ଦରମା ମଧ୍ୟ ପାଇବେ ।

ସତକୁ ସତ ଦୁଇ ତିନିଦିନ ମଧ୍ୟରେ ସେ ସବୁ ଆସିଗଲା । ଏକାଥରକେ ଛ'ମାସର ଦରମା ଟ ୧୨୦୦ଙ୍କା ପାଇଲି । ଟ୍ରେଜରୀରୁ ଟଙ୍କା ଧରି ଆସି ବଜାରରେ ବାକି ପରିଶୋଧ କରୁ କରୁ ସବୁ ଶେଷ ।

ମୋ ଉପରେ କୃଷି ବିଭାଗ ଉଚ୍ଚ କର୍ମଚାରୀଙ୍କ ଆଉ ଏକ ଦାଉ । ମୁଁ ଥରେ କଟକ ଯାଇଥିଲି । କୃଷି ବିଭାଗ ଡାଇରେକ୍ଟରଙ୍କ ଅଫିସରୁ ବୁଝିପାରିଲି ଯେ ମୋ ନାମରେ ଅନ୍ୟ ଏକ ଅଭିଯୋଗ ହେଉଛି ଯେ ମୁଁ ପ୍ରଥମେ ଏ କାମପାଇଁ ଦରଖାସ୍ତ କଲାବେଳେ ମୋର ଗୋଟିଏ ହଳର ଚାଷ ଅଛି ବୋଲି ଲେଖି ଦେଇଥିଲି । ଅବଶ୍ୟ ପରେ ଆଉ ଗୋଟିଏ ହଳର ଚାଷ ମିଶିଲା । କିନ୍ତୁ କୃଷି ସୁପରିଣ୍ଟେଣ୍ଡେଣ୍ଟ ହେବାକୁ ହେଲେ ଅନ୍ୟାନ୍ୟ ଯୋଗ୍ୟତା ସହ ଦୁଇଟି ହଳଥିବା ଆବଶ୍ୟକ । ସେଇ କଥାକୁ ନେଇ ଏହାଙ୍କର ଦୁଇଟି ହଳ ନାହିଁ, ଏଣୁ ଏହାଙ୍କୁ ଉକ୍ତ କାର୍ଯ୍ୟରୁ ଅନ୍ତର କରାଯାଉ, ଏପରି ଏକ ଆଦେଶ ଯାଉଛି ବୋଲି ଶୁଣିପାରି ମୁଁ ରେଭିନ୍ୟୁ କମିଶନର ଶ୍ରୀ ରାମନାଥନ୍‌ଙ୍କୁ ଦେଖାକରି ଏ ବିଷୟ କହିଲି । ଗଞ୍ଜାମ ଜିଲ୍ଲା କଲେକ୍ଟରଙ୍କୁ ଦେଖାକରି ଏ ବିଷୟ କହିବାକୁ ସେ କହିଲେ । ମୁଁ କିପରି ଭାବେ ତାଙ୍କ ସହିତ ଦେଖା କରିପାରିବି ବୋଲି ତାଙ୍କୁ କହିବାରୁ ସେ କହିଲେ- ''ଲେଖ, The Commissioner desires that I might meet you. If Zonega is alright, nobody can touch your hair. ମୁଁ ସେହି ଭାବରେ କଲେକ୍ଟରଙ୍କୁ ଜଣାଇଲି ଏବଂ ତାଙ୍କର ଘୁମୁସର ଗସ୍ତବେଳେ ମାଧବରିଡ଼ା ବଙ୍ଗଳାଠାରେ ତାଙ୍କୁ ଦେଖା କରିବାପାଇଁ ଯୋନେଜା ସାହେବଙ୍କଠାରୁ ନିର୍ଦ୍ଦେଶ ପାଇଲି । ମାଧବରିଡ଼ାରେ ସେ କ୍ୟାମ୍ପ କରିବା ଦିନ ତାଙ୍କୁ ଯାଇ ଦେଖାକଲି । ମୋ ବିରୁଦ୍ଧରେ ତାଙ୍କୁ କିଛି କହିବାପାଇଁ ମୋର ଜଣେ ବନ୍ଧୁ ଶ୍ରୀ ରାଧାମୋହନ ପଣ୍ଡା ଉକ୍ତ ଓଭରସିଅର୍‌ର ପ୍ରବର୍ତ୍ତନାରେ ଆସି କୃଷି ସମିତିଦ୍ୱାରା କିଛି କାମ ହେଉନାହିଁ ବୋଲି କହିଲେ । ଯୋନେଜା ସାହେବ ତାଙ୍କ କଥାଶୁଣି କହିଲେ ''ତୁମେ ଏ ବିଷୟ କୃଷି ସମିତି ସୁପରିଣ୍ଟେଣ୍ଡେଣ୍ଟଙ୍କୁ କେବେ କହିଛ କି ?'' ସେ ନାହିଁ କଲେ । ମତେ ଡାକି ପଚାରିଲେ, ''ଏ ବାବୁ କୃଷି ସମିତି ବିଷୟରେ ଆପଣଙ୍କୁ କିଛି କହିଛନ୍ତି କି ?'' ମୁଁ ନାହିଁ କଲି । ସେତିକିରେ ସେ ତାଙ୍କୁ କହିଲେ, ''କୃଷି କାର୍ଯ୍ୟ ଦେଖିବାପାଇଁ ଆମେ ତୁମ ନିକଟରେ ଜଣେ ବ୍ୟକ୍ତିଙ୍କୁ ନିଯୁକ୍ତ କରିଛୁ, ତାଙ୍କୁ କିଛି ନ କହି ମୁଁ କେବେ ଆସିଲେ କହିବାକୁ ଜଗିଛ ।'' ଏତିକିରେ ରାଧାମୋହନ ବାବୁ ପଂତୁଆ ହୋଇ ଚାଲିଗଲେ । ତାପରେ ସେ ଅଫିସ କରୁଥିବା ଏକ ଛୋଟ କୋଠରୀକୁ ମତେ ଡାକିଲେ । ସେତେବେଳେ ତାଙ୍କ ନିକଟରେ କେହି ନ ଥିଲେ । ଗୋଟିଏ ଗ୍ଲାସରେ ପରିଡ଼ ପାଣି ଥୁଆ ହୋଇଥିଲା । ଆଉ ଗୋଟିଏ ଗ୍ଲାସ୍ ଆଣିବାକୁ ଡାକିଲେ । ମତେ ଗୋଟିଏ ଗ୍ଲାସ ବଢ଼ାଇ ଦେଇ ଅନ୍ୟଟି ସେ ପାନ କଲେ ଏବଂ ମୋର ବିଷୟ ଆମୂଳଚୂଳ ବୁଝି ନେଲେ । ଶେଷରେ କହିଲେ "Oh, this is not a disqualification" ଏବଂ ମତେ ବିଦାୟ ଦେଲେ । ମୁଁ ମୋର କୃତଜ୍ଞତା ଜଣାଇବା ପାଇଁ ଅବସର ନ ପାଇ ଦୁଃଖିତ ହେଲି । ଆଉ ଏ ସମ୍ପର୍କରେ କୌଣସି ଅସୁବିଧା ହୋଇନାହିଁ । କୃଷି ଅଫିସରମାନେ ଥଣ୍ଡା ପଡ଼ିଗଲେ ।

ଏ କୃଷି ସମିତି ଏକ ବର୍ଷକିଆ ଯୋଜନା । ବର୍ଷକ ପରେ ମୁଁ ସେଥିରୁ ବିଦାୟ ନେଲି ।

## ଗୀତା ସମିତି, ଦିବ୍ୟ ଜୀବନ ସଂଘ ଏବଂ ବ୍ରହ୍ମବିଦ୍ୟା ସମିତି

ରସଲକୋଣ୍ଡାରେ ଅବସ୍ଥାନ କାଳରେ କେତେଜଣ ସଭ୍ୟଙ୍କୁ ନେଇ ଗୋଟିଏ ଗୀତା ସମିତି ସ୍ଥାପନ କଲି । ପ୍ରତିଦିନ ଟାଉନ୍ ହଲ୍‌ରେ (ପରବର୍ତ୍ତୀ କାଳରେ ଭଞ୍ଜ ପରିଷଦରେ) ଗୀତାପାଠ ଓ ଚର୍ଚ୍ଚା ହୁଏ । ଶ୍ରୀ ରାମଚନ୍ଦ୍ର ରଥ ଏହି ସମୟରେ ରସଲକୋଣ୍ଡା ହସ୍‌ପିଟାଲ୍‌ର ଆସିଷ୍ଟାଣ୍ଟ୍ ସର୍ଜନ ଭାବରେ ଆସିଥିଲେ । ସେ ବ୍ରହ୍ମବିଦ୍ୟା ସମିତିର ସଭ୍ୟ ଏବଂ ଗୀତା ଚର୍ଚ୍ଚାରେ ବିଶେଷ ପାରଦର୍ଶୀ । ଏଠାକୁ ଆସିବା ପରେ ଏଠାରେ କୌଣସି ଧର୍ମାନୁଷ୍ଠାନ ଅଛି କି ବୋଲି ପଚାରି ଗୀତା ସମିତି ଥିବା କଥା ବୁଝିଲେ । ପ୍ରତିଦିନ ଉପସ୍ଥିତି ହୋଇ ଗୀତା ଚର୍ଚ୍ଚା କରନ୍ତି । ଆମ୍ଭେମାନେ ସେଥିରେ ଉତ୍ସାହିତ ହୋଇଥିଲୁ । ସେ ଗୀତା ଚର୍ଚ୍ଚା କରିବା ସମୟରେ ବ୍ରହ୍ମବିଦ୍ୟା ସମିତି କଥା କହନ୍ତି ଏବଂ ବ୍ରହ୍ମବିଦ୍ୟା ସମିତିର ତତ୍ତ୍ୱ ଆଲୋଚନା କରନ୍ତି । କାଳକ୍ରମେ ତାଙ୍କରି ପ୍ରେରଣାରେ ଏକ ବ୍ରହ୍ମବିଦ୍ୟା ସମିତି ସ୍ଥାପିତ ହେଲା । ବହୁଲୋକ ସମିତିର ସଭ୍ୟ ହେଲେ ।

ଏଥିପୂର୍ବରୁ ମୁଁ ସ୍ୱାମୀ ଶିବାନନ୍ଦଙ୍କ "Sure ways to success in Life and God realisaton" ପୁସ୍ତକ ପଢ଼ିଥିଲି । ଏହି ବହିଟି ଦିବ୍ୟ ଜୀବନ ସଂଘର ବାଇବଲ୍ ରୂପେ ଗଣ୍ୟ ହୁଏ । ସେଥିରେ ଶାରୀରିକ, ମାନସିକ ଏବଂ ଆଧ୍ୟାତ୍ମିକ ସାଧନର ଅନେକ ସରଳ ପ୍ରଣାଳୀ ବୁଝାଯାଇଛି । ତଦ୍ୱାରା ମୁଁ ଦିବ୍ୟ ଜୀବନ ସଂଘ ପ୍ରତି ଆକୃଷ୍ଟ ହୋଇ ଗୀତା ସମିତିକୁ ଦିବ୍ୟ ଜୀବନ ସଂଘରେ ପରିଣତ କରିଥିଲି । ଉଚ୍ଚ ବିଦ୍ୟାଳୟର କେତେକ ଛାତ୍ରଙ୍କୁ ନେଇ ଯୁବ ଦିବ୍ୟ ଜୀବନ ସଂଘ ଗଠିତ ହେଲା । ସମଗ୍ର ଉତ୍କଳର ଏହା ହେଉଛି ପ୍ରଥମ ଦିବ୍ୟ ଜୀବନ ସଂଘ । କିଛିଦିନ ପରେ କଟକରେ ୨ୟ ଦିବ୍ୟ ଜୀବନ ସଂଘ ପ୍ରତିଷ୍ଠିତ ହୋଇଥିଲା । ଭଞ୍ଜନଗର ଦିବ୍ୟ ଜୀବନ ସଂଘର ସାପ୍ତାହିକ ଅଧିବେଶନ ଶ୍ରୀ ରଘୁନାଥ ମନ୍ଦିରରେ ନିୟମିତ ଭାବେ ଅନୁଷ୍ଠିତ ହୁଏ । ଶ୍ରୀ ପଦ୍ମନାଭ ସୁବୁଦ୍ଧି, ଭାସ୍କର ପାତ୍ର, ବେଙ୍କଟରତ୍ନ ପାତ୍ର, ବଳମଜୀ ଏବଂ ମୋର ୩ୟ ପୁତ୍ର ପ୍ରଶାନ୍ତ ଚନ୍ଦ୍ର ପ୍ରଭୃତି ପ୍ରାୟ ୧୫/୨୦ ଜଣ ସଭ୍ୟ ଥାନ୍ତି । ପ୍ରଶାନ୍ତ ଚନ୍ଦ୍ର ସମ୍ପାଦକ । ପ୍ରତିଦିନ ପ୍ରଭାତ ୪ଟାରୁ ଉଠି ଏମାନେ ସମସ୍ତେ ରଘୁନାଥ ମନ୍ଦିର ପାଠାଗାର ଗୃହରେ ଯୋଗାସନ ଓ ପ୍ରାଣାୟାମ ଶିକ୍ଷା କରନ୍ତି । ପ୍ରାର୍ଥନା ଧର୍ମଗ୍ରନ୍ଥ ଆଲୋଚନା କରନ୍ତି । ସଂଘର ଅଧିବେଶନ ମାନଙ୍କରେ ସ୍ଥାନୀୟ ଆର୍.ଡ଼ି.ଓ., ତହସିଲଦାର, ସବ୍‌ରେଜିଷ୍ଟ୍ରାର, ଓକିଲ ଶ୍ରୀ ଶ୍ୟାମସୁନ୍ଦର ତରାସିଆ, କେ. ଜନାର୍ଦ୍ଦନ ସିଂହ ପ୍ରଭୃତି ସମୟେ ସମୟେ ନିମନ୍ତ୍ରିତ ହୋଇ ଯୋଗ

ଦେଇଥାନ୍ତି ଏବଂ ନାନା ଉପଦେଶ ପ୍ରଦାନ କରନ୍ତି ।

କେତେଦିନ ପରେ ଭେଜିପୁଟଠାରେ ଆଉ ଗୋଟିଏ ଆସନ ଶିକ୍ଷାକେନ୍ଦ୍ର ସ୍ଥାପିତ ହେଲା । ମୁଁ ପ୍ରତିଦିନ ସକାଳେ ଏ ଉଭୟ ଯୁବ ସଂଘରେ ଯୋଗଦେଇ ବିଭିନ୍ନ ଯୋଗାସନ ଶିକ୍ଷା ଦିଏ ।

ସେହିବର୍ଷ ଗୀତା ଜୟନ୍ତୀ ମହା ସମାରୋହରେ ପାଳିତ ହୋଇଥିଲା ।ଶ୍ରୀ ଜନାର୍ଦ୍ଦନ ସିଂହ ଉତ୍ସାହର ସହ ଆମ୍ଭମାନଙ୍କୁ ସାହାଯ୍ୟ କରିଥିଲେ ।

ସିଂହ ଜଣେ ହିନ୍ଦୁସ୍ଥାନୀ ରାଜପୁତ୍ । ବହୁଦିନରୁ ସେ ରସଲକୋଣ୍ଡାରେ ଘରଦ୍ୱାର କରି ରହିଛନ୍ତି । ଘୁମୁସରର ଶେଷ ରାଜାଙ୍କ ସାନ ରାଣୀଙ୍କର ଘରବାଡି କିଣି ସେଥିରେ ବାସ କରିଥିଲେ । ସେ ଯେତେବେଳେ ରସଲକୋଣ୍ଡା ଆସିଲେ ସେଠାରେ ଅନେକ ସାଧାରଣ ସଂସ୍ଥା ଗଠନ କରିଥିଲେ । ଘୁମୁସର ଧର୍ମ ପାଠାଗାର (The Ghumusar Religious Library) ସ୍ଥାପନ କରିଥିଲେ । ତାଙ୍କରି ଉଦ୍ୟମରେ ଅନେକ କୁମ୍ଭଟି ମହାଜନ ଓ ଅନ୍ୟାନ୍ୟ ଭଦ୍ରବ୍ୟକ୍ତି କଷାୟ ବସନ ପରିଧାନ କରି ନାମ ସଂକୀର୍ତ୍ତନ କରୁଥାନ୍ତି । ଗୋଟିଏ ଆୟୁର୍ବେଦୀୟ ଦାତବ୍ୟ ଚିକିତ୍ସାଳୟ ସ୍ଥାପନ କରିଥିଲେ । ଧନୀ ବ୍ୟବସାୟୀମାନଙ୍କୁ ଧର୍ମାନୁଷ୍ଠାନ ମାନଙ୍କରେ ଯୋଗଦାନ କରିବାକୁ ପ୍ରବର୍ତ୍ତାଇ ଥିଲେ ।

ଗୀତା ଜୟନ୍ତୀ ପାଇଁ କୌଣସି ଜଣେ ସାଧୁ ସନ୍ନ୍ୟାସୀଙ୍କୁ ନିମନ୍ତ୍ରଣ କରିବାକୁ ସେ କଟକ, ଭୁବନେଶ୍ୱର ପ୍ରଭୃତି ବିଭିନ୍ନ ସ୍ଥାନକୁ ଯାଇ ପୁରୀରୁ ସ୍ୱାମୀ ଯୋଗ ଜୀବନାନନ୍ଦ ସରସ୍ୱତୀଙ୍କୁ ସଭାପତି ବରଣ କରି ଆଣିଥିଲେ । ରସଲକୋଣ୍ଡାର ପର୍ବତ ଉପରେ ଏକ ବିସ୍ତୃତ ଅଧିତ୍ୟକାରେ ଉତ୍ସବ ପାଳନ କରାଯାଇ ଥିଲା । ସ୍ୱାମୀ ଯୋଗ ଜୀବନାନନ୍ଦ ଜଣେ ଉଚ୍ଚକୋଟୀର ସାଧକ। ତାଙ୍କରି ଉଦ୍ୟମରେ ପୁରୀରେ ଏକ ମହିଳାଶ୍ରମ ହୋଇଅଛି ।

ଋଷିକେଶସ୍ଥ ଦିବ୍ୟଜୀବନ ସଂଘର ଆମେ କେତେଜଣ ସଭ୍ୟ ହୋଇଥିଲୁ । ପତ୍ର ଦ୍ୱାରା ସ୍ୱାମୀ ଶିବାନନ୍ଦଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲୁ । ପ୍ରତି ସପ୍ତାହରେ ଆଧାତ୍ମିକ ଦୈନନ୍ଦିନୀ ଲେଖି ପଠାଉ ଏବଂ ସେ ନିଜେ ତା'ଦେଖି ନିଜର ମନ୍ତବ୍ୟ ଓ ଉପଦେଶ ପଠାଉଥିଲେ । ସମୟେ ସମୟେ ପତ୍ର ଦ୍ୱାରା ତାଙ୍କ ଠାରୁ ଉପଦେଶ ଓ ପରାମର୍ଶ ଗ୍ରହଣ କରି ନିଷ୍ଠାପର ଭାବରେ ପାଳନ କରୁଥିଲୁ । ସେହିବର୍ଷ କଟକରେ ଏକ ଦିବ୍ୟ ଜୀବନ ସଂଘ ପ୍ରତିଷ୍ଠିତ ହେଲା । କଟକ ଦିବ୍ୟ ଜୀବନ ସଂଘର କେତେ ଜଣ ଯୁବକ ସଭ୍ୟ ଏବଂ ସ୍ୱାମୀ ଶିବାନନ୍ଦଙ୍କ ଜଣେ ଶିଷ୍ୟ ସ୍ୱାମୀ ରାମପ୍ରେମୀ ଆମର ଦିବ୍ୟଜୀବନ ସଂଘ ଦେଖିବା ପାଇଁ ଆସିଥିଲେ । ଏକ ବିରାଟ ସଭା ହୋଇ ଥିଲା ।

ଏହି ସମୟରେ ମୋର ଶେଷ ସନ୍ତାନ ମନସ୍ୱିନୀର ଜନ୍ମ ହୋଇଥିଲା ।

ଶ୍ରୀ ଜନାର୍ଦ୍ଦନ ସିଂହଙ୍କ ଠାରୁ ଖଣ୍ଡିଏ ଜାଗା କିଣି ସେଠାରେ ଗୋଟିଏ ଘର

ତିଆରି କଲି । ରସଲକୋଣ୍ଡାରେ ଥିବା ଆମର ଏକଡ଼ିହ ଏବଂ ଗୋବରା ଘର ବିକ୍ରି କରି ଏହି ଘର ତିଆରି ହେଲା । ଏଥିରୁ ଜନ୍ମସ୍ଥାନ ଗୋବରାକୁ ଫେରିବା ଆଶା ଯାହା ଥିଲା ତାହା ଗଲା । କେବଳ ଦଦା ଏବଂ ଖୁଡୀ ସେଠାରେ ଥାନ୍ତି । ପୁଅମାନଙ୍କ ମଧ୍ୟରୁ କେହି କେହି ଯାଇ ତାଙ୍କ ପାଖରେ ରହନ୍ତି ।

ଏହି ସମୟରେ ଆର୍ଯ୍ୟସମାଜର ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ ମୋତେ ଦେଖା କରିବାକୁ ଆସିଥିଲେ । ଆମ ଘରେ ୨/୪ ଦିନ ରହିଥିଲେ । ମୁଁ ତ ଶ୍ରୀବତ୍ସ ଗୋରକ୍ଷାଶ୍ରମର ସଂପାଦକ ଥାଏ, ସେ ଶ୍ରୀବତ୍ସ ଗୋରକ୍ଷାଶ୍ରମ ଦେଖିବା ଉଦ୍ଦେଶ୍ୟରେ ଆସିଥିଲେ । ତାଙ୍କୁ ଆଶ୍ରମ ଦେଖାଇ ନେଇଥିଲି । ଆଶ୍ରମର ଜମି, ବାଡ଼ି ବଗିଚା ଦେଖି ସେ ମୁଗ୍ଧ ହୋଇଥିଲେ । ପରବର୍ତ୍ତୀ କାଳରେ ସେ ଏଠାକୁ ଆସି ଆଶ୍ରମର ସମସ୍ତ ଭାର ଗ୍ରହଣ କରି କନ୍ୟା ଗୁରୁକୁଳ ସ୍ଥାପନ କରିବେ ଏ କଳ୍ପନା କେହି କରି ନଥିଲେ । ଯଥା ସ୍ଥାନରେ ତାଙ୍କର ବିଷୟ ବର୍ଣ୍ଣିତ ହେବ ।

ମୁଁ ଶ୍ରୀପାଦ ଦାମୋଦର ସାତବଲେକରଙ୍କ ଗୀତାଭାଷ୍ୟ ଆଣି ରଖିଥିଲି । ସ୍ୱାମୀଜୀ ତା' ନେବାକୁ ଆଗ୍ରହ ପ୍ରକାଶ କରି ବଡ଼ ବିଚିତ୍ର ଭାବରେ ପୁସ୍ତକ ଦାମ ମୋ ଟେବୁଲ ଉପରେ ରଖିଦେଇ ମୋତେ ନ ପଚାରୁଣୁ ବହିଟିକୁ ନିଜ ବ୍ୟାଗ୍ ଭିତରେ ରଖିସାରିଲେଣି । ନେଲେଣି ତ ଆଉ କ'ଣ କହିବା । ପୁଣି ଗୋଟିଏ ମଗାଇବାକୁ ପଡ଼ିଲା । ସେ ଖଣ୍ଡକ ପୁଣି ଜଣେ ନେଇଗଲେ । ଆଉ ଖଣ୍ଡେ ମଗାଇଲି । ସେଇଟି ବେଲଗୁଣ୍ଠା ଦିବ୍ୟଜୀବନ ସଂଘରେ ଦେଲି । ସେଠାରେ କିନ୍ତୁ ପ୍ରତିଦିନ ପାଠ ଓ ଚର୍ଚ୍ଚା ହୁଏ ।

ଏହି ସମୟରେ ଭାରତ ସରକାରଙ୍କ ପକ୍ଷରୁ କଳାବଜାରି ମାନଙ୍କୁ ଧରିବା ପାଇଁ ଏକ ଆଇନ ହେଲା । ବଡ଼କୋଦଣ୍ଡାର କୁଖ୍ୟାତ କଳାବଜାରି ଶ୍ରୀ ବିଶ୍ୱନାଥ ପୃଷ୍ଟିଙ୍କୁ ଘୁମୁସର ଆର୍.ଡ଼ି.ଓ.ଙ୍କ ଆଦେଶରେ ତାଙ୍କ ଘର କୋଦଣ୍ଡାରୁ ଧରାଯାଇ ଦଉଡ଼ି ଓ ଶିକୁଳିରେ ବାନ୍ଧି ଅତି ଦୟନୀୟ ଅବସ୍ଥାରେ ରସଲକୋଣ୍ଡା ପୋଲିସ୍ ଷ୍ଟେସନକୁ ଚଲେଇ ଚଲେଇ ଅଣାଗଲା । ସେ ଜଣେ ଜମିଦାର ଓ ଧନୀ ବ୍ୟକ୍ତି ବ୍ୟବସ୍ଥା କରି ଯାମିନରେ ଖଲାସ ହୋଇ କଟକ ଯାଇ ବଡ଼ବଡ଼ିଆଙ୍କୁ ଧରା ଧରି କରି ସାଙ୍ଗେ ସାଙ୍ଗେ ଘୁମୁସର ଆର୍.ଡ଼ି.ଓ.କୁ ବଦଳି କରାଇ ଥିଲେ । ଠିକ ବଦଳି ଆଦେଶର ୨/୩ ଦିନ ମଧ୍ୟରେ ଡକ୍ଟର ମହାତାବ, ଜଣେ କେନ୍ଦ୍ର ମନ୍ତ୍ରୀ ଓ ନବକୃଷ୍ଣ ଚୌଧୁରୀ ବ୍ରହ୍ମପୁର ଗସ୍ତରେ ଆସିଥିଲେ । ମୁଁ ଏବଂ ଆଉ କେତେଜଣ କଂଗ୍ରେସ କର୍ମୀ ଯାଇ ସେମାନଙ୍କୁ କହିଲୁ । ସେମାନେ ଗଞ୍ଜାମ ଜିଲ୍ଲା କଲେକ୍ଟରଙ୍କୁ କହି ବଦଳି ଆଦେଶ ରହିତ କଲେ । ତାପରେ ମକଦ୍ଦମା ଚାଲିଲା । ପୃଷ୍ଟି କିନ୍ତୁ ଉଚ୍ଚ କର୍ମଚାରୀମାନଙ୍କ ପ୍ରଭାବରେ ମୁକ୍ତ ହେଲେ ।

ଆଉ ଏକ ଘଟଣା । ସେହି ପୃଷ୍ଟିଙ୍କର ଏକ ଧାନ ବୋଝେଇ ଟ୍ରକ୍‌କୁ ପୋଲିସ୍ ଧରିଲେ । ମୋ ପିଅନ୍ ଧରପଗଡ଼ ସମୟରେ ଦେଖିଥିଲା । ମୋ ଦ୍ୱାରା ପ୍ରତିଷ୍ଠିତ

କ୍ଷତ୍ରିୟବରପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟର ଘର ପୃଷ୍ଟି ମହାଶୟ ତିଆରି କରାଇଥିଲେ । ଏଣୁ ତାଙ୍କ ସହିତ ମୋର ଭଲ ସମ୍ପର୍କ ଥିଲା । ମୋ ପିଅନ ତାଙ୍କ ସପକ୍ଷରେ ସାକ୍ଷ୍ୟ ଦେବାପାଇଁ ପ୍ରଭାବିତ କରିବାକୁ ସେ ମତେ କହିଲେ । ମୁଁ ମନା କରିଦେଲି । କିନ୍ତୁ "ତା'ର ନିଜ ଇଚ୍ଛାରେ ସେ ଯାହା ସାକ୍ଷ୍ୟ ଦେବ ଦେଉ ମୁଁ ତାକୁ କୌଣସି ମିଛ ସତ କହିବାକୁ ପ୍ରବର୍ତ୍ତାଇବି ନାହିଁ" ବୋଲି କହିଲି । ସେହି ରାଗରେ ମୁଁ ତାଙ୍କଠାରୁ କ୍ଷତ୍ରିୟବରପୁର ସ୍କୁଲ ପାଇଁ କରିଥିବା ଋଣ ସେ ମୋଠାରୁ କଡ଼ା କ୍ରାନ୍ତି ସହିତରେ ହିସାବ କରି ଆଦାୟ କରିଥିଲେ ।

୧୯୫୧ ଜୁନ୍ ମାସରେ କୃଷି ସମିତି ସୁପରିଣ୍ଟେଣ୍ଡେଣ୍ଟ କାମ ସରିଲା । ପୁଣି ଦାରିଦ୍ର୍ୟ ଘୋଡାଇଲା । ପିଲାମାନଙ୍କର ପଢାପଢି ସମୟ । ପ୍ରଫୁଲ୍ଲ କଟକରେ B.A., ପ୍ରମୋଦ I.Sc.ଶେଷକରି ଯାଦବପୁରରେ ଇଞ୍ଜିନିଅରିଙ୍ଗ ପଢୁଥାଏ । ଅନ୍ୟ ପିଲାମାନେ ରସଇକୋଣ୍ଡା ଉଚ୍ଚ ବିଦ୍ୟାଳୟରେ ପଢୁଥାନ୍ତି । ଏଣେ ଘର ଚଳେଇବା, ତେଣେ ସେମାନଙ୍କୁ ପଇସା ପତ୍ର ଯୋଗାଇବା କଷ୍ଟକର ହେଲା । ମୋର ବନ୍ଧୁ ଶ୍ରୀ ବାଞ୍ଛାନିଧି ଶତପଥୀ (ଭୁଲା) ଏହି ସମୟରେ ବହୁତ ସାହାଯ୍ୟ କରିଛି । ଏପରିକି ସମୟେ ସମୟେ ନିଜଘରୁ ଚାଉଳପତ୍ର ଲୁଚାଇ ଚୋରାଇ ଆଣି ଆମ ଘର ଚଳାଇଛି । ପ୍ରଫୁଲ୍ଲକୁ ଯଥା



ଆଜୀବନ ସହକର୍ମୀ ୰ ବାଞ୍ଛାନିଧି ଶତପଥୀଙ୍କ ସହିତ ବାଞ୍ଛାନିଧି ପଟ୍ଟନାୟକ

ସମୟରେ ଖର୍ଚ୍ଚ ତୁଲାଇ ପାରେ ନାହିଁ । ସେ କଟକରେ ସେତେବେଳର ବାଚସ୍ପତି, ମୋର ଶାଳକ ଶ୍ରୀ ଲାଲମୋହନ ପଟ୍ଟନାୟକଙ୍କ ଗୋଟିଏ ବାହାର ଘରେ ବସାକରି ହୋଟେଲରେ ଖାଏ । ଦିନେ ଦିନେ ଜଳଖିଆପାଇଁ ତା ପାଖରେ ପଇସା ନଥାଏ । ବଡ଼ କଷ୍ଟରେ ଚଳେ । ଜମିବାଡ଼ି କିଛି କିଛି ବିକ୍ରୟ କରି ସମସ୍ତ ଖର୍ଚ୍ଚ ଯେନକେନ ପ୍ରକାରେ ଚଳାଇବାକୁ ପଡ଼େ ।

୧୯୫୪ ସାଲ । ପ୍ରଶାନ୍ତ ସେତେବେଳେ ଭଞ୍ଜନଗର ଉଚ୍ଚ ବିଦ୍ୟାଳୟରେ ମାଟ୍ରିକୁଲେସନ୍‌ରେ ପଢୁଥାଏ । କ୍ଲାସ୍‌ରେ ଏବଂ ସାମୟିକ ପରୀକ୍ଷାମାନଙ୍କରେ କ୍ଲାସର ସମସ୍ତ ପିଲାଙ୍କଠାରୁ ପ୍ରତ୍ୟେକ ବିଷୟରେ ସର୍ବୋଚ୍ଚ ମାର୍କ ରଖେ । ଥରେ କୌଣସି କ୍ଲାସ ପରୀକ୍ଷାରେ ଗଣିତ ପରୀକ୍ଷା ଦେଇ ଆସି ଘରେ କାନ୍ଦୁଛି । କାରଣ ପଚାରିବାରୁ କାନ୍ଦ କାନ୍ଦ ହୋଇ କହିଲା ଗଣିତରେ ଶହେ ମାର୍କରୁ ଗୋଟିଏ ମାର୍କ କମିଯାଇଛି । ତା'ର କାନ୍ଦକୁ ଆମର ହସ- ''ଶହେ ମାର୍କରୁ ଗୋଟିଏ ମାର୍କ କମିଯିବ- କେତେ ପିଲା ଫେଲ୍ ହେବେ, କେତେ ପିଲା କେତେ କମ୍ ମାର୍କ ରଖିବେ, ତୋର ଗୋଟିଏ ମାର୍କ କମିଯିବ ବୋଲି ତୁ କାନ୍ଦୁଛୁ ?'' ସେ ପଢ଼ାରେ ବହୁତ ପରିଶ୍ରମ କରେ, ସହପାଠୀମାନଙ୍କୁ କାହାକୁ କେଉଁ ବିଷୟ ଜଣା ନ ପଡ଼ିଲେ ବୁଝାଏ । ମାଟ୍ରିକ୍ ପରୀକ୍ଷାରେ ପ୍ରଦେଶର ପ୍ରଥମ ଦଶ ଜଣକ ମଧ୍ୟରେ ଚତୁର୍ଥ ସ୍ଥାନ ରଖି ଉତ୍ତୀର୍ଣ୍ଣ ହେଲା । ଭଞ୍ଜନଗର ହାଇସ୍କୁଲ ଆରମ୍ଭ ହେବାଠାରୁ ଏ ପର୍ଯ୍ୟନ୍ତ କେହି ଏପରି ଉଚ୍ଚସ୍ଥାନ (Rank) ରଖି ଉତ୍ତୀର୍ଣ୍ଣ ହୋଇ ନାହାନ୍ତି । ସ୍କୁଲର ଶିକ୍ଷକମାନେ ଗୌରବାନ୍ୱିତ ମନେକଲେ । କେତେ ଯେ ଅଭିନନ୍ଦନ ହେଲା କହିବାକୁ ନାହିଁ । ଦକ୍ଷିଣାଞ୍ଚଳ ବନ୍ୟ ବିଭାଗ, D.F.O ବୋଷ ସାହେବ ଖବର କାଗଜରୁ ପରୀକ୍ଷାଫଳ ଦେଖି ତାକୁ ନିଜ ଘରକୁ ଡ଼ାକି ନେଇ ଅଭିନନ୍ଦନ ଦେବା ସଙ୍ଗେ ସଙ୍ଗେ ତିରିଶ ଟଙ୍କା ପୁରସ୍କାର ଦେଇଥିଲେ ।

ଏହି ମାଟ୍ରିକୁଲେସନ୍ ପଢ଼ିବା ବେଳେ ଜିଲ୍ଲା ଶକ୍ଷାବିଭାଗୀୟ ପରିଦର୍ଶକ ଶ୍ରୀଗୋକୁଳ ଚନ୍ଦ୍ର ଶତପଥୀ ସ୍କୁଲ ପରିଦର୍ଶନରେ ଆସିଥିଲେ । ସେ ଇଂଲଣ୍ଡରୁ ଶିକ୍ଷା ବିଷୟରେ ଉପାଧି ପାଇଥିଲେ । ସେ ସଂସ୍କୃତରେ ଏମ୍.ଏ.ପାସ୍ କରିଥିଲେ । ତେଣୁ ସଂସ୍କୃତ ପ୍ରତି ତାଙ୍କର ଆଗ୍ରହ ବେଶି । ପ୍ରାୟ ପ୍ରତ୍ୟେକ କ୍ଲାସ୍‌ରେ ସଂସ୍କୃତ ପ୍ରଶ୍ନ ପଚାରି ଉପଯୁକ୍ତ ଉତ୍ତର ନ ପାଇ ବିରକ୍ତ ହୋଇଥିଲେ । କିନ୍ତୁ ମେଟ୍ରିକ୍ କ୍ଲାସରେ ସେ ଯେତେ ପ୍ରଶ୍ନ କଲେ ପ୍ରଶାନ୍ତ ସେ ସବୁର ଯଥାର୍ଥ ଉତ୍ତର ଦେଇ ତାଙ୍କର ପ୍ରୀତିଭାଜନ ହୋଇଥିଲା । ପଣ୍ଡିତଙ୍କୁ ଡାକି କହିଲେ ''ପଣ୍ଡିତେ ଏ ସ୍କୁଲଟା ଯାକରେ ଗୋଟିଏ ପିଲାକୁ ନମୁନା ସ୍ୱରୂପ ରଖିଛନ୍ତି କି ?''

ସନ୍ଧ୍ୟାରେ ଭଞ୍ଜପରିଷଦ ପକ୍ଷରୁ ଗୋଟିଏ ସଭାହୋଇଥିଲା । ଉକ୍ତ ଇନ୍ସପେକ୍ଟର ମହୋଦୟ ସଭାପତି ହୋଇଥିଲେ । ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କ ଭାଷଣ ଶେଷରେ

ଛାତ୍ରମାନଙ୍କ ମଧ୍ୟରୁ କେହି କିଛି କହିବାକୁ ଆହ୍ୱାନ କରାଗଲା । ପ୍ରଶାନ୍ତ ଯାଇ ବୈଦେହୀଶ ବିଳାସର "ବିଚାରଇ ମାନ ଯମକରେ କବି ମନେ, ବୁଲେରାମ ରାମ ରାମନେତ୍ରୀ ଘେନି ବନେ" ଛାନ୍ଦଟିଏ ଅର୍ଥକଲା । ଛାନ୍ଦଟିରେ ସମସ୍ତ ପ୍ରକାର ଉତ୍‌ପ୍ରେକ୍ଷା, ଅଳଙ୍କାର, ଅନୁପ୍ରାସ, ଯମକ ଆଦି ରହିଛି । ସେ ଟେବୁଲ୍ ଉପରେ ପୁସ୍ତକଟି ପକାଇ ଦେଇ ସେଥିରୁ ଗୋଟିଏ ପଦ ଗାଇ ଶ୍ରୋତାମାନଙ୍କୁ ଅନାଇ ଅର୍ଥ ବୁଝାଏ । ସଭାପତି ମହାଶୟ ପୁସ୍ତକକୁ ଏବଂ ତା ମୁହଁକୁ ଚାହିଁ ଶୁଣୁଥାନ୍ତି, କାଳେ ପୁସ୍ତକରେ ଥିବା ଟୀକା ଦେଖି କହୁଥିବ, କିନ୍ତୁ ସେ ଟୀକା ନ ଦେଖି ଶ୍ରୋତାମାନଙ୍କୁ ଅନାଇଁ କହୁଥାଏ । କେବେ ସେ ଏ ଗ୍ରନ୍ଥ ଆଲୋଚନା କରିଥିଲା କେଜାଣି ! ଆଉ କେତେ ମାସ ପରେ ସ୍କୁଲ ପରିଦର୍ଶନରେ ଆସି ପ୍ରଶାନ୍ତକୁ ଡକାଇ ଭଞ୍ଜ ସାହିତ୍ୟ ଚର୍ଚ୍ଚା କରିଥିଲେ ।

ମାଟ୍ରିକ୍ ପରୀକ୍ଷା ପରେ ପ୍ରଶାନ୍ତ କଟକ ରେଭେନ୍‌ସା କଲେଜରେ ପଢ଼ିଲା ।

ପ୍ରଫୁଲ୍ଲ B.A.ପାଶ୍ କରି ଧରାକୋଟ୍ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କଲା । ମୋ ବୋଉ ତା' ପାଖରେ ଯାଇ ରହିଲା ଓ ତା'ର ଖିଆପିଆର ଯତ୍ନ ନେଲା । ସେଠାରେ ଛ' ମାସ ଶିକ୍ଷକତା କରିବା ପରେ ସେ ରସଲକୋଣ୍ଡା କମ୍ୟୁନିଟୀ ପ୍ରୋଜେକ୍ଟରେ ଏସ୍.ଇ.ଓ. (ସାମାଜିକ ଶିକ୍ଷା ସଂଗଠକ) ଭାବେ ଯୋଗଦେଲା ଓ ସେଠାରୁ ତାଲିମ୍ ପାଇବା ନିମନ୍ତେ ଛ' ମାସ ପାଇଁ ଶାନ୍ତିନିକେତନ ଯାଇଥିଲା । ସେଠାରୁ ଫେରି ସେ ରସଲକୋଣ୍ଡା, ଛତ୍ରପୁର, ପାରଳାଖେମୁଣ୍ଡି ଓ ବୋରିଗୁମା ବ୍ଲକରେ ସାତ ବର୍ଷ କଟାଇବା ପରେ ସେ ଚାକିରି ଛାଡ଼ି କଟକର 'ସମାଜ' ସମ୍ବାଦପତ୍ରରେ ଉପ-ସମ୍ପାଦକ ଭାବେ ଯୋଗଦେଇ ସାମ୍ବାଦିକ ବୃତ୍ତି ବରଣ କରିନେଲା ।

ପ୍ରଶାନ୍ତ B.A. ପାଶ୍ କରି କଟକ ପ୍ୟାରୀମୋହନ ଏକାଡ଼େମିର ଶିକ୍ଷକ ଭାବେ ନିଯୁକ୍ତ ହେଲା ।

ତା ୨/୧୦/୫୨ରେ ରସଲକୋଣ୍ଡା କମ୍ୟୁନିଟି ପ୍ରଜେକ୍ଟ ଆରମ୍ଭ ହେଲା । ବେଲଗୁଣ୍ଠାଠାରେ ଏହି ପ୍ରଜେକ୍ଟର ଉଦ୍‌ଘାଟନ ମହାସମାରୋହରେ ଅନୁଷ୍ଠିତ ହେଲା । ସମାଜ ସଂପାଦକ ରାଧାନାଥ ରଥ ଉଦ୍‌ଘାଟନ କରିଥିଲେ । ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ । ଚିଫ୍ ସେକ୍ରେଟାରୀ, ବିଭିନ୍ନ ବିଭାଗର କମିଶନର୍ ଓ ଅନ୍ୟାନ୍ୟ ବଡ଼ ବଡ଼ ସରକାରୀ କର୍ମଚାରୀ ଏବଂ ଘୁମୁସରର ସମସ୍ତ ବିଶିଷ୍ଟଲୋକ ଯୋଗ ଦେଇଥିଲେ । ବଡ଼ ବଡ଼ ଅଫିସର ମାନେ ସମାଜସେବା ଦେଖାଇବା ପାଇଁ ବେଲଗୁଣ୍ଠାର ରାସ୍ତା ସଫେଇ କରିବାକୁ ଗଲେ । ବିଷ୍ଠା ମଧ ବାହାର କରିବା ପାଇଁ କୁଣ୍ଠା ବୋଧ କଲେ ନାହିଁ । ମୁଁ ଯାଇ ନ ଥାଏ । ମତେ କେହି କେହି କହିଲେ "ମାଷ୍ଟ୍ରେ (ମୁଁ ସେଠାରେ ଅସହଯୋଗ ଆନ୍ଦୋଳନ ବେଳେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠାକରି ଶିକ୍ଷକତା କରିଥିବା ଯୋଗୁଁ ଏହି ଗ୍ରାମରେ ମାଷ୍ଟ୍ରେ ନାମରେ ସମ୍ବୋଧିତ) ଆପଣ କାହିଁକି ଯାଇ

ନାହାନ୍ତି'' ମୁଁ କହିଲି ''ଇମିତି କେତେଥର ତମ ଗାଁ ରାସ୍ତା ପରିଷ୍କାର କରିଆସିଛି, ଆଜି ସଫା ହୋଇଥିବ, କାଲିକି ଦେଖିଲା ବେଳକୁ ତମ ମାନଙ୍କ ଦ୍ୱାରା ପୁଣି ଭରି ଯାଇଥିବ । ଆଜି ଧୋବ ଧାଉଳିଆ ହ୍ୟାଟ୍, ପ୍ୟାଣ୍ଟବାଲା କରନ୍ତୁ । ସ୍ୱେଚ୍ଛାସେବକ ପ୍ରହସନ ଦେଖାନ୍ତୁ । ଆଉ କାଲିକି ତାଙ୍କୁ ଏ ସୁଯୋଗ ମିଳିବ କି ?''

ଆଗନ୍ତୁକମାନଙ୍କ ପାଇଁ ସେଠା ସରପଞ୍ଚ ଶ୍ରୀ ଆଳୁପତି ଗଙ୍ଗାଧର ପାତ୍ର ଖାଦ୍ୟପେୟର ବ୍ୟବସ୍ଥା କରି ସେଥିରେ ଯୋଗ ଦେବାପାଇଁ ପ୍ରତ୍ୟେକ ଆଗନ୍ତୁକଙ୍କ ନିକଟକୁ ଯାଇ ନିମନ୍ତ୍ରଣ କରିଥିଲେ । ଏଣେ କଂଗ୍ରେସ୍ ନେତା ବୋଲାଉଥିବା ଶ୍ରୀ ଆଳୁପତି ବାଲେୟାପାତ୍ର ସେଥିରେ ପ୍ରତିବାଦ କଲେ । ଏ ଦୁହିଙ୍କ ମଧ୍ୟରେ ନାନା କାରଣରୁ ଅହି ନକୁଳ ସମ୍ପର୍କ । ଏକଥା ଜାଣିପାରି ରାଧାନାଥ ବାବୁ ଓ ଲିଙ୍ଗରାଜ ବାବୁ ଏ ଗ୍ରାମରେ ଜଳସ୍ପର୍ଶ କରିବା ଉଚିତ ନୁହେଁ କହି ନ ଖାଇ ନ ପିଇ ଚାଲିଯିବାକୁ ସ୍ଥିର କଲେ । ମୁଁ ତ ଏ ସବୁ କାର୍ଯ୍ୟରେ ଆବୁଡ଼ାପଡ଼ା । ଏଥିଦ୍ୱାରା କେବଳ ବେଲଗୁଣ୍ଠାର ନୁହେଁ ସମଗ୍ର ଘୁମୁସରର ନିନ୍ଦା ହେବ ଭାବି ଏ ଦୁହିଁଙ୍କୁ ମିଳାଇବାକୁ ଯତ୍ନ କଲି । ବାଲେୟାପାତ୍ରଙ୍କ ଗୋଡ଼ତଳେ ପଡ଼ି ବୁଝାଇଲେ ମଧ ସେ ବୁଝିଲେ ନାହିଁ । ଶେଷକୁ ସେ ଦୁହିଙ୍କର ଗୋଟିଏ ଗୋଟିଏ ହାତ ମୋ କାଖରେ ଜାକିଧରି ମନ୍ତ୍ରୀ, ଚିଫ୍ ସେକ୍ରେଟାରୀ ପ୍ରଭୃତିଙ୍କ ପାଖକୁ ଟାଣିନେଇ ସରପଞ୍ଚ କରିଥିବା ଭୋଜିରେ ଆପଣମାନେ ଯୋଗ ଦେବାପାଇଁ ଏ ଦୁହେଁ ଅନୁରୋଧ କରୁଛନ୍ତି ବୋଲି କହି ବୁଲିଲି । ସମସ୍ତେ ସେ ଭୋଜିରେ ଯୋଗଦେଲେ । ମୁଁ ସମସ୍ତଙ୍କୁ ପଠାଇଦେଇ ପଛରେ ରହିଗଲି । ସରପଞ୍ଚ ମହାଶୟ ସମସ୍ତଙ୍କୁ ବ୍ୟକ୍ତିଗତ ଭାବେ ନିମନ୍ତ୍ରଣ କରିଛନ୍ତି ସିନା ମତେ ପଦେ କହିନାହାନ୍ତି । କିନ୍ତୁ ରାଧାନାଥ ବାବୁ ଡାକୁଛନ୍ତି ବୋଲି ମତେ ଟାଣିନେଲେ । ସେ ମୋପାଇଁ ଗୋଟିଏ ଖଲି ତାଙ୍କ ନିକଟରେ ରଖି ମତେ ଡ଼ାକି ବସାଇଲେ । ସମସ୍ତେ ମହା ଆନନ୍ଦରେ ଭୋଜନ କରି ଫେରିଲେ । ସନ୍ଧ୍ୟା ୫ଟାରେ ଏକ ସାଧାରଣ ସଭା ହେଲା । ରାଧାନାଥ ବାବୁ ସଭାପତିତ୍ୱ କରି ସମସ୍ତଙ୍କୁ ନିଜ ନିଜର ବାଦ ବିବାଦ ଭୁଲି ଏ ନୂତନ ଯୋଜନାରେ ମନପ୍ରାଣ ଦେଇ ଏକତ୍ର କାମ କରିବାପାଇଁ ଉଦ୍‌ବୋଧନ ଦେଇଥିଲେ । ଗାଁର ଜଣେ ବୟୋଜ୍ୟେଷ୍ଠ ଉତ୍ସାହୀ ବ୍ୟକ୍ତି ସୁରୁପାତ୍ରଙ୍କୁ କହିଲି ଏହି ଅବସରରେ ଏ ଦୁହିଙ୍କୁ ରାଧାନାଥ ବାବୁଙ୍କ ସମ୍ମୁଖରେ ନେଇ ମିଳାମିଶା କରାଇ ଦିଅନ୍ତୁ । ସେ ସେପରି କଲେ । ରାଧାନାଥ ବାବୁ ଉଭୟଙ୍କୁ କୋଳାଗ୍ରତ କରି ସମସ୍ତ ମନୋମାଳିନ୍ୟ ଭୁଲିଯାଇ କାମ କରିବାକୁ କହିଲେ । ସଭା ଶେଷରେ କେହି ଜଣେ ମତେ ପଚାରିଲେ ''ମାଷ୍ଟ୍ରେ, ଏ ମିଳନ ଏଇ ମୁହୂର୍ତ୍ତକ ପାଇଁ ନା ସବୁ ବେଳପାଇଁ ।'' ମୁଁ କହିଲି ''ହଉ, ଆଜିକ ସକାଶେ ହେଉ ।'' ସତକୁ ସତ ଯେଉଁ ମନୋମାଳିନ୍ୟକୁ ସେଇ ମନୋମାଳିନ୍ୟ ।

ରସଲକୋଣ୍ଡାରେ ପ୍ରୋଜେକ୍ଟ ଅଫିସ ରହିଲା । ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି ଘୁମୁସରର ଆର.ଡ଼ି.ଓ ଥିଲେ । ତାଙ୍କୁ ପ୍ରୋଜେକ୍ଟ ଟ୍ରେନିଂ ପାଇଁ ପଠାଗଲା । ଟ୍ରେନିଂରୁ ଆସି ସେ ପ୍ରୋଜେକ୍ଟ ଅଫିସର ହେଲେ । ପ୍ରୋଜେକ୍ଟ ଅଫିସ ତିଆରି ହେଲା । ଦୁଇଜଣ ଓ.ଏ.ଏସ. ଅଫିସର, ଆସିଷ୍ଟାଣ୍ଟ ପ୍ରୋଜେକ୍ଟ ଅଫିସର ଭାବେ ନିଯୁକ୍ତ ହେଲେ । ଜଣକର ଅଫିସ ବେଲଗୁଣ୍ଠାରେ ରହିଲା, ଆଉ ଜଣଙ୍କର ଭଞ୍ଜନଗରରେ । ଏଇଥିପାଇଁ ଇଞ୍ଜିନିଅର୍, ଓଭରସିଅର୍, ସ୍ୱାସ୍ଥ୍ୟ କର୍ମଚାରୀ, ସାମାଜିକ କର୍ମଚାରୀ, ଶିଳ୍ପ ସୁପରିଣ୍ଟେଣ୍ଡେଣ୍ଟ ପ୍ରଭୃତି ନାନା ପ୍ରକାର ନୂତନ କର୍ମଚାରୀ ନିଯୁକ୍ତ ହେଲେ । ପ୍ରୋଜେକ୍ଟ ଅଫିସର, ଆସିଷ୍ଟାଣ୍ଟ ପ୍ରୋଜେକ୍ଟ ଅଫିସର୍, ଇଞ୍ଜିନିଅର ପ୍ରଭୃତିଙ୍କ ପାଇଁ ଗୋଟିଏ ଗୋଟିଏ ଗାଡ଼ି ଯୋଗାଇ ଦିଆଗଲା । ବିଭିନ୍ନ ଗ୍ରାମରେ ଗ୍ରାମସେବକ, କୃଷି ସବ୍ ଓଭରସିଅର୍ ଓ କାମଦାରମାନେ ରହିଲେ । ଏପରି ଭାବେ ଖୁବ୍ ଘମାଗୋଟରେ କାମ ଆରମ୍ଭ ହେଲା ।

ପ୍ରୋଜେକ୍ଟ ଅଫିସର୍ ବିଭିନ୍ନ ଗ୍ରାମକୁ ଗସ୍ତରେ ଗଲାବେଳେ ମତେ ସାଙ୍ଗରେ ନେଉଥାନ୍ତି । ସରକାରୀ କର୍ମଚାରୀଙ୍କ ଅପେକ୍ଷା ସାଧାରଣ କର୍ମୀମାନଙ୍କ କଥା ଲୋକଙ୍କ ମଧରେ ବିଶେଷ ପ୍ରଭାବ ପକାଇବ ବୋଲି ତାଙ୍କର ଧାରଣା । ଏପରି ଭାବରେ ମତେ ହାତରୁ ଖାଇ ଘୋଡ଼ା ପଛରେ ଦୌଡ଼ିବା କାମ ଜୁଟିଥିଲା ।

ପ୍ରୋଜେକ୍ଟରେ ଯେଉଁସବୁ ଶିଳ୍ପକେନ୍ଦ୍ର ଖୋଲାଗଲା ସେଥିରେ କିଛି ଉତ୍ପାଦନ ହେଉ ବା ନ ହେଉ ଯୋଜନା ଅନୁସାରେ ଜଣେ ସେଲ୍ସ ଅର୍ଗନାଇଜର (ବିକ୍ରୟ ପରିଚାଳକ) ନିଯୁକ୍ତ ହେବା କଥା । ସେଥିପାଇଁ ବିଜ୍ଞାପନ ପ୍ରଚାର ହୋଇଥିଲା । ମୋର ଭାଇ ଗୋଦାବରୀ ପ୍ରସାଦ ସେତେବେଳେ ରସଲକୋଣ୍ଡାର ସ୍ୱାସ୍ଥ୍ୟ ପରିଦର୍ଶକ (Health Inspector) । ସେ ବିଜ୍ଞାପନ ଦେଖି ମତେ ସେଥିପାଇଁ ଆବେଦନ କରିବା ପାଇଁ ପ୍ରବର୍ତ୍ତାଇଥିଲା । ମୁଁ ଦରଖାସ୍ତ ଦେଲି । ମୁଁ ଜଣେ ପକ୍କା କଂଗ୍ରେସ କର୍ମୀ ବୋଲି ଜାଣି ମୁଁ ସେ କାମ କରିବି ନାହିଁ ବୋଲି ପ୍ରୋଜେକ୍ଟ ଅଫିସରଙ୍କର ସନ୍ଦେହ ଜାତ ହୋଇଥିଲା । ତଥାପି ସାକ୍ଷାତ୍କାର ପରେ ମତେ ମନୋନୀତ କରିଥିଲେ । ୧/୪/୫୪ରେ ମୁଁ ଉକ୍ତ କାମରେ ମାସିକ ଟ୨୫୦ଙ୍କା ଦରମାରେ ନିଯୁକ୍ତ ହେଲି । ଆର୍ଥିକ ଦୁରବସ୍ଥାରୁ କଥଞ୍ଚିତ୍ ରକ୍ଷା ପାଇବା ଆଶା ଦେଖାଗଲା ।

ଶିଳ୍ପ ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଧୀନରେ ମୁଁ କାମ କରିବା କଥା । ବେଲଗୁଣ୍ଠାରେ ଶିଳ୍ପ ଅଫିସ ଥାଏ । ସୁପରିଣ୍ଟେଣ୍ଡେଣ୍ଟ ଛୁଟିରେ ଗଲେ ବା ଅନ୍ୟ କାମରେ ଗଲେ ମୁଁ ତାଙ୍କରି ଦାୟିତ୍ୱ ନିଏ । ଉକ୍ତ ଶିଳ୍ପ ଶିକ୍ଷା କେନ୍ଦ୍ରରେ ବଢ଼େଇ, କମାର ପ୍ରଭୃତି ପିଲାମାନେ ତାଲିମ ପାନ୍ତି । ସର୍ବସାଧାରଣଙ୍କୁ ଶିଳ୍ପଋଣ ଦିଆଯାଏ । ଉକ୍ତ ଋଣ ଟଙ୍କା ବଣ୍ଟନ କରିବା ଓ ଋଣ ଦରଖାସ୍ତ ସୁପାରିଶ କରିବା ଦାୟିତ୍ୱ ସୁପରିଣ୍ଟେଣ୍ଡେଣ୍ଟଙ୍କର । ପ୍ରୋଜେକ୍ଟ ଅଫିସର ସେ

କାମ ମତେ ଦେଲେ । ବଢ଼େଇ, କମାର, ସୁନାରିମାନଙ୍କୁ ଏବଂ ସିଲେଇ ମେଶିନ୍ ପାଇଁ ଓ ଅନ୍ୟାନ୍ୟ କୁଟୀର ଶିଳ୍ପପାଇଁ ଋଣ ସାହାଯ୍ୟ ଦିଆଯାଏ । ଟ୨୦୦ଙ୍କାରୁ ଆରମ୍ଭ କରି ଦୁଇ ହଜାର ଟଙ୍କା ପର୍ଯ୍ୟନ୍ତ ଋଣ ଦିଆଯାଏ । ପ୍ରାୟ ଦୁଇଲକ୍ଷ ଟଙ୍କା ଏହି ବାବଦରେ ଋଣ ଦିଆଗଲା । ପ୍ରୋଜେକ୍ଟ ଆରମ୍ଭ ବେଳେ ଗୋଟିଏ ଗୁଜବ ପ୍ରଚାର ହେଲା ଯେ ସରକାର ଏ ଅଞ୍ଚଳରେ ଖାଲି ଟଙ୍କା ଅଜାଡ଼ିବେ । ଋଣ ଆକାରରେ ଦିଆଯାଉଥିଲେ ମଧ ସେସବୁ ଆଉ ପରିଶୋଧ କରିବାକୁ ପଡ଼ିବ ନାହିଁ । ସେଥିଯୋଗୁଁ ଲୋକେ ପଡ଼ିଉଠି ଲାଞ୍ଚମିଛ କରି ନାନାଦି କୌଶଳରେ କିମିତି ଟଙ୍କା ପାଇଯିବେ ଚେଷ୍ଟା କରୁଥାନ୍ତି । କିନ୍ତୁ ସୁପାରିଶ କରିବା ଦାୟିତ୍ୱ ମୋ ହାତରେ ଥିବା ଯୋଗୁଁ କେହି ମତେ ଲାଞ୍ଚ ଯାଚିପାରନ୍ତି ନାହିଁ । କାହାରବା ମଞ୍ଜୁର ହେବାର ବିଳମ୍ବ ହେଲେ କିମ୍ବା କୌଣସି କାରଣରୁ କଟିଗଲେ ମତେ ଗାଳି ଗୁଲଜ ମଧ ମିଳେ । କେହି କେହି ସାହସ କରି ମତେ କୌଣସି ନା କୌଣସି ପ୍ରକାରେ ଉତ୍କୋଚ ଦେବାକୁ ପ୍ରୟାସ କରିଥିଲେ । ଏହିଭଳି ତିନୋଟି ଘଟଣା ଘଟିଥିଲା । କୌତୁହଳ ମେଣ୍ଟାଇବା ପାଇଁ ସେ ତିନୋଟି ଘଟଣା ଏଠାରେ ଉଲ୍ଲେଖ କରାଗଲା ।

ଖରାଦିନ, ସକାଳୁଆ ଅଫିସ, ମୁଁ ପ୍ରାୟ ୧୧ଟା ବେଳେ ଅଫିସରୁ ଫେରି ସ୍ନାନ, ଉପାସନା ସାରି ଖାଇବାକୁ ଗଲାବେଳକୁ ମୋର ଜଣେ ପୂର୍ବ ପରିଚିତ ବ୍ୟକ୍ତି ବେଲଗୁଣ୍ଠାର ବୈଦ୍ୟ ଉପସ୍ଥିତ । ମତେ ଦେଖିବା ମାତ୍ରେ ପକେଟରେ ହାତ ପୂରାଇ କେତୋଟି ଟଙ୍କା ବାହାର କରିବା ଦେଖି କହିଲି "ପଡିଏ ! ଓହୋ ମୋର କେଡ଼େ ଭାଗ୍ୟ, ବର୍ଷ ବର୍ଷ ଧରି ମୁନିଋଷିମାନେ ବଣ କନ୍ଦରରେ କଠିନ ତପସ୍ୟା କରି ଏପରି ସଦ୍ୟ ଫଳ କେବେ ପାଇ ନଥିବେ । ମୁଁ ଏ ଖରାରେ ଅଫିସରୁ ଧାଇଁଆସି କାକ ସ୍ନାନ କରି ଯେଉଁ କେତୋଟି ମୁହୂର୍ତ୍ତ ପ୍ରାର୍ଥନା କଲି ସେଥିର ଫଳ ଆପଣଙ୍କ ପକେଟରୁ ବାହାରିଛି ବୋଧହୁଏ ।" ସେ ଲଜ୍ଜିତ ହେଲେ । ତାଙ୍କ ଟଙ୍କା ପୁଣି ପକେଟକୁ ଫେରାଇ ନେଲେ । ମୁଁ କହିଲି ଯେ ତାଙ୍କର ଦରଖାସ୍ତ ସୁପାରିଶ ହୋଇ ପ୍ରୋଜେକ୍ଟ ଅଫିସରଙ୍କଠାରେ ମଞ୍ଜୁର ପାଇଁ ଦିଆଯାଇଛି । ସେ ମଞ୍ଜୁର କଲେ ଆପଣ ପାଇବେ ।

ନିମପଦର ଗଙ୍ଗାଧର ମହାରଣାଙ୍କୁ ବଢ଼େଇ କାମପାଇଁ ଟ ୨୦୦/-ଋଣ ଦିଆଯାଇଥିଲା । ତାଙ୍କର ପୁଅ ଘଡ଼ି ମରାମତି ପାଇଁ ଟ୧୦୦୦/- ଋଣ ଦରଖାସ୍ତ କରିଥିଲେ । ଯଥା ସମୟରେ ସେ ଋଣ ପାଇଲେ । ମୋ ଅନୁଗ୍ରହରୁ ଏପରି ହୋଇପାରିଲା ବୋଲି ସେ ବିଚାରି ମୁଁ ଘରୁ ବାହାରି ବଜାର ଆଡ଼େ ଗଲାବେଳେ ଖଲାସୀ ସାହି ତାଙ୍କ ସମ୍ବନ୍ଧିଙ୍କ ପିଣ୍ଡାରୁ ମତେ ଦେଖି ଉଠିଆସି ମୋ ହାତକୁ ପାଞ୍ଚଟଙ୍କା ବଢ଼ାଇଲେ । ମୁଁ ପଚାରିଲି ଏକି ଟଙ୍କା ? ସେ କହିଲେ ମୁଁ ଆପଣଙ୍କଠାରୁ ସେଦିନ ଯେଉଁ ଧାର ନେଇଥିଲି । ମୁଁ ଅନେକ ସମୟ ଯାଏଁ ମନେ ପକାଇଲି । କେବେ ଧାର ନେବାର ମନେ ହେଲା ନାହିଁ । କାହିଁ କେବେ ତ ଧାର ନେଇ ନାହାନ୍ତି କହିଲି । ସେ ସାଉଁଳେଇ

ପାଉଁଜେଇ ହୋଇ କହିଲେ "ନାଇଁ ଯେ ଏ ପିଲାମାନଙ୍କ ପାଇଁ-" ଏତକ କହିବାମାତ୍ରେ ମୁଁ କହିଲି "ମହାରଣା ! ମତେ ତମେ ଆହୁରି ଚିହ୍ନି ନାହିଁ । ପ୍ରାୟ ୩୦/୩୨ ବର୍ଷ ପୂର୍ବେ ମୁଁ ଯେତେବେଳେ ତମ ଗାଁକୁ ଗାନ୍ଧୀକଥା ପ୍ରଚାର କରିବାକୁ ଯାଉଥିଲି ଏବଂ ତା'ପରେ ନିର୍ବାଚନ ପ୍ରଚାର ବେଳେ ଯେବେଯାଇଛି ତମେ ପରା ଗାନ୍ଧୀ ଭକ୍ତି ଦେଖାଇ ପଟି ପକାଇ ଇଣ୍ଡନ ଆଣି ସଭା ଆୟୋଜନ କରୁଥିଲ ? ମୁଁ ସେ ଗାନ୍ଧୀ ଲୋକ ବୋଲି ଜାଣିଛ ତ ? ଇମିତି କଥା କିମିତି କରୁଛ ?" ସେ ଲଜ୍ଜିତ ହୋଇ କ୍ଷମା ଭିକ୍ଷା କରିଥିଲେ ।

ଜଣେ ସ୍ୱାଧୀନତା ସଂଗ୍ରାମୀ । ମୋରି ନେତୃତ୍ୱରେ ସତ୍ୟାଗ୍ରହ ସମରରେ ଯୋଗଦେଇ ଜେଲ ଯାଇଥିଲେ । ଜେଲରୁ ଫେରି ବୈଦ୍ୟ ବୃତ୍ତି କରନ୍ତି । ତାଙ୍କର ମଧ ରଣ ଦରଖାସ୍ତ ଥିଲା । ମଞ୍ଜୁର ହେବାରେ ବିଳମ୍ବ ହେବା ଦେଖି ଦିନେ ମୁଁ ଘରେ ନ ଥିବା ବେଳେ ଗୋଟିଏ ପିତଳ ଡ଼ାଲରେ ଘିଅ ଡ଼ାଙ୍କେ ମୁହଁରେ ବାନ୍ଧି ଆଣି ଘରେ ଦେଇ ଯାଇଛନ୍ତି । ମୁଁ ଘରେ ପହଞ୍ଚିବା ପରେ ଝିଅ କହିଲା, "ନନା ଜଣେ କେହି ଆସି ଘିଅ ଡ଼ାଙ୍କେ ଦେଇ ଯାଇଚନ୍ତି ।" ମୁଁ କହିଲି "କାହିଁକି ରଖିଲ ? ସେ କିଏ, ତାଙ୍କ ନାଁ କ'ଣ ବୁଝିଲକି ?" "ସେ ତ ଦେଇ ସଙ୍ଗେ ସଙ୍ଗେ ଚାଲିଗଲେ" ଝିଅ କହିଲା । ସେ ଡ଼ାଲ ଆଣି ଖୋଲିଲା ବେଳକୁ ଘିଅ । ମୁଁ କହିଲି ଯିମିତି ବନ୍ଧା ହୋଇଥିଲା ସିମିତି ବାନ୍ଧିଦିଅ । ଡ଼ାଲ ମାଗିବାକୁ ଆସିଲେ ତାଙ୍କ ନାଁ ଗାଁ ପଚାରିବ । ସେ କେତେଦିନ ପରେ ଆସି ଡ଼ାଲ ଓ ଘିଅ ଫେରାଇ ନେଲେ । ତାଙ୍କ ଠିକଣା ମିଳିଗଲା । ଦିନେ ବଜାରରେ ଦେଖା ହେଲା । କହିଲି "ତୁମେ ସ୍ୱାଧୀନତା ସଂଗ୍ରାମୀ ପରା ? ଇମିତି କ'ଣ କଲ ?" ସେ କହିଲେ "ନାଇଁ ଯେ ଘରେ ହୋଇଥିଲା ତ ଟିକିଏ ଆଣି ଦେଇଥିଲି ।" "ମୁଁ କହିଲି, "ମୁଁ ତ ଏଠାରେ ଏତେବର୍ଷ ହେଲା ଅଛି, କେବେ ତ ଟୋପାଏ ଆଣିଦେଇ ନାହିଁ । ଏବେ ଏ ଅନୁଗ୍ରହ କାହିଁକି ? ଏକାବେଳକେ ଡ଼ାଙ୍କେ !" ବାପୁଡ଼ା ଲଜ୍ଜିତ ହେଲେ । ଯଥା ସମୟରେ ତାଙ୍କ ରଣ ମଞ୍ଜୁର ହେଲା ।

ମତେ କେତେ କର୍ମଚାରୀ ଓ ସାଧାରଣ ବନ୍ଧୁ ଅନେକ ସମୟରେ ପ୍ରବର୍ତ୍ତାଇଥାନ୍ତି ଏତେ ଟଙ୍କା ବଣ୍ଟାଯାଉଛି, ଶହକେ ଅନ୍ତତଃ ଟଙ୍କାଏ ଲେଖାରେ ଆଦାୟ କଲେ କେତେ ଟଙ୍କା ନ ହୁଅନ୍ତା ? ମୁଁ ସେମାନଙ୍କୁ କହେ "ହଇହେ, ମୁଁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ମୋର ବିଶାଳ ପୈତୃକ ସମ୍ପତ୍ତି ନିର୍ଲୋଭରେ ବିକିଭାଙ୍ଗି କୁଟୁମ୍ବ ଚଳେଇ ଶେଷରେ ଖାବଡ଼ା ରାମଦାସ ହୋଇ ବୁଲୁଥିଲି । ଭାଗ୍ୟବଶରୁ ମାସିକ ଟ୨୫୦/-ଙ୍କା ଲେଖାଏଁ ପାଉଛି । ଏତକ କ'ଣ ଯଥେଷ୍ଟ ନୁହେଁ ଯେ ଲୋକଙ୍କୁ ସାହାଯ୍ୟ ଦିଆଯାଉଥିବା ଟଙ୍କାରୁ ଲାଞ୍ଚ ନେବି ?"

ଏହି ଲାଞ୍ଚ କଥା ପଡ଼ିଲେ ଆମ ଗଞ୍ଜାମର ବିଶିଷ୍ଟ ସରକାରୀ କର୍ମଚାରୀମାନଙ୍କ

କଥା ମନେପଡ଼େ । ସେତେବେଳେ ଗଞ୍ଜାମ ଜିଲ୍ଲା ମେଡ୍ରାସ୍ ପ୍ରେସିଡେନିସ୍‌ରେ ଥାଏ । ତେଲେଙ୍ଗାମାନେ ପ୍ରାୟ ସବୁ ଉଚ୍ଚପଦ ଲାଭ କରିଥାନ୍ତି । ଯେଉଁ କେତେଜଣ ମୁଷ୍ଟିମେୟ ଓଡ଼ିଆ ଉଚ୍ଚପଦାଧିକାରୀ ଥିଲେ ସେମାନେ ସମସ୍ତେ ଏତେ ସାଧୁସଚ୍ଚରିତ୍ର ସ୍ୱଭାବର ଲୋକ ଥିଲେ ଯେ ଏ ଯୁଗରେ ସେକଥା କହିଲେ କେହି ବିଶ୍ୱାସ କରିବେ ନାହିଁ । ଏବେ ତ ତାଳରୁ ତଳିପା ଯାଏଁ ସମସ୍ତେ ପଇସା ନ ପାଇଲେ, ଚାହା ଜଳଖିଆ ନ ପାଇଲେ କିଛି କରନ୍ତି ନାହିଁ । ସେ ଅଫିସର୍‌ମାନେ କାହାଠାରୁ ପାଣି ଗ୍ଲାସେ ମଧ ଗ୍ରହଣ କରୁ ନଥିବା ଦେଖାଯାଇଛି । ସେମାନେ ଗଞ୍ଜାମର ଗୋଟିଏ ଗୋଟିଏ ବିଭୂତି, ପ୍ରାତଃ ସ୍ମରଣୀୟ, ଆଦର୍ଶ ସରକାରୀ କର୍ମଚାରୀ । ଗଞ୍ଜାମର ସର୍ବପ୍ରଥମ ଗ୍ରାଜୁଏଟମାନଙ୍କ ମଧ୍ୟରୁ ସବ୍‌ରେଜିଷ୍ଟ୍ରାର ୰ ଶ୍ରୀବତ୍ସ ପଣ୍ଡା, ଡେପୁଟି କଲେକ୍ଟର ୰ ଅଭିମନ୍ୟୁ ପଟ୍ଟନାୟକ, ସବ୍ କଲେକ୍ଟର ୰ ଦୀନବନ୍ଧୁ ପାଳ, ମାଜିଷ୍ଟ୍ରେଟ୍ ୰ ଦୀନବନ୍ଧୁ ପଣ୍ଡା, ଓ ତତ୍ ପୁତ୍ର ସବ୍ ରେଜିଷ୍ଟ୍ରାର୍ ଶ୍ରୀ ନରସିଂହ ପଣ୍ଡା, ୰ ସିଂହାଦ୍ରି ଗନ୍ତାୟତ, ରମେଶ ଚରଣ ରଥ, ଲାଲବିହାରୀ ପଟ୍ଟନାୟକ ଓ ସବ୍‌ରେଜିଷ୍ଟ୍ରାର୍ ନରସିଂହ ଦାସ ।

## ଗୋଟିଏ ଗରିବ ପିଲାକଥା

ଭଞ୍ଜନଗରରେ ଥିବାବେଳେ ଘର ପାଇଁ ପାଣି ଆଣିବାରେ ଅସୁବିଧା ହୁଏ । ଆମ ଗାଁ ସଡ଼କ ନିକଟରେ ବାସୁଦେବପୁରର ରଘୁନାଥ ଦାସ ଏକ ଦୋକାନ କରିଥାନ୍ତି । ନୁଆଁପଡ଼ାର ଆଦିକନ୍ଦ ନାମକ ଏକ ଗରୀବ ପିଲାକୁ ସେ ମାସିକ ମାତ୍ର ତିନିଟଙ୍କା ଦେଇ ତାଙ୍କ ପାନ ଦୋକାନରେ ଚାକର ରଖିଥାନ୍ତି । (ଆଦିକନ୍ଦର ବାପା ଗୋସେଇଁ ବାପା ଆମରି ଘରେ ରହି ଖାଇପିଇ କାମପତ୍ର କରି ବଞ୍ଚୁଥିବା ମୁଁ ପିଲା ଦିନେ ଦେଖିଛି) । ତାକୁ ସେ ଦୋକାନରୁ ଆଣି ଘରେ ରଖିଲି, ସକାଳେ ସଂଧ୍ୟାରେ କେବଳ ପାଣି କେତେ ମାଠିଆ ଆଣିବା ଛଡ଼ା ଅନ୍ୟ କାମ କିଛି ନଥାଏ । ଦିନ ସାରା ବସିରହେ । ସେ କ'ଣ ପଢ଼ାପଢ଼ି କରିଛି ବୁଝି ତାକୁ ମୌଳିକ ବିଦ୍ୟାଳୟରେ ତୃତୀୟ ଶ୍ରେଣୀରେ ପ୍ରବେଶ କରାଇଲି । ସେହି ବିଦ୍ୟାଳୟରେ ମୋର ପୁଅ ପ୍ରବୋଧ ଏବଂ ଝିଅ ମୃଣାଳିନୀ ପଢୁଥାନ୍ତି । ସେମାନଙ୍କ ସାଙ୍ଗରେ ଯାଇ ସେ ପଢ଼େ । ସେ ସପ୍ତମ ଶ୍ରେଣୀରେ ଉତୀର୍ଣ୍ଣ ହେବାପରେ ଆମେ ଭଞ୍ଜନଗର ଛାଡ଼ି କଟକ ଆସିଲୁ । ତାକୁ କଟକ ଆଣିବା ଅବସ୍ଥାରେ ଆମେ ନଥିଲୁ । ତା'ର ଭବିଷ୍ୟତ ଚିନ୍ତା କରି ତାକୁ ନେଇ କେନ୍ଦୁପଦର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀରେ ଯାଇନ୍ କରାଇ, ତା'ର ଖାଦ୍ୟପେୟ ପାଇଁ ଟ୍ୟୁସନ ଓ ଛାତ୍ରାବାସ ଯୋଗାଡ଼ କରାଇଥିଲି । ସେ କ୍ରମଶଃ କ୍ଲାସରୁ କ୍ଲାସ ଉତୀର୍ଣ୍ଣ ହୋଇ ଶେଷରେ ମେଟ୍ରିକ୍ ପାଶ୍ କରି ପୋଲିସ୍ ବିଭାଗରେ ଯୋଗଦେଲା । ଏବେ ପୋଲିସ୍ ସବ୍‌ଇନ୍ସପେକ୍ଟର କାମ କରେ ।

# ବୋଉର ପରଲୋକ ପ୍ରାପ୍ତି

ଭଞ୍ଜନଗରରେ ବୋଉର ପରଲୋକ ପ୍ରାପ୍ତି ହେଲା । ମୃତ୍ୟୁ ପୂର୍ବରୁ ପ୍ରାୟ ୧୫ ଦିନ କାଳ ସେ ଆହାର ଛାଡ଼ି ଦେଲା । କୌଣସି ପ୍ରକାରେ କଷ୍ଟଦାୟକ ରୋଗରେ ପୀଡ଼ିତ ହୋଇନାହିଁ । କେବଳ ନିସ୍ତେଷ୍ଟ ହୋଇ ପଡ଼ିଥାଏ । ତା'ର ସବୁବେଳେ ଚିନ୍ତା ରାତି ବିକାଳି ସେ ଚାଲିଗଲେ ମୁଁ ବଡ଼ ହଇରାଣ ହେବି । ମତେ କୁଆଡ଼େ ଯିବାକୁ ଛାଡ଼େ ନାହିଁ, କାଳେ ମୁଁ ନଥିବା ବେଳେ ସେ ଚାଲିଯିବ ଏହି ଆଶଙ୍କା । ଶେଷ ଦୁଇ ଚାରି ଦିନ ମୂକ ହୋଇଗଲା କିନ୍ତୁ ଠାରିକରି ଯାହା କିଛି ଜଣାଏ । ଶେଷ ପର୍ଯ୍ୟନ୍ତ ସେ ଜ୍ଞାନ ହରାଇ ନାହିଁ । ଦିନେ ରାତିରେ ସେ ପ୍ରାଣତ୍ୟାଗ କଲା । ମୁଁ ସେତେବେଳେ Sales organisaer କାମରେ ଥାଏ । ବଡ଼ ଜାକ ଜମକରେ ଅନ୍ତ୍ୟେଷ୍ଟିକ୍ରିୟା ସମାହିତ ହେଲା । ବିଦାୟୀ ପ୍ରୋଜେକ୍ଟ ଅଫିସର ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି, ନୂତନ ଅଫିସର ଶ୍ରୀ ଜ୍ଞାନେନ୍ଦ୍ର ନାଥ ମହାନ୍ତି ପୁଣି ପ୍ରୋଜେକ୍ଟ କର୍ମଚାରୀମାନେ, ଆମର ଅନେକ ବନ୍ଧୁବାନ୍ଧବ ଓ ଭଦ୍ରବ୍ୟକ୍ତି ଯୋଗ ଦେଇଥିଲେ । ବୋଉ ଥିଲା ବଡ଼ ଉଦାର ଓ ଅମାୟିକ ପ୍ରକୃତିର ଲୋକ ।

ସେହି କେତେ ବର୍ଷ ଭଞ୍ଜଜୟନ୍ତୀ ଉତ୍ସବ ମହାସମାରୋହରେ ପାଳିତ ହୋଇଥିଲା । ଶ୍ରୀ ହରିହର ସ୍ୱାଇଁ ଓ ମୁଁ ଏଥିର ଆୟୋଜନ କରିଥାଉ । ରସୁଲକୋଣ୍ଡା ସହରର ନାମ ଭଞ୍ଜନଗର ନାମରେ ପରିବର୍ତ୍ତିତ ହେଲା । ନାମ କରଣ କରିବା ପାଇଁ ଯେଉଁ ସଭାହେଲା ସେଥିରେ ଡ଼କ୍ଟର ହରେକୃଷ୍ଣ ମହତାବ ସଭାପତିତ୍ୱ କରିଥିଲେ ।

କିଛିଦିନ ପରେ ଅନ୍ୟଏକ ବିରାଟ ସଭାରେ ଭଞ୍ଜନଗର କଲେଜ ପ୍ରସ୍ତାବ ସେହି ଡକ୍ଟର ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ଗାମୁଣ୍ଡିର ଶ୍ରୀ ତ୍ରିପାଠୀ ପ୍ରସ୍ତାବ କଲେ ଓ ମୁଁ ଅନୁମୋଦନ କରିଥିଲି । ବିପୁଳ ହର୍ଷଧ୍ୱନି ମଧ୍ୟରେ ସେ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହି କଲେଜ ପାଇଁ ଲାଲସିଙ୍ଗି ଗ୍ରାମର ଭୂମ୍ୟଧିକାରୀ ମାନଙ୍କଠାରୁ ଜମି ସଂଗ୍ରହ କରାଗଲା । ଜଗନ୍ନାଥ ପ୍ରସାଦ ଅଞ୍ଚଳର ମଙ୍ଗରାଜପୁର ଶାସନର ଗୋଳମାଳରେ ଥିବା ଜମି କଲେଜକୁ ଦାନ କରିବା ସକାଶେ ପ୍ରବର୍ତ୍ତାଇବା ପାଇଁ ମୁଁ ବାରଂବାର ଯାଇଥିଲି । ଶେଷରେ ଭଞ୍ଜନଗର ଆର.ଡ଼ି.ଓ, ପ୍ରୋଜେକ୍ଟ ଅଫିସର ଓ ଓକିଲ ଶ୍ୟାମସୁନ୍ଦର ତରାସିଆ ପ୍ରଭୃତି ଯାଇ ସ୍ୱୀକୃତି ଆଣିଲେ । କଲେଜ ପକ୍ଷରୁ ମୁଁ ଶାସନବାସୀଙ୍କୁ ବୁଗୁଡ଼ା ସବ୍‌ରେଜିଷ୍ଟ୍ରାର୍ ଅଫିସକୁ ନେଇ କଲେଜ ନାମରେ ସେହି ଜମି ହସ୍ତାନ୍ତର ରେଜିଷ୍ଟ୍ରି କରାଇଥିଲି ।

ପ୍ରୋଜେକ୍ଟରେ ମୁଁ ଯେଉଁ Sales organiser କାମ କରୁଥିଲି ତାହା ବନ୍ଦ ହୋଇଗଲା । କେତେଦିନ ସେଠାରେ ଛାତ୍ର କେତେଜଣଙ୍କୁ ଟ୍ୟୁସନ ଦିଏ ଏବଂ ଅନ୍ୟାନ୍ୟ

ଆଧ୍ୟାତ୍ମିକ, ସାହିତ୍ୟିକ ଓ ସାମାଜିକ କାର୍ଯ୍ୟରେ ଯୋଗଦିଏ ।

୧୯୫୬ରେ ଭଞ୍ଜନଗର ତ୍ୟାଗ କରି ସପରିବାର କଟକ ଆସିଲି । ପ୍ରଥମେ ଜନ୍ମସ୍ଥଳ ଗୋବରା ଗ୍ରାମ ଛାଡ଼ିଥିଲି ଏବେ ଗଞ୍ଜାମ ଜିଲ୍ଲା ତ୍ୟାଗ କଲି । (ଯାହାକି ମୋର ଅସହଯୋଗ ଆନ୍ଦୋଳନର ପ୍ରିୟ କର୍ମକ୍ଷେତ୍ର ଥିଲା) ଗୋବରା ଘର ତ ବିକ୍ରି ହୋଇଥିଲା । ଜମି ବାଡ଼ି ତ ୧୯୩୦ ସାଲରୁ ଖଣ୍ଡେ ଖଣ୍ଡେ ବିକ୍ରି କରି ସରି ଆସିଥିଲା । ଶେଷରେ ଭଞ୍ଜନଗରରେ ନିର୍ମିତ ଘର ବିକ୍ରି କରିବାକୁ ପଡ଼ିଲା ।

ପ୍ରଶାନ୍ତ କଟକ ପ୍ୟାରିମୋହନ ଏକାଡ଼େମୀରେ ଶିକ୍ଷକତା କରେ । ଖଟ୍‌ବିନ୍ ସାହିରେ ଏକ ଭଡ଼ା ଘରେ ରହେ । ଆମେ ଯାଇ ସେଠାରେ ରହିଲୁ । କେତେ ଦିନ ପରେ ତିନିକୋଣିଆ ବଗିଚା ପ୍ୟାରିମୋହନ ଏକାଡ଼େମୀରେ ପ୍ରଧାନ ଶିକ୍ଷକ ବସନ୍ତ କୁମାର ଦାସଙ୍କ ଏକ ଘରକୁ ଘୁଞ୍ଚିଲୁ । ପ୍ରଶାନ୍ତ B.Ed.Trainingରେ ଯୋଗ ଦେଲା । B.Ed. ପଢ଼ିବା ବେଳେ O.A.S ପାଇଁ ମଧ ପ୍ରସ୍ତୁତ ହେଲା । ଏଣେ ଅର୍ଥାଭାବ ଯୋଗୁଁ ସକାଳେ ଓ ସନ୍ଧ୍ୟାରେ କେତୋଟି ଟିଉସନ୍ ମଧ କରେ । ମୁଁ ମଧ୍ୟ ଅବସର ପ୍ରାପ୍ତ ସିଭିଲ୍ ସର୍ଜନ ଡାକ୍ତର ଜଲ୍ଲାଉଦ୍ଦିନଙ୍କ ପୁଅ ଏର୍‌ଷାଦ୍ ଅହମ୍ମଦ ଏବଂ ଅଧିରାଜ ମୋହନ ସେନାପତିଙ୍କ କନିଷ୍ଠା କନ୍ୟା "ମାମା" ଏବଂ ଆଉକେତେ ଜଣ ପିଲାଙ୍କୁ ଟିଉସନ୍ କରୁଥିଲି । ଘରକୁ କେତେଜଣ ଛୋଟ ଛୋଟ ପିଲା ଆସନ୍ତି । ସେମାନଙ୍କୁ ମଧ ପଢ଼ାଏ ।

ପ୍ରଶାନ୍ତ B.Ed ଏବଂ O.A.S ପରୀକ୍ଷାରେ ଏକା ସମୟରେ ଉତ୍ତୀର୍ଣ୍ଣ ହେଲା । ସେ ଶିକ୍ଷକତା ନ କରି O.A.S ଟ୍ରେନିଂକୁ ଗଲା । ପ୍ରଥମେ ସେ ଢ଼େଙ୍କାନାଳ କଲେକ୍ଟର ଅଫିସରେ ସାର୍ଟିଫିକେଟ ଅଫିସର୍ ଭାବେ ଯୋଗ ଦେଲା ।

କଟକ ବିଦ୍ୟାଜୀବନ ସଂଘର ସାପ୍ତାହିକ ଅଧିବେଶନମାନଙ୍କରେ ମୁଁ ଯୋଗ ଦିଏ । ସେହି ବର୍ଷ ବାର୍ଷିକ ଅଧିବେଶନରେ ସଂଘର ସଭାପତି ଭାବେ ମୁଁ ନିର୍ବାଚିତ ହେଲି । ସତ୍ୟନାରାୟଣ ମନ୍ଦିରରେ ସଂଘର ଅଧିବେଶନ ଏବଂ ସାମୟିକ ଉତ୍ସବମାନ ହୁଏ । ସେହି ମନ୍ଦିରରେ ଗୋଟିଏ ଧର୍ମଗ୍ରନ୍ଥ ପାଠାଗାର ସ୍ଥାପନ କରିବା ପାଇଁ ପ୍ରସ୍ତାବ. କଲି । ସମସ୍ତେ ଆଗ୍ରହରେ ସ୍ୱୀକାର କଲେ । ଜଣେ ମାରବାଡ଼ୀ ଭଦ୍ରବ୍ୟକ୍ତି ଗ୍ରନ୍ଥ ରଖିବା ପାଇଁ ଗୋଟିଏ ବଡ଼ ଆଲମାରୀ ଦାନ କଲେ । ଭଦ୍ରବ୍ୟକ୍ତିମାନଙ୍କଠାକୁ ଯାଇ ପୁସ୍ତକ ସଂଗ୍ରହ କଲୁ । ପୂର୍ବରୁ ଯେଉଁମାନେ ସଂଘର ସଭାପତି ଥିଲେ ସେମାନେ କେବଳ ବିଶିଷ୍ଟ ଅନୁଷ୍ଠାନ ମାନଙ୍କରେ ଯୋଗ ଦେଇଥାନ୍ତି । ସାଧାରଣ ଅଧିବେଶନମାନଙ୍କରେ ଯୋଗ ଦିଅନ୍ତି ନାହିଁ । ମୁଁ କିନ୍ତୁ ପ୍ରତ୍ୟେକ ଅଧିବେଶନରେ ଯୋଗ ଦେବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟରେ ସହଯୋଗ କରିବାରୁ ସଭ୍ୟମାନଙ୍କର ସୌହାର୍ଦ୍ଦ୍ୟ ଲାଭ କରିଥିଲି ।

# ପୁତ୍ରମାନଙ୍କର ବିବାହ ପ୍ରସଙ୍ଗ

ପ୍ରଫୁଲ୍ଲ ଓ ପ୍ରମୋଦର ବିବାହ ପ୍ରସ୍ତାବ ଉଠିଲା । ପ୍ରମୋଦ ସେତେବେଳକୁ ଯାଦବପୁର ବିଶ୍ୱବିଦ୍ୟାଳୟରୁ ଇଞ୍ଜିନିୟରିଙ୍ଗ ପାସ୍ କରି ଆସି ହୀରାକୁଦ ବିଦ୍ୟୁତ୍ ସଂସ୍ଥାରେ କେତେଦିନ କାମ କରି ନବ ପ୍ରତିଷ୍ଠିତ ବୁର୍ଲା ଇଞ୍ଜିନିୟରିଙ୍ଗ କଲେଜରେ ଅଧ୍ୟାପକ । ପ୍ରଫୁଲ୍ଲ ଛତ୍ରପୁର ବ୍ଲକରେ ସାମାଜିକ ସଂଗଠନ, ଦୁଇଟି ସୁନ୍ଦରୀ ଓ ଗୁଣବତୀ କନ୍ୟା ଗୋଟିଏ କବି ଶ୍ରୀ ବୈକୁଣ୍ଠ ନାଥ ପଟ୍ଟନାୟକଙ୍କ ୨ୟା କନ୍ୟା ଏବଂ ଅନ୍ୟଟି ପ୍ୟାରିମୋହନ ଏକାଡ଼େମୀର ପ୍ରଧାନ ଶିକ୍ଷକ ଶ୍ରୀ ଜଗଦ୍‌ବନ୍ଧୁ ପଟ୍ଟନାୟକଙ୍କ କନ୍ୟା ଯଥାକ୍ରମେ ପ୍ରଫୁଲ୍ଲ ଓ ପ୍ରମୋଦ ପାଇଁ ଠିକ୍ ହୋଇଥିଲା । କିନ୍ତୁ ଉଭୟ ପ୍ରସ୍ତାବ ଭାଙ୍ଗିଗଲା । ପ୍ରଥମ ପ୍ରସ୍ତାବ ବରକନ୍ୟାଙ୍କ ଜାତକ ମେଳ କରୁ କରୁ ଜଣେ ଜ୍ୟୋତିଷ କହିଲେ ଏ ପ୍ରସ୍ତାବ କଲେ ବର ପାତ୍ରର ପ୍ରାଣହାନିର ଯୋଗ ଅଛି । ଆମେ ସବୁ ସନ୍ଦେହରେ ପଡ଼ିଲୁ । ପ୍ରଫୁଲ୍ଲ ସେହି ସମୟରେ କୌଣସି ଏକ ପ୍ରଶିକ୍ଷଣ ପାଇଁ ରାଞ୍ଚି



**ବାଞ୍ଛାନିଧି ପଟ୍ଟନାୟକଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଓ ବଡ଼ବୋହୂ ଶ୍ରୀମତୀ ଦେବହୂତୀ**



ତା୨୧.୧୧୧୯୭୬ରେ ଭଞ୍ଜନଗରଠାରେ କନିଷ୍ଠ ପୁତ୍ର ପ୍ରଭାସଙ୍କ ବାହାଘର ସମୟରେ
ନିଜ ପରିବାର ଗହଣରେ ବାଞ୍ଛାନିଧି ପଟ୍ଟନାୟକ

ଯାଇଥିଲା । ସେ ଫେରିବା ବେଳକୁ ଏକ ଦୁଃସଂବାଦ ଆମରି ଗାଁ ଆଡ଼େ ପ୍ରଚାରିତ ହେଲା ଯେ ସେ କଟକ ହସ୍‌ପିଟାଲ୍‌ରେ ଚିକିତ୍ସିତ ହେବାବେଳେ ତା'ର ମୃତ୍ୟୁ ଘଟିଛି । ଇତି ମଧ୍ୟରେ ସେ ଫେରିଲା । ଫେରିବା ବାଟରେ ବୁଲାଁ ଦେଇ ଆସିଥିଲା । ବୁଲାଁ ଟେଲିଗ୍ରାମ କଲୁ, ପ୍ରମୋଦ ଉତ୍ତର ଦେଲା ଯେ ସର୍ବଶୁଭରେ ରାଞ୍ଚିରୁ ଫେରି କର୍ମକ୍ଷେତ୍ରକୁ ଗଲେ । ଦିନେ ଦୁଇଦିନ ମଧ୍ୟରେ ଘରକୁ ଯିବେ । ଆଶ୍ୱସ୍ତ ହେଲୁ । ପ୍ରସଙ୍ଗ ପଡୁ ପଡୁ ତ ଏ ଦୁଃସମ୍ବାଦ, ସେ ପ୍ରସଙ୍ଗରୁ ମନ ଭାଙ୍ଗିଲା । ଅପରପକ୍ଷରୁ ମଧ୍ୟ କୌଣସି ଉଦ୍ୟମ ହୋଇ ନଥିଲା । ଦ୍ୱିତୀୟ ପ୍ରସଙ୍ଗଟି ମଧ୍ୟ କୌଣସି କାରଣରୁ ଭାଙ୍ଗିଗଲା । ତା'ପରେ କଟକ ନିବାସୀ ଶ୍ରୀମାନ୍ ହରିଶଙ୍କର ବକ୍ସିଙ୍କ କନ୍ୟା ଦେବହୂତୀ ଏବଂ ସମ୍ବଲପୁର ନିବାସୀ ଓକିଲ ଶ୍ରୀମାନ୍ ମାନଭଞ୍ଜନ ବହିଦାରଙ୍କ କନ୍ୟା ସୌଦାମିନୀ ସହିତ ଯଥାକ୍ରମେ ପ୍ରଫୁଲ୍ଲ ଓ ପ୍ରମୋଦ ପାଇଁ ବିବାହ ଠିକ୍ ହେଲା ।

୨୮/୨/୬୦ରେ ଏ ଉଭୟଙ୍କ ବିବାହ ହେଲା । ସେହି ତିନିକୋଣିଆ ବଗିଚା ଘରେ ବିବାହ ଆୟୋଜନ କରାଗଲା । କେତେ ଆତ୍ମ କେତେ ବନ୍ଧୁ, ବାନ୍ଧବ, ସାଙ୍ଗ, ସାଥୀ ଆସି ପହଞ୍ଚିଲେ । ପ୍ରମୋଦକୁ ସମ୍ବଲପୁର ନେଇ କେତେଗଲେ, ଆଉ କେତେ



ବାଞ୍ଛାନିଧି ପଟ୍ଟନାୟକଙ୍କ ଦ୍ୱିତୀୟ ପୁତ୍ର ଶ୍ରୀ ପ୍ରମୋଦ ଚନ୍ଦ୍ର ଓ ପୁତ୍ରବଧୂ ସୌଦାମିନୀ

କଟକ ଉତ୍ସବରେ ରହିଲେ । ବହୁ ଆଡ଼ମ୍ବରରେ ଭୋଜିଭାତ ହେଲା ।

ପୂଜ୍ୟ ଲକ୍ଷ୍ମୀନାରାୟଣ ସାହୁ ଏବଂ ତାଙ୍କ ସହଧର୍ମିଣୀ ତିନି ଚାରିଦିନ କାଳ ଆମ ଘରେ ରହି ପରାମର୍ଶ ଦେଇଥାନ୍ତି । ଆଚାର୍ଯ୍ୟ ହରିହର ଦାଶ ଯୋଗଦେଇ ନବ ବରବଧୂମାନଙ୍କୁ ଆଶୀର୍ବାଦ ଦେଇଥିଲେ । ଲକ୍ଷ୍ମୀନାରାୟଣବାବୁ, ତାଙ୍କ ସହଧର୍ମିଣୀ, ଆମର ପୁରୋହିତ, ବନ୍ଧୁବାନ୍ଧବ ଓ ପରିବାରର ସମସ୍ତଙ୍କୁ ନେଇ ଏକ ବଡ଼ ଫଟୋ ଗ୍ରହଣ କରାଯାଇଥିଲା ।

ପ୍ରଶାନ୍ତ ଏ ବିବାହର ସମସ୍ତ ପ୍ରକାର ଆୟୋଜନ କରିଥିଲା । ଦିନରାତି ଅକ୍ଲାନ୍ତ ପରିଶ୍ରମ କରି ନାନା ପ୍ରତିକୂଳ ଅବସ୍ଥା ମଧ୍ୟରେ ଦକ୍ଷତାର ସହିତ ସମସ୍ତ କାର୍ଯ୍ୟ ସମ୍ପାଦନ କରିଥିଲା ।

## ଜଣେ ସର୍ବଜ୍ଞଙ୍କ କଥା

ଆମେ ଖଟ୍‌ବିନ୍ ସାହିରେ ଥିବାବେଳେ ମୋର ପଞ୍ଚମ ପୁତ୍ର ପ୍ରବୋଧ ଘରେ କାହାକୁ ନ କହି ନ ପୁଛି କୁଆଡ଼େ ଚାଲିଗଲା । କେତେ ଅନୁସନ୍ଧାନ କଲୁ । କିଛି ଜଣାଗଲା ନାହିଁ । ଶେଷରେ କଟକର ଜଣେ ଜ୍ୟୋତିଷ ଶ୍ରୀ ଗଦାଧର ନାୟକଙ୍କୁ ବୁଝିବାକୁ ଗଲୁ । ପ୍ରଶାନ୍ତ ଏ ସବୁରେ ବିଶ୍ୱାସ କରେନା ବୋଲି ଯାଉନଥିଲା । ସାଙ୍ଗରେ ଧରିଗଲି । ଆମେ ଯାଇ ପହଞ୍ଚିବା କ୍ଷଣି ସେ ସାଙ୍ଗେ ସାଙ୍ଗେ କହିଲେ ପୁଅ କୁଆଡ଼େ ପଳାଇଛି । ଏ ବିଷୟ ପଚାରିବାକୁ ଆସିଛ । ଆମେ ଶୁଣି ଆଶ୍ଚର୍ଯ୍ୟ ହେଲୁ । ତା'ପରେ ସେ ଖଣ୍ଡେ କାଗଜରେ କ'ଣ ଲେଖି ଟେବୁଲ୍ ଉପରେ ରଖିଲେ ଏବଂ ଆମକୁ ଘଟଣା କ'ଣ ପଚାରିଲେ, ''କିଛି ନ କହି ପୁଅ ଆଜିକି ତିନିଦିନ ହେଲା କେଉଁଆଡ଼େ ପଳାଇଛି, କେଉଁଠି ଅଛି କ'ଣ ଜାଣିବା ପାଇଁ ଆସିଛୁ'' ବୋଲି କହିଲି । ସେ କାଗଜ ଖଣ୍ଡିକ ଟେବୁଲ୍ ଉପରୁ ଆଣି ଆମକୁ ପଢ଼ିବାକୁ ଦେଲେ । ସେଥିରେ ଲେଖାଥିଲା । ''ପୁଅ ଏଠାରୁ ୪୦ ମାଇଲ ଦୂରରେ ଗୋଟିଏ ଜଳମୟ ସ୍ଥାନରେ ଅଛି । ପଅର ଦିନ, ଚାଲିଆସିବ ।'' ଆମେ ଆଶ୍ୱସ୍ତ ହୋଇ ଫେରିଲୁ । ସେ ଯେଉଁ ଦିନ ଆସିବ ବୋଲି କହିଥିଲେ ସେ ଦିନଯାକ ଯାଇ ରାତି ହେବାପରେ ମଧ୍ୟ ଆସିଲା ନାହିଁ । ପ୍ରଶାନ୍ତ ଓ ମୁଁ ଖାଇ ବସିଛୁ । ରାତି ପ୍ରାୟ ୮ଟା, ପ୍ରଥମରୁ ତ ପ୍ରଶାନ୍ତ ସର୍ବଜ୍ଞ କଥାକୁ ବିଶ୍ୱାସ କରୁନଥିଲା । ତାକୁ ଏବେ ସୁବିଧା ମିଳିଗଲା । କହିଲା, ''ନନା, ସର୍ବଜ୍ଞ କଥା ମିଛ ହୋଇଗଲା । କାହିଁ ଆଜି ପରା ଆସିବ ବୋଲି କହିଥିଲେ, ଆସିଲା ନାହିଁ ?'' ମୁଁ କହିଲି ଆଜିତ ସମୟ ଆହୁରି ଅଛି । ଦେଖାଯାଉ କ'ଣ ହେଉଛି । ଠିକ୍ ସେତିକିବେଳେ ମୋର ଝିଅ ମୃଣାଳିନୀ ଦାଣ୍ଡଘରୁ ଧାଇଁ ଆସି କହିଲା– ନନା କୋକବାଇ (ପ୍ରବୋଧର ଡ଼ାକ

ନାମ କୋକ ବାଛ) ଆସିଲା । ଆମେ ଦୁହେଁ ଆଶ୍ଚର୍ଯ୍ୟ ହୋଇଗଲୁ । ତାକୁ ଦେଖି ଆଶ୍ୱସ୍ତ ହେଲି । ତା ବୋଉ ତାକୁ ଧରି କାନ୍ଦି ପକାଇଲେ । ସେ ତା'ର ଜଣେ ସହପାଠୀ ସହ ପୁରୀ (ସମୁଦ୍ରକୂଳ ଜଳମୟ ସ୍ଥାନ -କଟକରୁ ପ୍ରାୟ ୪୦ ମାଇଲ ଦୂର) ଯାଇଥିଲା । ସେଠାରୁ ଫେରି ଟ୍ରେନ୍‌ରେ ସିଧା ବାଲେଶ୍ୱର ଆଡ଼େ ଉଭୟେ ଯାଉଥିଲେ । ଆମ ସାହିର ଜଣେ ଭଦ୍ରବ୍ୟକ୍ତି ସେହି ଟ୍ରେନ୍‌ରେ ଯାଉଥିଲେ । ଏମାନଙ୍କୁ ଚିହ୍ନି ଉଭୟଙ୍କୁ ନାନା ପ୍ରକାର ଭୟ ଦେଖାଇ ଧରି ଆସିଲେ ।

ଏହି ସର୍ବଜ୍ଞ ଗଦାଧର ନାୟକ କଟକ ଚାନ୍ଦିନୀଚୌକିରେ ବାସ କରନ୍ତି । ଅନେକ ସମୟରେ ବୁଲିଗଲା ବେଳେ ତାଙ୍କ ଘରକୁ ଯାଏ । ଦିନରାତି ସବୁବେଳେ ଲୋକ ସମାଗମ । କେତେ ଆଉ କେତେ ଟେଲିଗ୍ରାମ ଓ ଫୋନ୍‌ରେ ପ୍ରଶ୍ନମାନ ଆସେ । ପ୍ରତିଦିନ ତାଙ୍କର କେତେ ରୋଜଗାର ହୁଏ କଳନା ନାହିଁ ।

ଥରେ ଆମ ଗାଁ ପାଖ କ୍ଷତ୍ରିୟବରପୁରର ମୋର ଜଣେ ବନ୍ଧୁ ଶ୍ରୀ ଅନ୍ତର୍ଯ୍ୟାମି ତ୍ରିପାଠୀ ତାଙ୍କର ଏକ ମକଦ୍ଦମା ବିଷୟରେ କଟକ ଆସିଥିଲେ । ଏ ସର୍ବଜ୍ଞଙ୍କ କଥା ଶୁଣି ମକଦ୍ଦମା ବିଷୟରେ ପ୍ରଶ୍ନ କରିବା ପାଇଁ ତାଙ୍କ ନିକଟକୁ ଉଭୟେ ଗଲୁ । ସେ ତାଙ୍କୁ ଦେଖୁ ଦେଖୁ ଖଣ୍ଡେ କାଗଜରେ କ'ଣ ଟିପି ଦେଇ ଟେବୁଲ୍ ଉପରେ ରଖିଲେ ଏବଂ ତାଙ୍କର ଆସିବା କାରଣ ପଚାରିଲେ । ସେ କହିଲେ ତାଙ୍କର ଗୋଟିଏ ସମବାୟ ସମିତି ସମ୍ବନ୍ଧ କେସ୍ ଚାଲିଛି । କ'ଣ ହେବ ପଚାରିବାକୁ ଆସିଛନ୍ତି । ସେ ଟିପି ରଖିଥିବା କାଗଜ ଖଣ୍ଡିକ ଉଠାଇ ଦେଖାଇଲେ । ସେଥିରେ ଲେଖା ଥିଲା "କୋପରେଟିଭ୍ କେସ୍, କିଛି ଅସୁବିଧା ନାହିଁ । ମୁକ୍ତହୋଇ ଯିବେ ।" ଉକ୍ତ ତ୍ରିପାଠୀ ମହାଶୟ ଜଣେ ପୁରୋହିତ । ସେ ମଧ ଜଣେ ଜ୍ୟୋତିଷ । ଯଜମାନଙ୍କୁ ଇମିତି କେତେ ଛୋଟ ଛୋଟ ପ୍ରଶ୍ନର ଉତ୍ତର ଗଣାପୋଛା କରି କହନ୍ତି କିନ୍ତୁ, ଏହାଙ୍କ ପ୍ରଶ୍ନ ଦେଖାରେ ଆଶ୍ଚର୍ଯ୍ୟ ଓ ସନ୍ତୁଷ୍ଟ ହୋଇ ସଙ୍ଗେ ସଙ୍ଗେ କିଛି ଟଙ୍କା ତାଙ୍କୁଦେଇ ପକାଇଥିଲେ ।

## ପଞ୍ଚାୟତରାଜ ପ୍ରଶିକ୍ଷଣ

ପଞ୍ଚାୟତ ସମିତି ସଭ୍ୟ ଓ ସରପଞ୍ଚମାନଙ୍କୁ ପଞ୍ଚାୟତ ରାଜ ସଂପର୍କରେ ଶିକ୍ଷାଦେବା ସକାଶେ ସରକାରଙ୍କ ପକ୍ଷରୁ ଏକ ଯୋଜନା ହେଲା । ସେଥିପାଇଁ ବେସରକାରୀ ଶିକ୍ଷିତ ବ୍ୟକ୍ତିମାନଙ୍କୁ ଶିକ୍ଷାଦାତା ରୂପେ ବଛାଯାଇ ସେମାନଙ୍କୁ ପ୍ରଥମେ ପ୍ରଶିକ୍ଷଣ ଦେବାପାଇଁ ମଧ ପ୍ରଦେଶ ଜବଲପୁରଠାରେ ଏକ ପ୍ରଶିକ୍ଷଣ କେନ୍ଦ୍ର (Oriental Training Centre) ସ୍ଥାପିତ ହେଲା । ତାହା ଏକ ଆନ୍ତଃପ୍ରାଦେଶିକ ଶିକ୍ଷାକେନ୍ଦ୍ର । ଓଡ଼ିଶାରାଜ୍ୟ ସମବାୟ ସଂଘ ପକ୍ଷରୁ ଶିକ୍ଷାଦାତା ବଛାଯାଇ ଟ୍ରେନିଂ ପାଇଁ ପଠାଯାଏ ।

ଉକ୍ତ ସଂସ୍ଥାର ସଂପାଦକ ଏବଂ ସହକାରୀ ସଂପାଦକ ଯଥାକ୍ରମେ ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ଏବଂ ଶ୍ରୀ ଗୋପେନ୍ଦ୍ର କୃଷ୍ଣ ମିଶ୍ର ଆଗରୁ ମୋର ପରିଚିତ । ସେମାନେ ଗଞ୍ଜାମରେ ସମବାୟ ବିଭାଗରେ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର୍ ଥିବା ବେଳେ ମୁଁ ସମବାୟ ଏବଂ ସାମାଜିକ କାର୍ଯ୍ୟରେ ଅଂଶ ଗ୍ରହଣ ତଥା ଶିକ୍ଷାର ପ୍ରସାର ନିମନ୍ତେ ବିଭିନ୍ନ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନରେ ସହଯୋଗ କରିବା ଜାଣିଥିଲେ । ଗୋପକୃଷ୍ଣ ବାବୁ ଥରେ ଦୈବାତ୍ ଦେଖି ଉକ୍ତ ଶିକ୍ଷାଦାତା କାମ ପାଇଁ ଆବେଦନ କରନ୍ତୁ ବୋଲି କହିଲେ । ଅବସର ପ୍ରାପ୍ତ ସମବାୟ ବିଭାଗ ରେଜିଷ୍ଟ୍ରାର୍ ଶ୍ରୀ ଏସ୍.ସି. ରାୟ ପ୍ରାର୍ଥୀ ମନୋନୟନ କରିବେ । ସେ ମୋର ବିଭିନ୍ନ ଦେଶସେବା କାର୍ଯ୍ୟ ବିଶେଷତଃ ହରିଜନ ସେବା କାମ ବିଚାରକୁ ନେଇ ମତେ ମନୋନୀତ କଲେ । ଗଞ୍ଜାମର ଅନ୍ୟ ଦୁଇଜଣ ଶ୍ରୀ ଈଶ୍ୱର ସାହୁ ଏବଂ ଶ୍ରୀ ନରସିଂହ ପଟ୍ଟନାୟକ ମଧ୍ୟ ମନୋନୀତ ହୋଇଥିଲେ । ଆମ୍ଭମାନଙ୍କୁ ଜବଲପୁର ଟ୍ରେନିଂ ପାଇଁ ପଠାଗଲା । ବିଭିନ୍ନ ପ୍ରଦେଶରୁ ଅନେକ ପ୍ରାର୍ଥୀ ଟ୍ରେନିଂ ପାଇବା ପାଇଁ ଆସିଥିଲେ । ୨୨/୯/୫୯ଠାରୁ ୯/୧୦/୫୯ ପର୍ଯ୍ୟନ୍ତ ଉକ୍ତ ଟ୍ରେନିଂ ଚାଲିଥିଲା । ପଞ୍ଚାୟତ ରାଜ ସଂପର୍କରେ ବିଭିନ୍ନ ବିଷୟରେ ବଡ଼ ବଡ଼ ଶିକ୍ଷାବିତ୍, ରାଜନୈତିକ ନେତା ଏବଂ ବଡ଼ ବଡ଼ ସରକାରୀ କର୍ମଚାରୀମାନେ ଆସି ଭାଷଣ ଦିଅନ୍ତି । ଅଧ୍ୟାପକ ଏନ୍.ଆର.ମାଲ୍‌କାନୀ, ଆଚାର୍ଯ୍ୟ କୃପାଳିନୀଙ୍କର ସହ ଅଧ୍ୟାପକ, ସ୍ୱାଧୀନତା ସଂଗ୍ରାମୀ ଏବଂ ନିଖିଳ ଭାରତ ହରିଜନ ସେବକ ସଂଘର ସହକାରୀ ସଂପାଦକ, ଟ୍ରେନିଂରେ ଶେଷ ବେଳକୁ ଆସି ଅଧ୍ୟକ୍ଷ ହୋଇଥିଲେ । ମୁଁ ହରିଜନ କାମ କଲାବେଳକୁ ସେ ଯେତେବେଳେ ଗଞ୍ଜାମ ଗସ୍ତରେ ଆସିଥିଲେ ମୋର ତାଙ୍କ ସହ ପରିଚୟ ହୋଇଥିଲା । ସେ ମୋର ହରିଜନ କାମ ଦେଖି ବିଶେଷ ସନ୍ତୁଷ୍ଟ ହୋଇଥିଲେ ଓ ମୋର ନିବାସ ଗୃହ (ଗୋବରା)ରେ ଦିନକ ପାଇଁ ଆତିଥ୍ୟ ଗ୍ରହଣ କରିଥିଲେ । ମୋ ଦ୍ୱାରା ପରିଚାଳିତ ଗୋବରା ଗ୍ରାମସେବା ସଂଘର ସେବାକାର୍ଯ୍ୟ ଓ ନିୟମାବଳୀ ଦେଖି ତୃପ୍ତ ହୋଇ ମହାତ୍ମା ଗାନ୍ଧୀଙ୍କ ପ୍ରତିଷ୍ଠିତ ହରିଜନ ପତ୍ରିକାରେ ଏକ ବିଶଦ ବିବରଣୀ ପ୍ରକାଶ କରିଥିଲେ । ବିଶେଷତଃ ସଂଘର ସଂପାଦକ ମୋର ସାନଭାଇ ପୁରୁଷୋତ୍ତମର ଭୂୟସୀ ପ୍ରଶଂସା କରି ଲେଖିଥିଲେ । ଅବସର ବେଳେ ମୁଁ ତାଙ୍କୁ ସେ ସବୁ କଥା ସ୍ମରଣ କରାଇ ଦେଲି । ଏତେ ବର୍ଷ ପୂର୍ବର କଥା ବୋଲି ମନେ ପକାଇ ବିଶେଷ ଆନନ୍ଦ ହୋଇଥିଲେ ।

କେନ୍ଦ୍ର ସରକାରଙ୍କ ଗ୍ରାମ ଗୋଷ୍ଠୀ ଯୋଜନା ସେକ୍ରେଟାରୀ ତଥା ଓଡ଼ିଶାର ପୂର୍ବତନ ଚିଫ୍ ସେକ୍ରେଟରୀ ଶ୍ରୀ ମୁଖାର୍ଜୀ ସାହେବ ଦିନକ ପାଇଁ ଭାଷଣ ଦେବାକୁ ଆସିଥିଲେ । ସେ ଓଡ଼ିଶାରୁ କେଉଁମାନେ ଆସିଛନ୍ତି ବୋଲି ପଚାରି ଆମ୍ଭମାନଙ୍କ ସହ ଅନେକ ସମୟ ପର୍ଯ୍ୟନ୍ତ ବଡ଼ ଆଦର ସହ ଆଳାପ କରିଥିଲେ ।

ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଏବଂ ସେହି ସମୟର ମଧ ପ୍ରଦେଶ ମୁଖ୍ୟମନ୍ତ୍ରୀ ଶ୍ରୀ କୈଳାସ ନାଥ କାଟ୍‌ଜୁ ଉଦ୍‌ଘାଟନ ଦିବସରେ ସଭାପତିତ୍ୱ କରିଥିଲେ । ତାଙ୍କର

ଭାଷଣ ପ୍ରସଙ୍ଗରେ ଓଡ଼ିଶାର ଗାଇମାନେ ଛେଳିମାନଙ୍କ ପରି ଏତେ ଟିକିଏ ଦୁଧ ଦିଅନ୍ତି ବୋଲି କହିଥିଲେ । ସଭା ଭଙ୍ଗ ହେବା ପରେ ଆମ ଓଡ଼ିଆମାନଙ୍କ ସହ ଓଡ଼ିଶା ବିଷୟରେ ବହୁତ କଥାବାର୍ତ୍ତା ହୋଇଥିଲେ ଏବଂ ଗାଇମାନେ ଏତେ ଟିକେ ଦୁଧ ଦେବା କଥା କହିବାରୁ ତୁମେମାନେ କ'ଣ ଭାବିଲ କି ? ବୋଲି ପଚାରି ହସ ଖୁସୀରେ ଇମିତି କହିଲି ବୋଲି କହିଥିଲେ । ସେ ମଧ ଖୁବ୍ ସ୍ନେହ ସହକାରେ ବହୁ ସମୟ ଧରି ଆଳାପ ଆଲୋଚନା କରିଥିଲେ ।

ପ୍ରଶିକ୍ଷଣ ଶିକ୍ଷା ପ୍ରଣାଳୀ ଖୁବ୍ ଭଲ ଲାଗିଲା । ପଞ୍ଚାୟତ ରାଜ ସଂପର୍କରେ ପ୍ରାୟ ୨୦/୨୫ ଖଣ୍ଡ ପୁସ୍ତକ ପାଠ୍ୟ ମଧରେ ଥିଲା । ପ୍ରତିଦିନ ଦୁଇଓଳି କ୍ଲାସ ହୁଏ । ସେଥିରେ ବିଭିନ୍ନ ବିଷୟରେ ଭାଷଣମାନ ଦିଆଯାଏ । ଭାଷଣର ସାର କଥା ଆମ୍ଭମାନଙ୍କୁ ଲେଖିବାକୁ ହୁଏ, ପୁଣି ତା'ର ସମାଲୋଚନା କରିବାକୁ ହୁଏ । ଭାଷଣର ବିଷୟ ବସ୍ତୁ ଯଥାର୍ଥ କି ନୁହେଁ ? ଆଉ କେଉଁ ବିଷୟ ଛାଡ଼ି ଦିଆଯାଇଛି କି ? ଅତିରିକ୍ତ କ'ଣ କୁହାଯାଇଛି କି ? ଇତ୍ୟାଦି ବିଷୟରେ ଆମକୁ ନିଜ ନିଜର ମତାମତ ଲେଖିବାକୁ ପଡ଼େ ।

ଜବଲପୁରଠାରୁ ଅଳ୍ପ ଦୂରରେ ଏକ ନବନିର୍ମିତ କ୍ୟାମ୍ପରେ ପ୍ରଶିକ୍ଷଣାଳୟ ସ୍ଥାପିତ ହୋଇଥିଲା । ଆମ୍ଭେମାନେ ସମୟେ ସମୟେ ଜବଲପୁର ସହର ପରିଭ୍ରମଣରେ ଆସୁ । ବଡ଼ ସୁନ୍ଦର, ନାନାପ୍ରକାର ଜିନିଷର କାରବାର । ଥରେ ଏଠାରେ ନିଖିଳଭାରତ କଂଗ୍ରେସ୍‌ର ଏକ ଅଧିବେଶନ ହୋଇଥିଲା । କଂଗ୍ରେସ ମଣ୍ଡପର ପ୍ରଥମ ପ୍ରବେଶ ଦ୍ୱାର ଏଯାଏଁ ସେଠାରେ ବିଦ୍ୟମାନ । ଏହି ସହରର ଏକ ପାର୍ଶ୍ୱରେ ଏକ ଓଡ଼ିଆ ମହଲ୍ଲା ଅଛି । ଆମ୍ଭେମାନେ ଦିନେ ଉକ୍ତ ମହଲ୍ଲା ଦେଖିବାକୁ ଯାଇଥିଲୁ । ସେଠାର ଅଧିବାସୀ ସବୁ ଓଡ଼ିଆ ଗଉଡ଼ । ଯାଦବ ସଞ୍ଜାଧାରୀ, ସେମାନଙ୍କର ବେଶଭୂଷା ସବୁ ସେଠାର ହିନ୍ଦୁସ୍ଥାନୀମାନଙ୍କ ପରି, ଅନେକ ଉଚ୍ଚ ଶିକ୍ଷିତ, କେତେଜଣ ଓକିଲ, ବ୍ୟବସ୍ଥା ସଭା ସଭ୍ୟ ଏପରିକି ଲୋକସଭା ସଭ୍ୟ (ଏମ୍.ପି) ମଧ । ଓଡ଼ିଆ ଭାଷା ପାଶୋରି ଦେଲେଣି । ଶହ ଶହ ବର୍ଷ ପୂର୍ବେ ଏମାନଙ୍କ ବଂଶଧରମାନେ ଓଡ଼ିଶାରୁ ଆସି ଏଠାରେ ବସବାସ କରି ରହିଥିଲେ । ବୁଢ଼ା ବୁଢ଼ା କେତେ ଜଣ ଆମ୍ଭମାନଙ୍କ ସହ ଓଡ଼ିଆରେ କଥାବାର୍ତ୍ତା କରିଥିଲେ । ଥରେ ଏହି ଓଡ଼ିଆ ମାନଙ୍କର ଏକ ସମ୍ମିଳନୀ ହୋଇଥିଲା । ଶ୍ରୀ ବିଶ୍ୱନାଥ ଦାସ ଏବଂ ମୋର ଜାମାତା ନବକିଶୋର ଦାସ ଉକ୍ତ ସମ୍ମିଳନୀ ସଂପର୍କରେ ଭାଷଣ ଦେଇଥିଲେ । ଏମାନେ ଥାଉ ତାଙ୍କର ଗୋଟିଏ ଗ୍ରୁପ ଫଟୋ ଉଠିଥିଲା । ସେହି ଫଟୋ ତାଙ୍କ ପାଠାଗାର ଗୃହରେ ଥିବା ଦେଖିଥିଲି । ମାତୃଭାଷା ଓ ଚାଲିଚଳଣି ସବୁ ଭୁଲିଯାଇଥିଲେ ମଧ ସ୍ୱଦେଶ ବାସୀଙ୍କୁ ଦେଖିଲେ ସ୍ୱ ମାତୃଭାଷା ଶୁଣିଲେ ସ୍ନେହ ମମତା ଜାତ ହୁଏ । ଆମ୍ଭମାନଙ୍କୁ ସେମାନେ ବହୁ ଆଦର ସମ୍ବର୍ଦ୍ଧନା କରିଥିଲେ । ଜବଲପୁର ଛାଡ଼ିବା ପୂର୍ବରୁ ପୁଣି ଥରେ ତାଙ୍କ ମହଲ୍ଲାକୁ ଆସିବା ପାଇଁ ସେମାନେ ଅନୁରୋଧ କରିଥିଲେ । ପୁଣି ଥରେ ଯିବା ପାଇଁ ଆମେ ସୁବିଧା

ପାଇନଥିଲୁ । ୯/୧୦/୫୯ରେ ପ୍ରଶିକ୍ଷଣ ଶେଷ ହେଲା । ଆମ୍ଭେମାନେ ଜବଲପୁର ଛାଡ଼ିଲୁ ।

## ପ୍ରଶିକ୍ଷଣ କେନ୍ଦ୍ର ସମ୍ବଲପୁର

ବିବାହ କାର୍ଯ୍ୟ ସମାପନ ହେବା ପରେ ପରେ ସମ୍ବଲପୁର ପ୍ରଶିକ୍ଷଣ କେନ୍ଦ୍ରରେ ୫/୩/୬୦ରେ ଯୋଗଦେବାକୁ ପଡ଼ିଲା । ଶ୍ରୀ ନରସିଂହ ପଟ୍ଟନାୟକ ମୋର ସହକର୍ମୀ ଥିଲେ । ସମ୍ବଲପୁର ବୁଢ଼ା ହିଲ୍ ନିକଟରେ ଥିବା ଗୋଟିଏ ବଙ୍ଗଳାରେ ପ୍ରଶିକ୍ଷଣ ଦେବା ବ୍ୟବସ୍ଥା ହୋଇଥିଲା । ପ୍ରଶିକ୍ଷଣ କାଳ ୧୦ଦିନ । ପଞ୍ଚାୟତ ସମିତି ସଭ୍ୟ ଓ ସରପଞ୍ଚ ୧୦ ଦିନ ଶିକ୍ଷାଲାଭ କରି ଚାଲିଯିବା ପରେ ଆଉ ଦଳେ ଆସନ୍ତି । ପ୍ରତ୍ୟେକଙ୍କୁ ଦୈନିକ ଖାଦ୍ୟ ଦେୟ ସକାଶେ ଟ୨-୫୦ ଏବଂ ଗସ୍ତଖର୍ଚ୍ଚ ଦିଆଯାଏ । ଆମେ ଉଭୟେ ଶିକ୍ଷା ଦେଉଁ । ମଧ୍ୟେ ମଧ୍ୟେ ସ୍ଥାନୀୟ ଭଦ୍ରବ୍ୟକ୍ତିମାନଙ୍କୁ ଭାଷଣ ଦେବାପାଇଁ ନିମନ୍ତ୍ରଣ କରାଯାଏ । ସରକାରୀ କର୍ମଚାରୀମାନଙ୍କ ଛଡ଼ା ଅନ୍ୟମାନଙ୍କୁ ଗୋଟିଏ ଭାଷଣ ପାଇଁ ଟ୧୦ଙ୍କା ପାରିତୋଷିକ ଦିଆଯାଏ । ମୋର ସ୍ୱାଧୀନତା ସଂଗ୍ରାମୀବନ୍ଧୁ ସମ୍ବଲପୁରର ବିଶିଷ୍ଟ ନେତା ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ର ଏବଂ ନୃସିଂହ ଗୁରୁ ସାଧାରଣତଃ ପ୍ରତ୍ୟେକ ପ୍ରଶିକ୍ଷଣ ଦଳରେ ଭାଷଣ ଦେବାପାଇଁ ନିମନ୍ତ୍ରିତ ହୋଇ ଆସିଥାନ୍ତି । ସେହି ଜିଲ୍ଲାରେ ଏହିପରି ୪/୫ ଦଳ ଶିକ୍ଷାଲାଭ କଲାପରେ କେନ୍ଦ୍ରବନ୍ଦ ହୋଇଗଲା । ବୁର୍ଲାଯାଇ ପ୍ରମୋଦ ପାଖରେ ୪/୫ ରହି କଟକ ଫେରିଲି । ଯେତିକିଦିନ ଶିକ୍ଷା ଦେବାକୁ ପଡ଼େ ମାସିକ ଟ ୨୦୦ ଙ୍କା ହିସାବରେ ସେତିକି ଦିନର ଦରମା ମିଳେ ଏବଂ ଗସ୍ତଖର୍ଚ୍ଚ ମିଳେ ।

କେତେ ଦିନ ପରେ ସୁନ୍ଦରଗଡ଼ ଠାରେ ଆଉ ଏକ ପ୍ରଶିକ୍ଷଣ କେନ୍ଦ୍ର ଆରମ୍ଭ ହେଲା । ଏଥର ମୋର ସହକର୍ମୀ ଭାବରେ ସମବାୟ ବିଭାଗ କର୍ମଚାରୀ ଶ୍ରୀ ପ୍ରମୋଦ ଚନ୍ଦ୍ର ମିଶ୍ର ଯୋଗ ଦେଇଥିଲେ । ଶ୍ରୀ ରଘୁନାଥଜୀ ମନ୍ଦିରରେ ଏହି କେନ୍ଦ୍ରସ୍ଥାପିତ ହୋଇଥିଲା । ସେହି ମନ୍ଦିରର ଗୋଟିଏ ଘର ଆମକୁ ବସା ଦିଆଯାଇଥିଲା । ମଠ ମହନ୍ତ ଜଣେ ରାମାନୁଜ ସଂପ୍ରଦାୟୀ, ସେ ମୋର ଧର୍ମନିଷ୍ଠା ଏବଂ ରାମଭକ୍ତି ଦେଖି ପ୍ରୀତ ହୋଇଥିଲେ, ଏବଂ ମନ୍ଦିର ଭୋଗରୁ ମୋ ପାଇଁ ଖାଦ୍ୟ ବ୍ୟବସ୍ଥା କରିଥିଲେ । ପ୍ରମୋଦ ବାବୁ ହୋଟେଲରେ ଖା'ନ୍ତି ।

ସୁନ୍ଦରଗଡ଼ ଏକ ପରିଷ୍କାର, ପରିଚ୍ଛନ୍ନ, ସୁନ୍ଦର ସହର । ରାସ୍ତାର ପ୍ରତ୍ୟେକ ବାଲି କଣାରେ ଅଭ୍ରମିଶ୍ରିତଥିବାରୁ ସୂର୍ଯ୍ୟ କିରଣରେ ଜକ୍‌ଜକ୍ ଦେଖାଯାଏ । ରାସ୍ତା କଡ଼ରେ ଖାଲି ବେଲଗଛ । ବଡ଼ ବଡ଼ ବେଲ । ବେଲ ଦେଖି ବଡ଼ ଈର୍ଷା ଜାତ ହେଲା । କାରଣ ଆମ ଗଞ୍ଜାମରେ କେବଳ ବଣମାନଙ୍କରେ ଖୁବ୍ ଛୋଟ ଛୋଟ ବେଲମିଳେ । ମୁଁ ରହିବା ଘର

ବାରିପଟେ ଏକ ବେଲଗଛ । ସେଥିରୁ ଦିନରାତ୍ରି ଟପ୍ ଟାପ୍ ହୋଇ ପାଚିଲା ବେଲ ପଡୁଥାଏ । କେତେ ଖାଇବ ? ମୁଁ ସେସବୁ ସଂଗ୍ରହ କରି ତାର ରସ ବାହାର କରି ଆମ୍ବସଢ଼ା କଲାପରି ଖଲିମାନଙ୍କରେ ଶୁଖାଇ ରଖେ । ସେଥିରୁ ଗୁଡ଼ାଏ କଟକ ଆଣିଥିଲି । ମୋର ବଡ଼ ପୁଅ ପ୍ରଫୁଲ୍ଲ ସେଥିରୁ କିଛି କିଛି ରାତିରେ ପାଣିରେ ବତୁରାଇ ସକାଳେ ସରବତ କରିଖାଏ । ତଦ୍ୱାରା ତାର ପେଟର ବିଶେଷ ଉପକାର ସାଧିତ ହୋଇଥିଲା ।

ଶ୍ରୀ ରଘୁନାଥ ମନ୍ଦିର ପଛପଟେ ପିଣ୍ଡାରେ ବସି ମୁଁ ସକାଳେ ଓ ସନ୍ଧ୍ୟାରେ ପ୍ରାର୍ଥନା କରେ । ମହନ୍ତ ମହାଶୟ କିଛି କିଛି ସଂସ୍କୃତ ପଢ଼ିଥାନ୍ତି । ତାଙ୍କ ସହ ସମୟେ ସମୟେ ସଂସ୍କୃତ ଚର୍ଚ୍ଚା ହୁଏ । ରଜାଘର ନଅର ଭିତରେ ଅନେକ ମନ୍ଦିର । ସେଠାର ଦେବୀମନ୍ଦିର ବଡ଼ ପ୍ରସିଦ୍ଧ । ଦଶହରା ପୂଜା ବେଳେ ପଶୁବଳି ଦିଆଯାଏ । ରଜାଙ୍କ ରାଜତ୍ୱ କାଳରେ ବହୁ ପରିମାଣରେ ପଶୁବଳି ଦିଆଯାଉଥିଲା । ସୁନ୍ଦରଗଡ଼ ଜିଲ୍ଲାର ବିଭିନ୍ନ ଗ୍ରାମ ପଞ୍ଚାୟତ ମାନଙ୍କରେ ସରପଞ୍ଚ ଓ ପଞ୍ଚାୟତ ସମିତି ମାନଙ୍କର ସଭ୍ୟମାନେ ପ୍ରଶିକ୍ଷଣରେ ଯୋଗ ଦେଇଥାନ୍ତି । ସେମାନଙ୍କର ବ୍ୟବହାର ବଡ଼ ସରଳ ଏବଂ ମଧୁର ।

ଢ଼େଙ୍କାନାଳରେ ଆଉ ଏକ ପ୍ରଶିକ୍ଷଣ କେନ୍ଦ୍ର ଆଉ କିଛି ଦିନପରେ ହୋଇଥିଲା । ଗ୍ରୀଷ୍ମାବକାଶ ଯୋଗୁଁ ଉଚ୍ଚ ଇଂରାଜୀ ବିଦ୍ୟାଳୟ କାର୍ଯ୍ୟ ବନ୍ଦ ଥିଲା । ବିଦ୍ୟାଳୟର ଛାତ୍ରାବାସରେ ପ୍ରଶିକ୍ଷଣ କେନ୍ଦ୍ର ଚାଲିଲା । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଜଣେ ତେଲୁଗୁ ଭଦ୍ରବ୍ୟକ୍ତି । ବ୍ୟବହାର ଅତି ସୁନ୍ଦର । ମୋର ତୃତୀୟ ପୁତ୍ର ପ୍ରଶାନ୍ତ ଚନ୍ଦ୍ର ଏଠା ଜିଲ୍ଲା କଲେକ୍ଟର ଅଫିସରେ ସାର୍ଟିଫିକେଟ ଅଫିସର ଥିଲା । କଲେକ୍ଟରଙ୍କ ତରଫରୁ ସେ ଆମ୍ଭମାନଙ୍କର ରହିବା ଓ କ୍ଲାସ୍ କରିବା ଇତ୍ୟାଦି ସକଳ ପ୍ରକାର ବ୍ୟବସ୍ଥା କରିଥିଲା । ଢ଼େଙ୍କାନାଳ ଜିଲ୍ଲାର ବିଭିନ୍ନ ପଞ୍ଚାୟତରୁ ବହୁ ସରପଞ୍ଚ ଓ ପଞ୍ଚାୟତ ସମିତି ସଭ୍ୟ ଦଳ ଦଳ ହୋଇ ଆସି ଯୋଗ ଦେଇଥାନ୍ତି । ଏଠା ଶେଷ ରାଜାଙ୍କ ପ୍ରଜାମାନଙ୍କ ଉପରେ ଓ ରାଜକର୍ମଚାରୀମାନଙ୍କ ଉପରେ ହେଉଥିବା ଦୁର୍ବ୍ୟବହାର ଏବଂ ଅତ୍ୟାଚାର ପ୍ରଭୃତି ସେମାନେ ବର୍ଣ୍ଣନା କରନ୍ତି । କେତୋଟି ଅତ୍ୟାଚାର କାହାଣୀ ନିମ୍ନରେ ବର୍ଣ୍ଣନା କରାଗଲା ।

ଜିଲ୍ଲା ପରିଷଦ ଚେୟାରମ୍ୟାନ ଶ୍ରୀ ବ୍ରଜକିଶୋର ଧଳଙ୍କ ସହ ସାକ୍ଷାତ ହୋଇଥିଲା । ପ୍ରଜାଙ୍କ ଉପରେ ହେଉଥିବା ଅତ୍ୟାଚାର ବର୍ଣ୍ଣନା କରି ସେ କହିଲେ''ଏ ରାଜ୍ୟରେ ଆମ୍ଭେମାନେ ବଡ଼ ଆତଙ୍କରେ ବାସ କରୁଥିଲୁ । ଯାହା ଉପରେ କୌଣସି କାରଣରୁ ରାଜାଙ୍କର କୋପ ଦୃଷ୍ଟି (ଶନିଦୃଷ୍ଟି) ପଡ଼େ ତାକୁ ନଅରକୁ ଡ଼କାହୁଏ । ମେହେନ୍ତର ଦ୍ୱାରା ଗୁହ ଅଣାଇ ତା' ମୁହଁରେ ମଡ଼ାଯାଏ । ଭଦ୍ରତା ରକ୍ଷାକରି ମହା ସତର୍କରେ ଆମ୍ଭମାନଙ୍କୁ ଚଳିବାକୁ ପଡ଼େ ।''

ପ୍ରଶିକ୍ଷଣ ଲାଭ କରୁଥିବା ପଞ୍ଚାୟତ ସରପଞ୍ଚ ଏବଂ ସମିତି ସଭ୍ୟମାନଙ୍କ ଠାରୁ ସେମାନେ ଅଙ୍ଗେ ନିଭେଇଥିବା ଅନେକ କରୁଣ କାହାଣୀ ଶୁଣିଥିଲି । ସେଥିରୁ କେତୋଟି

ନିମ୍ନରେ ଦିଆଗଲା ।

୧. ରାଜ୍ୟର ପ୍ରଜାମାନଙ୍କୁ ଭୟ ପ୍ରଦର୍ଶନ କରିବା ଏବଂ ସେମାନଙ୍କୁ ଚିର ପଦାନତ କରିବା ପାଇଁ ସେ ରାଜ୍ୟରେ ଏକ ବିଚିତ୍ର ଧରଣର ରାଜପ୍ରଣାମ ପ୍ରଚଳିତ ଥାଏ । ରାଜାଙ୍କ ଗାଡ଼ି ଆସିବା ମାତ୍ରେ ସେଥିରେ ରାଜା ଥାନ୍ତୁ ବା ନଥାନ୍ତୁ ଯେ ଯେଉଁଠାରେ ଥିବେ ସାଙ୍ଗେ ସାଙ୍ଗେ ଉଠି ଚାଦର ବା ଗାମୁଛା ଯାହା ଧରିଥିବେ ତାକୁ ଚଉତି ତଳେ ରଖି ତା ଉପରେ ମୁଣ୍ଡିଆମାରି କହିବେ ''ଏମୁଣ୍ଡ, ଏପିଣ୍ଡ, ଏ ବ୍ରହ୍ମାଣ୍ଡ ସବୁ ଶ୍ରୀଛାମୁଙ୍କ ପାଦତଳେ'' ଏପରି କହି ମୁଣ୍ଡପିଣ୍ଡ ବ୍ରାହ୍ମଣକୁ ସ୍ପର୍ଶକରି ତିନିଥର ପ୍ରଣାମ କରିବେ ।

୨. ଥରେ ଜଣେ ଲୋକ ରାଜଦାଣ୍ଡରେ ଯାଉଥିଲେ । ଭଲ ସୁନ୍ଦର ନିଶ ରଖିଥାନ୍ତି । ଦୈବାତ୍ ରାଜା ସେବାଟଦେଇ ଯାଉ ଯାଉ ତାଙ୍କ ନିଶ ଉପରେ ଦୃଷ୍ଟି ପଡ଼ିଗଲା । ରାଜା ଗନ୍ତବ୍ୟ ପଥରେ ନଯାଇ ସେଇଠାରୁ ନଅରକୁ ଫେରିଲେ ଏବଂ ପିଆଦିଆ ପଠାଇ ସେ ନିଶୁଆ ଲୋକଟିକୁ ନଅରକୁ ଅଣାଇଲେ । ଗୋଲାକାର ଦର୍ବାର ଘରର ଚାରିଆଡ଼େ ଚୌକି ପଡ଼ିଥାଏ । ପାତ୍ର, ମନ୍ତ୍ରୀ, ରାଜା ଏବଂ ରାଜଭ୍ରାତା ମାନେ ବସିଲେ । ସୁନାରୀ ଘରୁ ଶଣ୍ଢୁଆସି ଅଣାଗଲା । ଦୁଇ ଚାରିଜଣ ପିଆଦିଆ ସେ ନିଶୁଆ ଲୋକଟିକୁ ଚିତିକରି ଶୁଆଇ ତାକୁ ମାଡ଼ି ବସିଲେ । ଅନ୍ୟ ଜଣେ ଛାତି ଉପରେ ବସି ଶଣ୍ଢୁଆସି ଦ୍ୱାରା ଗୋଟି ଗୋଟିକରି ନିଶ ଉପାଡ଼ିଲା । ଲୋକଟି ଛଟପଟ ହୋଇ ବିକଳରେ କାନ୍ଦୁଥାଏ । ଏଣେ ଗୋଲାକାରରେ ବସିଥିବା ମହାନୁଭବମାନେ ହସି ହସି ଗଡ଼ୁଥାନ୍ତି । କି ଅହେତୁକ ନିଷ୍ଠୁର ଅତ୍ୟାଚାର ଓ ପୀଡ଼ାଦାନ ଆମୋଦ !!! ମାନବିକତା ବିହୀନ କି ବିକୃତ ବିକଟ ପ୍ରଦର୍ଶନ । ସେ ଲୋକଟିର ଆଉ କିଛି ଦୋଷ ନଥିଲା । କେବଳ ସୁନ୍ଦର ନିଶ ରଖିଥିଲା । ଏହା ରାଜାଙ୍କ ଅସହ୍ୟ ହେଲା । ଏ ସମ୍ପର୍କରେ ପାରଳା ଖେମଣ୍ଡି ମହାରାଜାଙ୍କର ଗୋଟିଏ କଥା ମନେ ପଡ଼େ । ପାରଳା ଖେମଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କ ଦୃଷ୍ଟିରେ ଥରେ ଜଣେ ଭଲ ନିଶ ରଖିଥିବା ଲୋକ ପଡ଼ିଥିଲା । ସେ ତାକୁ ନଅରକୁ ଡ଼କାଇ ନେଇ ସେ ନିଶକୁ କିମିତି ଯତ୍ନ ନେଇ ରଖିଛି, ଏଡ଼େ ସୁନ୍ଦର କିମିତି ସଜେଇଛି ସବୁ ପଚାରିଲେ । ତାକୁ ନଅରରେ ଖାଇବାକୁ ଦେଲେ ଏବଂ ଟ୧୦୦ଙ୍କା ପୁରସ୍କାର ଦେଇ ବିଦାୟ କଲେ । ଉଭୟ ଘଟଣା ତୁଳନୀୟ ।

୩. ଥରେ ଢେଙ୍କାନାଳ ''ବଡ଼ଜେନା ଉଚ୍ଚ ଇଂରାଜୀ ବିଦ୍ୟାଳୟ''ର ଜଣେ ଗ୍ରାଜୁଏଟ୍ ଶିକ୍ଷକଙ୍କ ସହ ବିଦ୍ୟାଳୟର ସେକ୍ରେଟାରୀ- ରାଜାଙ୍କ ଭାଇଙ୍କର ଅପଡ଼ ହେଲା । ସେ ରାଜଦରବାରକୁ ଡ଼କରା ହେଲେ । ସେଇ ଗୋଲାକାର ଦରବାର ଘରେ ପୂର୍ବ ବର୍ଣ୍ଣିତ ପ୍ରକାରେ ସମସ୍ତେ ବସିଲେ । ଶିକ୍ଷକଙ୍କୁ ଗଧ ବେଶ ପକାହେଲା । ଗଧ ଟୋପି ପିନ୍ଧାଇ ଦିଆଗଲା । ଗଧ ପରି ହାମୁଡ଼ି ଚାଲିବାକୁ କୁହାଗଲା । ଜଣେ ଚପରାସି

ଛାଟରେ ବାଡ଼େଇ ଓଡାଇ ଓଡାଇ ସେ ଗୋଲାକାରରେ ବସିଥିବା ଲୋକମାନଙ୍କର ଆଗରେ ଚଳାଇଲା । ସମସ୍ତେ ହସି ହସି ଆମୋଦ ଅନୁଭବ କରୁଥାନ୍ତି । ହାୟ ! ବିଂଶ ଶତାବ୍ଦୀ ସଭ୍ୟଯୁଗରେ ମଧ ଏ ବର୍ବରତା ! ଏଭଳି ଅମାନୁଷିକ ବ୍ୟବହାର !

୪. ଆଉଜଣେ ନିଜର ଅନୁଭୂତି ବର୍ଣ୍ଣନା କଲେ, ''ଦିନେ ମୁଁ ଖରାରେ ସାଇକଲ୍ ଚଢ଼ି ଆସୁଥିଲି । ରାସ୍ତାରେ ଖଣ୍ଡେ ଦୂରରେ ଏକ ପାହାଡ଼ ତଳେ ରାଜା ଓ ରାଣୀ ବସିଥାନ୍ତି । ଚପରାସିମାନେ ବନ୍ଧୁକଚାଳନା ଶିକ୍ଷା କରୁଥାନ୍ତି । ମୁଁ ସେ ଆଡ଼କୁ ଟିକିଏ ଚାହିଁ ରହିଲି । ରଜାଙ୍କ ଦୃଷ୍ଟି ମୋ ଉପରେ ପଡ଼ିଯାଇ ଥିବ । ଦୁଇଜଣ ଚପରାସିକୁ ଦଉଡ଼ାଇ ମତେ ଡ଼କାଇ ପଠାଇଲେ । ସେ ଦୁଇଜଣ ମୋର କାନ ଦୁଇଟି ଦୁଇଆଡୁ ଧରି ଧାଇଁ ଧାଇଁ ମତେ ଓଟାରି ନେଲେ । ରାଜାଙ୍କ ଛାମୁରେ ହାଜର କରାଇଲେ । ରାଜାତ ଲୋକଙ୍କ ସହିତ କଥା ହେବେନାହିଁ । ସେଥିରେ ରାଜମର୍ଯ୍ୟାଦା ହାନି ହେବ । ସେ ଅନ୍ୟ ଦ୍ୱାରା ମତେ ପ୍ରଶ୍ନ କରୁଥାନ୍ତି ଏବଂ ମୋ ଉତ୍ତର ସେ ନିଜେ ଶୁଣି ପାରୁଥିଲେ ସୁଦ୍ଧା ଅନ୍ୟଜଣେ ମୋ ତୁଣ୍ଡରୁ ଛଡ଼ାଇ ତାଙ୍କୁ କହୁଥାଏ । ରଜା କହିଲେ ''ଆରେ ପଚାର ସେ ସେଠାରେ କ'ଣ କରୁଥିଲା ।'' ପିଆଦିଆ ଜଣେ ମତେ ପଚାରିଲେ ''ଆବେ ସେଠାରେ କ'ଣ କରୁଥିଲୁ ?'' ''ହାଲିଆ ମାରୁଥିଲି'' । ''ମହାରାଜ ! ହାଲିଆ ମାରୁଥିଲା ।'' ପଚାର ଏଆଡ଼େ କାହିଁକି ଚାହୁଁଥିଲା ? ''ବନ୍ଧୁକ ଶବ୍ଦ ଶୁଣି ଦେଖୁଥିଲି ମହାରାଜ !'' ''ମହାରାଜ, ବନ୍ଧୁକ ଶବ୍ଦ ଶୁଣି ଦେଖୁଥିଲା ।'' ପଚାର ତାକୁ ବନ୍ଧୁକ ଚାଳନା ଆସୁଛି କି ? ''ଆରେ ବେ, ବନ୍ଧୁକ ଲଛିବାର ଜଣା କି ? ''ହଁ ଟିକିଏ ଜାଣେ ମହାରାଜ'', ଆଚ୍ଛା ତାକୁ ଯାଅ ବୋଲି କହ । ''ଆରେ ବେ, ରାଜାଙ୍କ ଆଜ୍ଞାହେଲା ଯାଆ ।'' ଯାଉଁ ଯାଉଁ କୁହାଗଲା ''ଦୌଡ଼ିଯାଅ, Double March । '' ମୁଁ ସେପରି କଲି । ପୁଣି ଦୁଇଜଣ ଆସି ପୂର୍ବ ପରି କାନଧରି ଟାଣିନେଲେ । ରାଜା କହିଲେ ତାକୁ କହ ଏକଥା କାହାକୁ କହିବ ନାହିଁ । ''ଆରେ ବେ, ଛାମୁଙ୍କ ଆଦେଶ ଏକଥା କାହାକୁ କହିବୁ ନାହିଁ । ଯାଅ, ଦୌଡ଼ିଯାଅ, Double March ।'' ମୁଁ କାନ ଆଉଁସି ଆଉଁସି ଦୌଡ଼ିଆସି ସାଇକେଲ୍ ଧରି ପ୍ରାଣବିକଳରେ ଚାଲିଆସିଲି ।

ସେହି ବାବୁ ପୁଣି ତାଙ୍କର ଅନ୍ୟ ଏକ ଅନୁଭୂତି ପ୍ରକାଶ କଲେ ।

୫. ରାଜା ପାରିଧିକି ବିଜେ କରିବେ- ଆଖପାଖ ଗାଁ ମାନଙ୍କରେ ଧେଣ୍ଡୁରା ଦିଆଯିବ ଲୋକେ ଚୂଡ଼ା, ଚାଉଳ ଧରି ଠେଙ୍ଗା, ବାଡ଼ି, ଖଣ୍ଡା, ବର୍ଛା, ବନ୍ଧୁକ ଧରି ଆସିବେ । ବଣ ମଝିରେ ଏକ ମଞ୍ଚ ତିଆରି ହୋଇଥିବ । ରାଜା ତା' ଉପରେ ବନ୍ଧୁକ ଧରି ବସିବେ । ଲୋକେ ଚାରିଦିଗରୁ ଜନ୍ତୁ ଖେଦି ଆଣିବେ । ଜନ୍ତୁଦେଖିଲେ ରାଜା ଗୁଳି କରି ମାରିବେ । ଏପରି ଥରେ ଆମ ଘର ପାଳି ଅନୁସାରେ ମୁଁ ବନ୍ଧୁକ ଧରି ଯାଇଥିଲି । ଖେଦା ହୋଇ ଆସିଥିବା ଏକ ଜନ୍ତୁକୁ ରଜା ଗୁଳିକଲେ, କିନ୍ତୁ ଫିଟିଗଲା । ମୁଁ ଗୁଳି କରି ଜନ୍ତୁଟିକୁ ମାରିଦେଲି । ରଜା ଓହ୍ଲାଇଲେ, କିଏ ମାରିଲା ପଚାରିଲେ । ମୁଁ ଗଲି,

ମତେ ଦେଖି ବନ୍ଧୁକଟି ମାଗିନେଲେ । ସମସ୍ତେ ଯେ ଯୁଆଡ଼େ ଚାଲିଗଲୁ ।

କେତେ ଦିନ ପରେ ରଜା ଆମ ଗାଁକୁ ବିଜେ ହୋଇଥିଲେ । ମତେ ଦେଖି କହିଲେ ବନ୍ଧୁକ ଆଣିଲୁ ? ମୁଁ ନାହିଁ କଲି, ନଅରକୁ ଆସି ନେଇ ଆସିବାକୁ କହିଲେ । ନଅରକୁ ଗଲି । ଭଙ୍ଗା ରୁଜା ଛେଚା, କଚଡ଼ା ଅବସ୍ଥାରେ ବନ୍ଧୁକଟି ଦିଆଗଲା । ଜଣେ ଇଂରାଜୀ ଅଫିସର ମୋର ବାପାଙ୍କୁ ସାହେବଙ୍କର କୌଣସି ଏକ ଦୂରାରୋଗ୍ୟ ବ୍ୟାଧି ଭଲ କରି ଦେଇଥିବାରୁ ସେ ବନ୍ଧୁକଟି ପୁରସ୍କାର ଦେଇଥିଲେ । ଖୁବ୍ ମଜବୁଦ୍ double barrel ବନ୍ଧୁକ । ରାଜା ନିଜେ ହେଲେ ରଖି ବ୍ୟବହାର କରିଥାନ୍ତେ । ଏପରି କୁଟୁକୁଟା କରି ଫେରାଇବା ଦ୍ୱାରା ତାଙ୍କର କି ଲାଭ ହେଲା ସେ କେବଳ ଜାଣନ୍ତି ।

୬. ରାଜା ଢ଼େଙ୍କାନାଳ ଗଡ଼ ନିକଟ ଏକ ପାହାଡ଼ ଉପରେ ଏକ ନଅର ତୋଳାଇବା କାମ ଆରମ୍ଭ କଲେ । ରାଜ୍ୟର ପ୍ରତ୍ୟେକ ଗାଁରୁ ପ୍ରଜାମାନେ ଚୂଡ଼ା ଚାଉଳ ଧରି ରାଜାଙ୍କ ଆଦେଶରେ ବେଠି କରିବା ପାଇଁ ରୁଣ୍ଡ ହେଲେ । ପାହାଡ଼ ଉପରକୁ ପାଣି, ପଥର, ବାଲି ବୁହା ହେଲା । ଲୋକେ କହନ୍ତି ହାତୀମାନେ ଏପରି ପଥର ବୁହା କାମରେ କଷ୍ଟରେ ଆଖିରୁ ଲୁହ ଗଡ଼ାଇଥାନ୍ତି । ଲୋକଙ୍କ କଥା କ'ଣ କହିବା !

ଏବେ ସେ ରାଜା, ଘରଦ୍ୱାର, ଜମିବାଡ଼ି, ବଗିଚା, ଆଉ ଅଛି ? ଏକା କଲମ ଗାରକେ ସମଗ୍ର ଭାରତର ସେ ରାଜାଙ୍କର ରାଜା, ମହାରାଜା, ଜମିଦାର ସବୁ ଗଲେ । ଆଉ ସେ ରାଜଭୟ ରାଜ ଅତ୍ୟାଚାର ନାହିଁ । ଘରଦ୍ୱାର ସବୁ ଭାଙ୍ଗି ପଡୁଛି । କାନ୍ଥ ଓ ଚାଳମାନଙ୍କରେ ବରଗଛ ସବୁ ଉଠିଲାଣି । ଏଡ଼େ ଏଡ଼େ ପିଣ୍ଡା, ଏଡ଼େ ଏଡ଼େ ଘର ଚଟାଣ, ଏଡ଼େ ବଡ଼ ପାଟ ଅଗଣାରେ ଆଉ ଛାଞ୍ଚୁଣି ବୁଲିବାକୁ ନାହିଁ ।

ଯଦୁପତେଃ କ୍ୱ ଗତା ମଥୁରାପୁରୀ
ରଘୁପତେଃ କ୍ୱଗତୋତ୍ତର କୋଶଳ ।
ଇତି ବିଚିନ୍ତ୍ୟ କୁରୁଷ୍ୱ ମନଃ ସ୍ଥିରଂ
ନସଦିଦଂ ଜଗଦିତ୍ୟବଧାରୟ ॥

ରାଜମାତାଙ୍କୁ ଦେଖିବାକୁ ଯାଇଥିଲୁ । ପାହାଡ଼ ଉପରେ କୁଞ୍ଜକାନ୍ତ ଠାକୁରଙ୍କ ମନ୍ଦିର ନିକଟରେ ଏକ ସାମାନ୍ୟ ଘରେ ବାସ କରନ୍ତି । ଚିତା କାଟି, ଜପାମାଳି ଧରି ଜପ ତପ କରନ୍ତି । ପୁରାଣ ଶାସ୍ତ୍ର ଶୁଣନ୍ତି । କଥା ପ୍ରସଙ୍ଗରେ କହିଲେ- ପିଲାମାନଙ୍କୁ କେତେ ବୁଝାଇଲି ଉତ୍ପାତ ହୁଅନାହିଁ । ଅନ୍ୟାୟ ଅତ୍ୟାଚାର କରନାହିଁ । ଶୁଣିଲେ ନାହିଁ । ଏବେ ଫଳ ଭୋଗ କରୁଛନ୍ତି ।

## ବାଜି ରାଉତ କଥା

ବାଜି ରାଉତ ଗାଁର ଜଣେ ସମିତି ସଭ୍ୟ ପ୍ରଶିକ୍ଷଣ କେନ୍ଦ୍ରରେ ଯୋଗ

ଦେଇଥିଲେ । ବୟସ୍କ, ଶିକ୍ଷିତ ଏବଂ ଦେଶପ୍ରେମୀ, ପ୍ରଜା ଆନ୍ଦୋଳନରେ ଭାଗ ନେଇଥିଲେ । ବାଜିରାଉତ କଥା ସେ ଯାହା କହିଲେ:-

ହୁଣ୍ଡା ବାଜିଆ ବାଜିରାଉତ ନାମରେ ବିଖ୍ୟାତ ହେଲା, ଶହୀଦ ହେଲା । ତା ନାଁରେ ସଭା ସମିତି ହେଲା । କବିତା ଲେଖା ହେଲା । ପିଲାଙ୍କ ପାଠ୍ୟ ପୁସ୍ତକରେ ତା ଜୀବନୀ ଛପାଗଲା । ତା'ର ବର୍ଣ୍ଣିତ ଚରିତ ଦ୍ୱାରା ଅନେକ ଦେଶପ୍ରେମୀ ଉଦ୍‌ବୁଦ୍ଧ ହେଲେ, କିନ୍ତୁ ସେ ସବୁ ରାଜନୈତିକ କୌଶଳ । ସେ ବାଜିଆ ୧୨/୧୩ ବର୍ଷର ବୟସ ପିଲା ନୁହେଁ । ୨୦ବର୍ଷର ଭେଣ୍ଡା, ବଡ଼ ଦୁଷ୍ଟ, ଉଦ୍ଦଣ୍ଡ । ଘରେ ସେ ଓ ତା'ର ବୁଢ଼ୀମା ମାତ୍ର ଦୁଇଜଣ । କୁଆଡୁ ବୁଲି ବୁଲି ଆସିବ ସାମାନ୍ୟ କଥାରେ ମା'କୁ ଦୂରଦାର ବାଡ଼େଇବ । ସେତେବେଳକୁ ପ୍ରଜା ଆନ୍ଦୋଳନ ପ୍ରାୟ ପ୍ରତ୍ୟେକ ଗ୍ରାମରେ ଚାଲିଥାଏ । ରଜାଘର ପ୍ରତ୍ୟେକ ଗ୍ରାମରେ ଗୋଇନ୍ଦା ରଖିଥାନ୍ତି ପ୍ରଜା ଆନ୍ଦୋଳନର ଗୁପ୍ତ ଖବର ସଂଗ୍ରହ କରିବାକୁ । ଏ ବାଜିଆ ସେହି ପରି ଗୋଟିଏ ଗୋଇନ୍ଦା, ଗାଁ ଆନ୍ଦୋଳନର ଗୁପ୍ତ ଖବର ନେଇ ରଜାଘରେ ଦିଏ । ପଇସା ପାଏ, ଗାଁ ଲୋକେ ଏଥିଯୋଗୁଁ ତା' ଉପରେ ବିରକ୍ତ ଥାନ୍ତି । ଦିନେ ମାକୁ ନିର୍ଘୃମ ମାଡ଼ ଦେଲା । ମା' ତାର ବିକଳରେ ଦାଣ୍ଡରେ ଆସି ଲୋକଙ୍କ ଆଗରେ ଗୁହାରି କଲା । ଲୋକେ ମାରଧର କରିବାକୁ ବସିଲେ । ଧାଇଁ ପଳେଇଲା । ଲୋକଙ୍କ ଅଜଣାରେ ନଈକୂଳରେ ଥିବା ଡ଼ଙ୍ଗାବାଲାଙ୍କ କୁଡ଼ିଆରେ ଲୁଚି ରହିଲା ।

ଏହି ସମୟରେ ପ୍ରଜା ଆନ୍ଦୋଳନର କେତେକ ନେତାଙ୍କୁ ଭୁବନ ଗ୍ରାମରୁ ଧରି ପୋଲିସ ନଈକୂଳକୁ ଆସିଲେ । ଡଙ୍ଗା ବାନ୍ଧିଦେଇ ଖାଇବାକୁ ଯାଇଥାନ୍ତି । ଭୁବନ ଗ୍ରାମବାସୀ ପୋଲିସ୍ ପଛରେ ଗୋଡ଼ାଇଛନ୍ତି । ପୋଲିସ୍ ଡଙ୍ଗାଚଳାଇବା ଲୋକ କାହାରିକୁ ନଦେଖି ଡଙ୍ଗା ଦଉଡ଼ି କାଟି କୟେଦୀମାନଙ୍କୁ ଡଙ୍ଗାରେ ପୂରାଇ ନିଜେ ବସି ଡଙ୍ଗା ଚଳାଇଲେ । ନଈ କୂଳରେ ଭୁବନ ଗ୍ରାମରୁ ଆସିଥିବା ଲୋକେ ପୋଲିସ ଉପରକୁ ଟେକା ପଥର ଫିଙ୍ଗିବାକୁ ଲାଗିଲେ । ପୋଲିସ ଡଙ୍ଗା ଉପରୁ ଗୁଳି ଚଳାଇଲେ । ବାଜିଆତ କୁଡିଆରେ ଲୁଚିଥିଲା । କ'ଣ ଗୋଳମାଳ ହେଉଛି ବୋଲି କୁଡ଼ିଆ ଭିତରୁ ହାମୁଡ଼ି କରି ଆସି ଦେଖିଲା । ଦୈବାତ୍ ଗୁଳିଟିଏ ଯାଇ ତା' ବୁକୁରେ ବାଜିଲା । ସେଇଠି ସେ ଟଳି ପଡ଼ିଲା । ତାରି ଶବକୁ ପ୍ରଜା ଆନ୍ଦୋଳନକାରୀମାନେ ଧରି ପୋଲିସ ପ୍ରଜାଆନ୍ଦୋଳନ କାରୀକୁ ଗୁଳି କରି ମାରିଦେଲେ ବୋଲି ପ୍ରଚାର ଆରମ୍ଭ କରିଦେଲେ । ଶବକୁ ନେଇ ଶୋଭାଯାତ୍ରା କଲେ । ରାଜନୈତିକ ନେତାମାନେ ତାକୁ ନାନାପ୍ରକାର ଚିତ୍ରଣ କରି ଖବର କାଗଜମାନଙ୍କରେ ପ୍ରକାଶ କଲେ । ବାଜିଆ-ଶହୀଦ ବାଜିରାଉତ ହେଲା ।

କବି ସଚି ରାଉତରାୟ ବାଜିରାଉତ କବିତା ଲେଖିଲେ । ତାର ଇଂରାଜୀ ଅନୁବାଦ ହୋଇ ମଧ୍ୟ ପ୍ରଚାରିତ ହେଲା ।

|| ୧୬୨ ||

# ବ୍ରହ୍ମ ଅବଧୂତ ବିଶ୍ୱନାଥ ବାବାଙ୍କ ଦର୍ଶନ

ଏହି ଢ଼େଙ୍କାନାଳ ଅବସ୍ଥାନ କାଳରେ କେତେଜଣ ମହିମା ଧର୍ମାବଲମ୍ବୀ ସରପଞ୍ଚଙ୍କ ଠାରୁ ଜାଣିପାରିଲି ଯେ ମହିମା ଧର୍ମର ଗୁରୁ ଅବଧୂତ ବିଶ୍ୱନାଥ ବାବା ସେଠାକୁ ଆସିଛନ୍ତି । ବହୁ ଦିନରୁ ତାଙ୍କୁ ଦର୍ଶନ କରିବା ଅଭିଳାଷ ଥିଲା । ସେ ବିଜେ କରିଥିବା ସ୍ଥାନକୁ ଗଲି । ତାଙ୍କୁ ଦେଖିବା ମାତ୍ରେ ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ଅବଧୂତ ସନ୍ୟାସୀ କଥା ମନେ ପଡ଼ିଲା । ସୁଦୀର୍ଘକାୟ, ଗୌରବର୍ଣ୍ଣ, ପ୍ରସନ୍ନମୁଖ, ଖଣ୍ଡିଏ କୁମ୍ଭୀପଟ କୌପୀନ ମାତ୍ର ପରିଧାନ । ଗୋଟିଏ ବଡ଼ ତାଳପତ୍ର ପଙ୍ଖା ଧରିଥାନ୍ତି । ଦେଖିଲେ ସ୍ୱତଃ ଭକ୍ତି ଜାତ ହୁଏ । ବୃଦ୍ଧାବସ୍ଥା ହେଲେ ମଧ୍ୟ ଯୁବକ ଭଳି କର୍ମତତ୍ପର । ଗୋଟିଏ ଗୋଡ଼ରେ କେବେ ବ୍ରଣ ହୋଇଥିଲା । ସେଥିଯୋଗୁଁ ଚାଲିବାରେ କଷ୍ଟ ହୁଏ । ମହିମା ଧର୍ମର ସନ୍ୟାସୀମାନେ ତ ଗୋଟିଏ ସ୍ଥାନରେ ଦିନକରୁ ଅଧିକ ରହନ୍ତି ନାହିଁ । ତେଣୁ ଗୋଟିଏ ରିକ୍ସାରେ ତାଙ୍କ ଶିଷ୍ୟମାନେ ନିଜେ ଟାଣି ତାଙ୍କୁ ବିଭିନ୍ନ ସ୍ଥାନକୁ ନେଇଥାନ୍ତି । ଏପରି ଭାବରେ ସେ ଗାଁକୁ ଗାଁ ହୋଇ ସମଗ୍ର ଓଡ଼ିଶା ଭ୍ରମଣ କରି ଧର୍ମ ପ୍ରଚାର କରିଥାନ୍ତି । ତାଙ୍କ ସହ ଆଳାପ ହେଲା । କି ମଧୁର ବ୍ୟବହାର ! କି କୋମଳ କଥା ! କେଡ଼େ ଆଦର ! ଏହି ସିନା ସନ୍ୟାସୀର ଲକ୍ଷଣ । ସେ ଜଣେ ସଂସ୍କୃତ ପଣ୍ଡିତ, ମହିମା ଧର୍ମ ସଂପର୍କରେ ବହୁଗ୍ରନ୍ଥ ପ୍ରଣୟନ କରିଛନ୍ତି । ତାଙ୍କଦ୍ୱାରା ସଂକଳିତ "ସର୍ବ ବେଦାନ୍ତ ସାରସଂଗ୍ରହ ମହିମା ଦର୍ଶନ" ବିଶାଳଗ୍ରନ୍ଥ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶିତ ହୋଇଛି, ଏବଂ "ଭାଗବତ ସାର ସତ୍ୟଧର୍ମ" ଗ୍ରନ୍ଥଟି ମଧ୍ୟ ବିଶେଷ ଉପାଦେୟ । ମୋର ନିମ୍ନଲିଖିତ ସଂସ୍କୃତ ଶ୍ଳୋକର ଗୋଟିଏ ଚରଣ ମନେ ନଥିଲା । ଅନେକ ପଣ୍ଡିତଙ୍କୁ ପଚାରିଥିଲି, କେହି କହିପାରିନଥିଲେ । ତାଙ୍କୁ ପଚାରିବା ମାତ୍ରେ ସଙ୍ଗେ ସଙ୍ଗେ ତାହା ପୂରଣ କରିଦେଇଥିଲେ । ୧୯୨୪ ସାଲରେ ଶାନ୍ତି ନିକେତନରେ ମହାତ୍ମାଗାନ୍ଧୀଙ୍କୁ ଦର୍ଶନ କରି ବଡ଼ଦା (ରବୀନ୍ଦ୍ର ନାଥ ଠାକୁରଙ୍କ ବଡ଼ଭାଇ ଦ୍ୱିଜେନ୍ଦ୍ରନାଥ ଠାକୁର) ଏହି ଶ୍ଳୋକଟି କହିଥିଲେ ।

"ବିପଦ୍ ସଂପଦିବା ଭାତି ମୃତ୍ୟୁଶ୍ଚାପ୍ୟମୃତାୟତେ ।
ଶୂନ୍ୟଂ ସଂପୂର୍ଣ୍ଣତାମେତି ବିଦ୍ୱଜ୍ଜନ ସମାଗମାତ୍ ।"

ଢ଼େଙ୍କାନାଳରୁ ଥରେ ମୁଁ ମହିମା ଗାଦୀ ଦେଖିଯାଇଥିଲି । ସେଦିନ ମାଘ ପୂର୍ଣ୍ଣମା- ବାର୍ଷିକ ମହୋତ୍ସବ । ବିଭିନ୍ନ ପ୍ରଦେଶରୁ ବହୁ ମହିମାଧର୍ମାବଲମ୍ବୀ (ସନ୍ୟାସୀ, ଗୃହୀ) ଆସିଥିଲେ । ଏହି ଉପଲକ୍ଷେ ପ୍ରତିବର୍ଷ ଏଠାରେ ସପ୍ତାହ ବ୍ୟାପୀ ବିରାଟ ମେଳା ହୁଏ । ଆଖ ପାଖ ଗାଁ ମାନଙ୍କରେ ଆବାଳ ବୃଦ୍ଧ ବନିତା ଯୋଗ ଦେଇଥାନ୍ତି । ବହୁ ଜନ ସମାଗମ ହୁଏ । ସେଠାରେ ବିଶ୍ୱନାଥ ବାବାଙ୍କୁ ୨ୟ ଥର ଦର୍ଶନ କରିଥିଲି ।

ସେ ମୋ ପ୍ରତି ଅନୁଗ୍ରହ ପ୍ରକାଶ କରି ଉତ୍କଳ ପ୍ରାଦେଶିକ ମହିମା ସମିତିର

ଏକ ସଭ୍ୟ ରୂପେ ଗ୍ରହଣ କରିଛନ୍ତି ।

ଢେଙ୍କାନାଳ ପ୍ରଶିକ୍ଷଣ କେନ୍ଦ୍ର ଶେଷ ହେବାପରେ ପୁଣି ଥରେ ସମ୍ବଲପୁରରେ ୨ୟ ପ୍ରଶିକ୍ଷଣ କେନ୍ଦ୍ର ଖୋଲାଯାଇଥିଲା । ଯଥା ସମୟରେ ଏହା ଶେଷ ହେବାପରେ ଏହି ଯୋଜନାର ପରିସମାପ୍ତି ଘଟିଥିଲା । ସରକାରଙ୍କ ସବୁ ଯୋଜନା ତ ଅଢ଼େଇ ଦିନିଆ ।

କଟକ ତିନିକୋଣିଆ ବଗିଚାରେ ଥିବା ସମୟରେ ତା ୧୩/୫/୧୯୬୩ରେ ମୋର ମଧ୍ୟମା କନ୍ୟା ମୃଣାଳିନୀର ବିବାହ କାର୍ଯ୍ୟ ସଂପନ୍ନ ହୋଇଥିଲା । କଟକ ବାହାଦଲାପୁର ଗ୍ରାମ ନିବାସୀ ନିରାକାରପୁର ମହାବିଦ୍ୟାଳୟର ଇଂରାଜୀ ଅଧାପକ ଶ୍ରୀ ବୀରକିଶୋର ଭୂୟାଁ ମହାପାତ୍ରଙ୍କ ସହ ବିବାହ ହୋଇଥିଲା ।

---



ବାଞ୍ଛାନିଧି ପଟ୍ଟନାୟକଙ୍କ ମଧ୍ୟମା କନ୍ୟା ମୃଣାଳିନୀ, ତାଙ୍କ ସ୍ୱାମୀ ଅଧ୍ୟାପକ ଶ୍ରୀ ବୀରକିଶୋର ଭୂୟାଁ ମହାପାତ୍ରଙ୍କ ସହ

---

ତା ୧/୬/୬୫ରେ ସ୍ୱର୍ଗତ ସଂସ୍କାରକ ଶ୍ରୀବହ ପଣ୍ଡାଙ୍କ ଶ୍ରାଦ୍ଧ ଦିବସ କଟକଠାରେ ପାଳନ କରାଯିବା ଯୋଗାଡ଼ କରିଥିଲି । ରାମଚନ୍ଦ୍ର ଭବନରେ ଏକ ସଭା ହୋଇଥିଲା । ବହୁ

ବିଶିଷ୍ଟ ସାହିତ୍ୟିକ ଯୋଗ ଦେଇଥିଲେ । ତାଙ୍କର ଦୁଇଗୋଟି ଚିତ୍ର, ଗୋଟିଏ ରାମଚନ୍ଦ୍ର ଭବନରେ, ଅନ୍ୟଟି ଗୋପବନ୍ଧୁ ଭବନରେ ରଖିବାପାଇଁ ଦେଇଥିଲି । ସେ ଦୁଇଟି ସ୍ଥାନରେ ରଖାଯାଇ ଅଛି । ଶ୍ରୀବତ୍ସ ସ୍ମରଣିକା ଏହିଠାରେ ପ୍ରକାଶିତ ହୋଇଥିଲା । ସେତେବେଳେ ପ୍ରଫୁଲ୍ଲ 'ସମାଜ'ର ଉପ-ସମ୍ପାଦକ ଥାଇ ଏ ଦିଗରେ ସହଯୋଗ କରିଥିଲା ।

## କେନ୍ଦ୍ରାପଡ଼ା ପ୍ରସ୍ଥାନ

ତଦ୍‌ପରେ ଆମେ କେନ୍ଦ୍ରାପଡ଼ା ଗଲୁ । କଟକରେ କେବଳ ପ୍ରଫୁଲ୍ଲ ରହିଲା । ସେ ସେତେବେଳେ 'ସମାଜ' ପତ୍ରିକାର ସହ ସମ୍ପାଦକ କାମରେ ନିଯୁକ୍ତ ହୋଇଥିଲା । ସେତେବେଳର 'ସମାଜ' ସମ୍ପାଦକ ମୋର ସହ-ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଶ୍ରୀହର୍ଷ ମିଶ୍ର ତାକୁ ସହ ସମ୍ପାଦକ ପଦରେ ନିଯୁକ୍ତ କରିଥିଲେ । କେନ୍ଦ୍ରାପଡ଼ାରେ ସେତେବେଳେ ପ୍ରଶାନ୍ତ ବି.ଡ଼ି.ଓ. ଏବଂ ପ୍ରସନ୍ନ ଉଠାଜଳସେଚନର ଆସିଷ୍ଟାଣ୍ଟ ଇଞ୍ଜିନିୟର । ଏହା ୧୯୬୭ ସାଲର କଥା । ପ୍ରସନ୍ନର ବିବାହ ଏହି କେନ୍ଦ୍ରାପଡ଼ା ଅବସ୍ଥାନ କାଳରେ କଟକ କଲ୍ୟାଣପୁର ଗ୍ରାମନିବାସୀ ଅବସରପ୍ରାପ୍ତ ପୋଷ୍ଟମାଷ୍ଟର, ଶ୍ରୀ ଗୌରଚନ୍ଦ୍ର ପଟ୍ଟନାୟକଙ୍କ କନିଷ୍ଠା କନ୍ୟା ତକ୍ଷର



ବାଞ୍ଛାନିଧି ପଟ୍ଟନାୟକଙ୍କ ଚତୁର୍ଥ ପୁତ୍ର ଶ୍ରୀ ପ୍ରସନ୍ନ ଚନ୍ଦ୍ର ଓ ପୁତ୍ରବଧୂ ଶ୍ରୀମତୀ ଶୈଳ

ଶୈଳବାଳାଙ୍କ ସହ ୨/୩/୧୯୬୭ରେ ବିବାହ ହୋଇଥିଲା ।

# ମୋର ଆଧ୍ୟାତ୍ମିକ ସାଧନା

ଏଠାରେ ମୋର ଆଧ୍ୟାତ୍ମିକ ସାଧନାରେ ଉନ୍ନତି ଘଟିଥିଲା । ପ୍ରତିଦିନ ପ୍ରତ୍ୟୁଷରୁ ଶୌଚାଦି କର୍ମଶେଷ କରି ଆମ ବାସଭବନରୁ ପ୍ରାୟ ଅଧମାଇଲ ଦୂରରେ ଥିବା ଏକ ଶିବ ମନ୍ଦିରରେ ଧ୍ୟାନ ପ୍ରାର୍ଥନା କରେ । ମଧ୍ୟାହ୍ନରେ ପୁଣି ଥରେ ଏବଂ ସଂଧ୍ୟାରେ ଗୋଟିଏ କେନାଲ କୂଳରେ ବସି ଧ୍ୟାନ କରେ ।

ଉବନ୍ତୁ ଜର୍ନାଲ୍ ପତ୍ରିକାର ଏକ ବିଜ୍ଞାପନ ଦେଖି ରାଞ୍ଚୀ ଯୋଗଦାଶ୍ରମରୁ ସ୍ୱାମୀ ଯୋଗାନନ୍ଦ ପରମହଂସଙ୍କ ପ୍ରଣୀତ ଯୋଗଦା ପାଠ୍ୟକ୍ରମର ଏକ ଗ୍ରାହକ ହେଲି । ପ୍ରତ୍ୟେକ ମାସରେ ୨/୩ ଗୋଟି ପାଠ ଆସେ । ଏହିପରି ସାଢ଼େ ଛ' ବର୍ଷର ପାଠ । ସେହି ପାଠ୍ୟକ୍ରମ ଅନୁଯାୟୀ ମୁଁ ନିଷ୍ଠାପର ଭାବେ ସାଧନା କଲି । ଏହି କେନ୍ଦ୍ରାପଡ଼ା ଅବସ୍ଥାନ କାଳରେ ପ୍ରଥମ ସୋପାନ ପାଇଥିଲି ।

୧୩/୩/୬୫ରେ ପୁରୀ ଯୋଗଦାଶ୍ରମକୁ ଯାଇଥିଲି । ଏଠାରେ ପରମହଂସ ଯୋଗାନନ୍ଦଙ୍କ ଗୁରୁ ଜ୍ଞାନାବତାର ଯୁକ୍ତେଶ୍ୱର ଗିରିଙ୍କର ସମାଧିପୀଠ ଅଛି । ଆଶ୍ରମର ଅଧ୍ୟକ୍ଷ୍ୟ ସ୍ୱାମୀ ହରିହରାନନ୍ଦ ଗିରି ଜଣେ ଦୀର୍ଘକାୟ ତେଜୀୟାନ ପୁରୁଷ । ରବୀନ୍ଦ୍ର ନାଥଙ୍କ ପରି ସ୍ମଶ୍ରୁ ମଣ୍ଡିତ ପ୍ରସନ୍ନ ମୁଖ । ଗୈରିକ ବସନ ପରିଧାନ । ସର୍ବଦା ବ୍ରହ୍ମାନନ୍ଦରେ ମଗ୍ନ । ଆଶ୍ରମର ସତ୍‌ସଙ୍ଗରେ ଯୋଗ ଦେଲି । ସେଥର ମୁଁ ପ୍ରାୟ ୧୦ ଦିନ ପୁରୀରେ ରହିଥିଲି । ତା' ପୂର୍ବରୁ ଏତେଦିନ ପୁରୀରେ ରହିବା ସୁଯୋଗ ପାଇନଥିଲି । ଦୁଧବାଲା ଧର୍ମଶାଳାରେ ମୁଁ ଏବଂ ମୋର ଜଣେ ବନ୍ଧୁ ମିଶି ରହୁ । ଦିନେ ସକାଳେ ଉକ୍ତ ବନ୍ଧୁଙ୍କ ସାଙ୍ଗରେ ପ୍ରାତଃ ଭ୍ରମଣରେ ଗଲାବେଳେ ଦୂରରୁ ଦେଖିଲି ଆଚାର୍ଯ୍ୟ ହରିହର ଦାସ ମହାଶୟ ତାଙ୍କର ସହକର୍ମୀ, ନିଷ୍ଠାପର ଦେଶ ସେବକ, ସ୍ୱାଧୀନତା ସଂଗ୍ରାମୀ ସଚ୍ଚିଦାନନ୍ଦ ମହାନ୍ତିଙ୍କ କାନ୍ଧରେ ହାତ ଦେଇ ପ୍ରାତଃ ଭ୍ରମଣରେ ଆସୁଛନ୍ତି । ନିକଟକୁ ଯାଇ ପାଦତଳେ ମୁଣ୍ଡିଆ ମାରିଲି, ଦାଣ୍ଡ ମଝିଟାରେ ଏପରି ତଳେ ମୁଣ୍ଡିଆ ମାରିବା ଦେଖି ମୋର ବନ୍ଧୁ ତାଟକା । ସେ କାହିଁକି ଜାଣିବେ ମହାପୁରୁଷମାନଙ୍କୁ କିପରି ଭକ୍ତି କରାଯାଏ । ଆଚାର୍ଯ୍ୟ ମହାଶୟଙ୍କୁ ଦେଖୁ ଦେଖୁ ମୋର ଶରୀର ରୋମାଞ୍ଚିତ ହୋଇଗଲା । ଆଖିରେ ଲୁହ ଛଳ ଛଳ ହୋଇଗଲା । ଭାଷା ଗଦ୍ ଗଦ୍ ହୋଇଉଠିଲା ।

ବନ୍ଦେନାଞ୍ଜଳିନା ନତେନ ଶିରସା ଗାତ୍ରୈଃ ସ ରୋମଦ୍‌ଗମୈଃ
କଣ୍ଠେନ ସ୍ୱରଗଦ୍‌ଗଦେନ ନୟନୋଦ୍‌ଗୀର୍ଣ୍ଣଂ ଚ ବାଷ୍ପାମ୍ବୁନା ।
ଦୁର୍ଲଭଂ ତ୍ରୟମେବୈତଦ୍ ଦୈବାନୁଗ୍ରହ ହେତୁକଂ,
ମନୁଷ୍ୟତ୍ୱଂ ମୁମୁକ୍ଷତ୍ୱଂ ମହାପୁରୁଷ ସଂଶ୍ରୟଂ ।

ଏହିପରି ମହାପୁରୁଷ ମାନଙ୍କର ଦର୍ଶନ, ସ୍ନେହାଳାପ ଓ ଆଶୀର୍ବାଦ

ଦୈବାନୁଗ୍ରହରୁ ମିଳିଥାଏ ।

ମୁଁ ଦେଖା କରୁଛି ବୋଲି ଶୁଣିବା ମାତ୍ରେ କେବେ ଆସିଛ ? କେଉଁଠି ଅଛ ? ପଚାରିଲେ ଏବଂ କହିଲେ "ବାଞ୍ଛାନିଧି ! ଆଜି ଆମ ଆଶ୍ରମରେ ଖାଇବ, ଭଲ ଶାଗ ହୋଇଛି ।" ଏ ଅନୁଗ୍ରହ କିଏ ଉପେକ୍ଷା କରିବ ? ୧୦/୧୧ଟା ବେଳେ ଯାଇ ପହଞ୍ଚିଲି, କୂଅ ମୂଳରେ ସୁନ୍ଦର ଶାଗ କିଆରି, ଶାଗ ଖରଡ଼ା ହୋଇଥିଲା । ଆଚାର୍ଯ୍ୟ ମହାଶୟଙ୍କ ସାଙ୍ଗରେ ବସି ଖାଇଲି । ସେ କେଡ଼େ ଆନନ୍ଦ ହେଲେ । ଗୋବରାରେ, ବ୍ରହ୍ମପୁରରେ ଆମ ଘରେ ଖାଇଥିବା କଥା ମନେ ପକେଇଲେ । ଶୁଣି କୃତକୃତ୍ୟ ହେଲି ।

୨୩/୩/୬୫ରେ ଯୋଗଦାଶ୍ରମରେ ଜ୍ଞାନାବତାର ଯୁକ୍ତେଶ୍ୱର ଗିରିଙ୍କ ତିରୋଧାନ ଦିବସ ପାଳିତ ହେଉଥିଲା । ସେଥିରେ ଯୋଗଦେଲି । ଶ୍ରୀଯୁକ୍ତେଶ୍ୱରଗିରି ପରମହଂସ ଯୋଗାନନ୍ଦଙ୍କ ଗୁରୁ । ସେ ଜଣେ ସିଦ୍ଧଯୋଗୀ ଏବଂ ବିଖ୍ୟାତ ଜ୍ୟୋତିର୍ବିଦ ଥିଲେ । ସେ ଏହି ଆଶ୍ରମ ପ୍ରତିଷ୍ଠା କରି ଏଠାରେ ରହୁଥିଲେ ଏବଂ ଏହିଠାରେ ହିଁ ମହାସମାଧି ପ୍ରାପ୍ତ ହେଲେ ।

୨୮/୩/୬୫ରେ ପୁରୀରୁ ଫେରି ଭୁବନେଶ୍ୱରଠାରେ ଗୋପାଳତୀର୍ଥ ମଠର ମହନ୍ତଙ୍କ ସହ ସାକ୍ଷାତ୍ କଲି । ସେ ଛାତ୍ରାବସ୍ଥାରେ ଶ୍ରୀବହୁଗୋରକ୍ଷାଶ୍ରମରେ ଆମ୍ଭମାନଙ୍କ ଦ୍ୱାରା ପରିଚାଳିତ ସଂସ୍କୃତ ଟୋଲରେ ପଢୁଥିଲେ । କେତେକାଳ ପରେ ଗୋପାଳତୀର୍ଥ ମଠର ତତ୍କାଳୀନ ମହନ୍ତ ଶ୍ରୀ ମହାଦେବ ପ୍ରକାଶ ବ୍ରହ୍ମଚାରୀଙ୍କ ପ୍ରେରଣାରେ ତାଙ୍କର ଚେଲା ହୋଇ ରହିଲେ । ପୁରୀ ସଂସ୍କୃତ କଲେଜରେ ଅଧ୍ୟୟନ କରି ସାହିତ୍ୟାଚାର୍ଯ୍ୟ ଉପାଧି ଲାଭ କରିଛନ୍ତି । ସେତେବେଳେ ସେ ଭୁବନେଶ୍ୱର ମଠରେ ଅବସ୍ଥାନ କରୁଥିଲେ । ତାଙ୍କ ସହ କିଛି ସମୟ କଥାଭାଷା ହୋଇ ଫେରିବା ବେଳେ ସେ କହିଲେ 'ଆସନ୍ତା କାଲି ଏକାଦଶୀ । ଆପଣ ମଠକୁ ଆସିବେ । ଏଠାରେ ଏକାଦଶୀ ପାଳନ କରିବା ।" ସେଦିନ ଭାଇଗୋଦାବରୀ ପ୍ରସାଦର ଘରେ ଆସି ରହିଲି । କାହିଁକି କେଜାଣି ସେଦିନ ରାତିରେ ମୋର ଗୋଟିଏ ନିତାନ୍ତ ମନ୍ଦ ଭାବନା ହୋଇଥିଲା । ପ୍ରଭାତରୁ ଉଠି ବହିର୍ଦ୍ଦେଶ ଯାଉଛି । ଆଲୁଅ ନଧରି ବାହାରକୁ ବାହାରିଛି ଜଣେ ପୁତୁରା କହୁଛି ଆଲୁଅ ଧରି ଯିବାକୁ । ତା କଥା ନ ମାନି ଗୋଡ କାତୁ କାତୁ ପାଉଛରୁ ତଳକୁ ପଡ଼ିଗଲି । ଆଗରେ ଏକ ତୁଳସୀ ଚଉଁରା ଥିଲା । ଟାଇଲ୍‌ରେ ତିଆରି ହୋଇଥିଲା । ମୁଣ୍ଡ ଟାଇଲ୍ ଦାଢ଼ରେ ବାଜି ବଡ଼ ଆଘାତ ହେଲା । ଆଉ ଏକାଦଶୀ ପାଳନ କରିବାକୁ ଯାଇପାରିଲି ନାହିଁ । ରାତ୍ରରେ ମନ୍ଦ ଭାବନା କରିବା ଫଳ ସଦ୍ୟ ମିଳିଲା ।

ନୀତିବାକ୍ୟ ଅଛି-

ତ୍ରିଭିର୍ଦ୍ଦିନୈସ୍ତ୍ରିଭିଃ ପକ୍ଷୈସ୍ତ୍ରିଭିର୍ମାସୈସ୍ତ୍ରିଭିର୍ବର୍ଷୈଃ
ଅତ୍ୟୁକ୍ରଟୈଃ ପାପପୁଣ୍ୟୈରିହୈବ ଫଳମଶ୍ନୁତେ ॥

୧୭/୪/୬୫ରେ କେନ୍ଦ୍ରାପଡ଼ା ଫେରିଲି । ସେଦିନ ୫ଟା ବେଳେ କେନାଲ

କୂଳରେ ଧ୍ୟାନ କରୁଛି ପଛଆଡ଼େ ଗୋଟିଏ କାଉ ଆସି କା' କା' କରି ତିନିଥର ରଡ଼ି ଛାଡ଼ିଲା । ତହିଁଆର ଦିନ କଟକ ଗଲି । ୧୯ ତାରିଖରେ ଫେରିଲି । କେନାଲ କୂଳରେ ଆଉ କାଉ ବୋବାଉ ନାହିଁ । ୨୧ ତାରିଖରେ ପୁଣି ସେ କାଉ ଆସି ପୂର୍ବପରି ତିନିଥର ବୋବାଇ ଚାଲିଗଲା । ୨୨ ତାରିଖରେ ପଛପଟେ କେବଳ ଉଡ଼ି ଚାଲିଗଲା । ଏ କି ଲକ୍ଷଣ ଜଣାଗଲା ନାହିଁ । କାକଶାସ୍ତ୍ର ଯେଉଁମାନେ ଜାଣନ୍ତି ସେମାନେ କହି ପାରନ୍ତି ।

ତା'ପରେ କଟକ ଯାଇ କିଛି ଦିନ ରହିଲି । ୨୧/୫/୬୫ରେ ଏକ ଅଦ୍‌ଭୁତ ସ୍ୱପ୍ନ ଦେଖିଲି । କିଏ ଜଣେ ସାଧୁ ଆସି ଗୋଟିଏ ପାତ୍ରରେ କିଛି ପିଆଇ ଦେଉଛନ୍ତି ।

ଇତି ମଧ୍ୟରେ ଥରେ ଗୋରକ୍ଷାଶ୍ରମ (ତନରଡ଼ା) ଯାଇଥିଲି । ସେଠାରେ ଏକ କନ୍ୟାଶ୍ରମ ଖୋଲାଯାଉଥିବା ଶୁଣିଥିଲି । ମୁଁ ସମ୍ପାଦକ ଥିବା ସତ୍ତ୍ୱେ ଗଞ୍ଜାମ ଛାଡ଼ି କଟକରେ ରହିଯିବା ଯୋଗୁଁ ଟ୍ରଷ୍ଟ ବୋର୍ଡ଼ର ଅନ୍ୟ ଦୁଇଜଣ ସଭ୍ୟ ଶ୍ରୀ ଦୀନବନ୍ଧୁ ବେହେରା ଓ ଶ୍ରୀ କ୍ଷେତ୍ରମଣି ପଣ୍ଡା "ଗଲା ପୁତ୍ର ବାହୁଡ଼ି ନଇଲା" ଭାବି ମତେ ନଜଣାଉ ନିଜେ ନିଜେ ଟ୍ରଷ୍ଟବୋର୍ଡ଼ର ଅଧିବେଶନ କରାଇ ଇଚ୍ଛାନୁସାରେ ପ୍ରସ୍ତାବମାନ କରି କାର୍ଯ୍ୟକାରୀ କରିଚାଲିଲେ । କନ୍ୟାଶ୍ରମ ହେଉଥିବା ଶୁଣି ମୁଁ ଉତ୍ସାହିତ ହେଲି । ଡେରାଡୁନ୍ ଓ ବରୋଦା କନ୍ୟା ଗୁରୁକୁଳ ମାନଙ୍କ ନିୟମାବଳୀ ଓ ପାଠ୍ୟକ୍ରମ ମଗାଇ ସେଠାକୁ ଧରିଗଲି । ସେସବୁ ଦେଖାଇ ସେହି ଧରଣର ଗୁରୁକୁଳ ସ୍ଥାପନ କରିବାକୁ ପ୍ରସ୍ତାବ କଲି । ଶ୍ରୀ ଦୀନବନ୍ଧୁ ବେହେରା ମୋ କଥାକୁ ତାଚ୍ଛଲ୍ୟ କରି ଏସବୁ ମୁଁ ଦେଖିଛି ବୋଲି କହିଲେ । ତାଙ୍କର ପ୍ରସ୍ତାବ ହେଲା ଏକ କନ୍ୟା ବିଦ୍ୟାଳୟ ସ୍ଥାପନ ହେବ । ଅବସର ପ୍ରାପ୍ତ ସମବାୟ ସମିତି ପରିଦର୍ଶକ ଶ୍ରୀ ଶ୍ରୀଶପାଦ ପତି ସପତ୍ନିକ ସେଠାରେ ରହି ଶିକ୍ଷାଦାନ ଓ ବିଦ୍ୟାଳୟ ପରିଚାଳନ କରିବେ ଏବଂ ସେ ଦୁହେଁ ଗୋରକ୍ଷାଶ୍ରମର ଅର୍ଥରେ ଉତ୍ତର ଭାରତ ଭ୍ରମଣ କରି କନ୍ୟା ଗୁରୁକୁଳ ମାନ ଦେଖି ଏ ବିଦ୍ୟାଳୟ କାର୍ଯ୍ୟ ସମ୍ପାଦନ କରିବେ । ତାଙ୍କର ଗସ୍ତଖର୍ଚ୍ଚ ସକାଶେ ଗୋରକ୍ଷାଶ୍ରମ ପାଣ୍ଠିରୁ ଟ ୩୦୦/ ଙ୍କା ଦିଆଯିବ । ମୁଁ ତାର ଘୋର ବିରୋଧ କଲି । ନିୟମାବଳୀ ପ୍ରଭୃତି ଦେଖି ବିଦ୍ୟାଳୟ ଆରମ୍ଭ କରାଯାଉ । ପରେ କୌଣସି ଗୁରୁକୁଳରୁ କାହାକୁ ଡକାଇ ପରାମର୍ଶ ନେବା ବୋଲି କହିଲି । ଫଳରେ କନ୍ୟାଗୁରୁକୁଳ ପ୍ରସ୍ତାବ ବନ୍ଦହେଲା । ଗୋଟିଏ ସାଧାରଣ ବାଳିକା ବିଦ୍ୟାଳୟ ସ୍ଥାପନ କରାଗଲା ।

କଟକ ଫେରିଆସିଲି । ୧/୬/୬୫ ସ୍ୱର୍ଗତଃ ଶ୍ରୀବତ୍ସ ପଣ୍ଡାଙ୍କ ଶ୍ରାଦ୍ଧ ଦିବସ ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶ କଲି । ଉତ୍କଳ ସାହିତ୍ୟ ସମାଜପକ୍ଷରୁ ଶ୍ରୀରାମଚନ୍ଦ୍ର ଭବନରେ ଶ୍ରୀବତ୍ସ ଶ୍ରାଦ୍ଧ ଦିବସ ପାଳନ ବ୍ୟବସ୍ଥା ହେଲା । ବହୁ ଗଣ୍ୟମାନ୍ୟ ସାହିତ୍ୟିକ, ଏବଂ ଦେଶସେବକ ଯୋଗ ହୋଇଥିଲା ।

୬/୬/୬୫ରେ ଗୋରକ୍ଷାଶ୍ରମକୁ ଯାଇ ସେଠାରୁ ଶ୍ରୀ ବାସୁଦେବ ତ୍ରିପାଠୀଙ୍କ ସାଙ୍ଗରେ ପୁରୀ ଗଲି । ଦୁଧବାଲା ଧର୍ମଶାଳାରେ ଘର ଖାଲି ନଥିଲା । ବାରଣ୍ଡା

ଆଲମାରୀରେ ଲୁଗାପଟା ରଖି ପାଇଖାନା ଗଲାବେଳକୁ ଭାଇ ପୁରୁଷୋତ୍ତମ ସହ ଦୈବାତ୍ ଦେଖାହେଲା । ସେ ବାହୁଡ଼ା ଯାତ୍ରାକୁ ଯାଇ ଗୋଟିଏ ଘର ନେଇ କିଛି ଦିନ ହେଲା ରହିଛି । ସେ କହିଲା ଜଗନ୍ନାଥଙ୍କ ଦୟାରେ ଆପଣମାନଙ୍କ ପାଇଁ ତ ଆଗରୁ ଏହି ବଖରା ବ୍ୟବସ୍ଥା ହୋଇ ରହିଛି । ତିନିହେଁ ସେହି ଘରେ ରହିଲୁ । ସନ୍ଧ୍ୟାରେ ସମସ୍ତେ ମିଶି ଯୋଗଦାଶ୍ରମକୁ ଗଲୁ । ଠିକ୍ ସେତିକିବେଳେ ଆଶ୍ରମର ଧ୍ୟାନ ମନ୍ଦିରରେ ସ୍ୱାମି ହରିହରା ନନ୍ଦଗିରି ଶିଷ୍ୟମାନଙ୍କୁ କ୍ରିୟାଯୋଗ ଶିକ୍ଷା ଦେଉଥାନ୍ତି । ଆଲୋକ ଲିଭାଇ ଦିଆଯାଇଛି । କେବଳ ତାଙ୍କର ଶିକ୍ଷାଦେବା ପଦ୍ଧତି ଶୁଣାଯାଉଛି । ଅନୁମାନ କରି ଗୋଟାଏ କୋଣକୁ ବସିଲୁ । କିଛି ସମୟ ପରେ ଆଲୋକ ଲାଗିଲା । ଆସନ୍ତା କାଲି ଗୁରୁପୂର୍ଣ୍ଣିମା ଉତ୍ସବ ଆଶ୍ରମରେ ପାଳିତ ହେବ । ଆପଣମାନେ ସମସ୍ତେ ଦୟାକରି ଯୋଗଦେବେ ବୋଲି ସ୍ୱାମୀଜୀ ଅନୁରୋଧ କରିବାପରେ ସମସ୍ତେ ବିଦାୟ ନେଲେ । ଆମେ ତିନି ଜଣ ସ୍ୱାମୀଜୀଙ୍କ ପଛେ ପଛେ ତାଙ୍କ କୋଠରୀକୁ ଗଲୁ । ସ୍ୱାମୀଜୀ ପ୍ରଶ୍ନ କଲେ, ''ମୁଁ ତ ଆପଣଙ୍କୁ ୨୧/୨ରେ ଆସିବାକୁ ଲେଖିଥିଲି । ଆପଣ ଆଗରୁ ଆସିଲେ କିମିତି ?'' ମୁଁ କହିଲି କାହିଁକି କେଜାଣି ମୋ ଭିତରେ ଗୋଟିଏ ପ୍ରେରଣା ଜାଗ୍ରତ ହେଲା- ଶୀଘ୍ର ବାହାରିବା ପାଇଁ ମନଟା ଖାଲି ଉଦ୍‌ବିଗ୍ନ ହେଲା । ହଠାତ୍ ବାହାରି ଆସିଲି । ସ୍ୱାମୀଜୀ କହିଲେ ହଁ ମୋର କାର୍ଯ୍ୟକ୍ରମ ବଦଳିଗଲା । ୨୧ ତାରିଖରେ ମତେ ଅନ୍ୟତ୍ର ଯିବାକୁ ପଡ଼ିବ ଏଣୁ ମୁଁ ଚିନ୍ତାକଲି ''ବାଞ୍ଛାନିଧି ବାବୁ ୨୧ ତାରିଖ ପୂର୍ବରୁ ଆସିଗଲେ ଭଲ ହୁଅନ୍ତା ।'' ଏତିକି କହି ଟିକିଏ ହସିଲେ । ମୋ ଭିତରେ ଆସିଥିବା ପ୍ରେରଣାର ଭାବ ଏବେ ବୁଝିପାରିଲି । କ୍ରିୟାଯୋଗ ଦୀକ୍ଷା ଦେବା ପାଇଁ ସ୍ୱାମିଜୀଙ୍କୁ ଅନୁରୋଧ କଲି । ସେ ପ୍ରଥମେ କହିଲେ ଆମେରିକାରୁ ସଂଘମାତା (ଦୟାମାତା) ଭାରତ ଗସ୍ତରେ ଆସିବେ ତାଙ୍କଠାରୁ ଦୀକ୍ଷା ନେବେ । ମୁଁ ଡେରି ହୋଇଯିବା ଆଶଙ୍କା କରିବାରୁ ସେ ଦୟାପରବଶ ହୋଇ ଦୀକ୍ଷା ଦେବା ପାଇଁ ସ୍ୱୀକୃତ ହେଲେ । ମୋ ସାଙ୍ଗରେ ଯାଇଥିବା ବାସୁଦେବ ତ୍ରିପାଠୀ ଏବଂ ଭାଇ ପୁରୁଷୋତ୍ତମ ମଧ୍ୟ ଦୀକ୍ଷାନେବା ପାଇଁ ଆତୁର ହୋଇ ଅନୁରୋଧ କଲେ । ୧୪/୬/୬୫ ପବିତ୍ର ଗୁରୁପୂର୍ଣ୍ଣିମା (ବ୍ୟାସ ପୂର୍ଣ୍ଣିମା) ଦିନ ଆମେ ତିନିଜଣ ତାଙ୍କଠାରୁ ଦୀକ୍ଷା ଗ୍ରହଣ କଲୁ । ତାପରେ ଭୁବନେଶ୍ୱର ଏବଂ ସେଠାରୁ କେନ୍ଦ୍ରାପଡ଼ା ଫେରିଲି ।

୬/୮/୬୫ ଏକ ସ୍ମରଣୀୟ ଦିବସ । କେହି କେହି ଏହାକୁ ତୁଚ୍ଛ ଜ୍ଞାନ କରି ପାରନ୍ତି କିନ୍ତୁ ମୋ ପକ୍ଷରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହିଦିନ ସଂଧ୍ୟାରେ ମୋର ୪୫ ବର୍ଷର ଏକ ଦୁରାଭ୍ୟାସ ଗୁଡ଼ାଖୁ ଘସା ଛାଡ଼ିଥିଲି । ଗଞ୍ଜାମରେ ପ୍ରଥମେ ମୁଁ ଏବଂ ମୋର ଜଣେ ବନ୍ଧୁ ମୃତ୍ୟୁଞ୍ଜୟ ଏ ଗୁଡ଼ାଖୁ ଘସା ଆରମ୍ଭ କରିଥିଲୁ । ଏକଥା ଯଥା ସ୍ଥାନରେ ଉଲ୍ଲିଖିତ ହୋଇଅଛି । ଏବେ କିମିତି ଛାଡ଼ିଲି ବଖାଣୁଛି । କଟକରୁ ସେଦିନ ଫେରିଲି ସନ୍ଧ୍ୟାରେ । ଝାଡ଼ା ଦେଖାଉ ନାହିଁ । ଥରକୁ ତର ଚେଳାକୁ ଚେଳା ଗୁଡ଼ାଖୁ ଘସି ଲାଗିଛି-

ତା’ ବୋଉ (ପତିମାନେ ପତ୍ନୀର ନାଁ ଧରନ୍ତି ନାହିଁ । ଅନ୍ୟ ଆଗରେ ପତ୍ନୀ କଥା କହିଲା ବେଳେ ତା ବୋଉ କିମ୍ବା ଆମର ସିଏ ବୋଲି କହିଥାନ୍ତି) କହିଲେ “ଗୁଡ଼ାଖୁ ଗୁଡ଼ାକ ଥରକୁ ଥର ଏତେ କ’ଣ ଘସୁଛମ ମୁହଁ ବୁଲେଇ ହେବ ।” କଥାଟା ମାନିଲି । ଏତେ ଘସି ସୁଦ୍ଧା ଝାଡ଼ା ହେଲାନାହିଁ । ତେବେ ଗୁଡ଼ାଖୁ ଘସିଲେ ଝାଡ଼ା ହେବ ଏ ବଦ୍ଧମୂଳ ଧାରଣା କାହିଁକି ? ସକାଳେ ଗୁଡ଼ାଖୁ ନ ଘସି ଝାଡ଼ା ଫେରିଗଲି । କିଛି ଅସୁବିଧା ହେଇନି । ଛାଡ଼ି ଦେଲି ଯେ ଛାଡ଼ିଦେଲି- ତା ବୋଉ କେତେ ଗୁରୁମୁରିଆ ହେଲେ, “କାହିଁକି ଇମିତି କହିଲି । ମୁଁ କହିବାରୁ ବୋଧହୁଏ ରାଗିଯାଇ ଛାଡ଼ିଦେଲେ । କେଡ଼େ ଶ୍ରଦ୍ଧା ତାଙ୍କର ଗୁଡ଼ାଖୁରେ କେଉଁ ପିଲା ଦିନୁ ଘସୁଥିଲେ ।” ମୁଁ ତାଙ୍କୁ ବହୁତ ବୁଝାଇବା ପରେ ବଡ଼ କଷ୍ଟରେ ମନ ଶାନ୍ତି କଲେ । ଯେଉଁ ଗୁଡ଼ାଖୁର ବାସନା ଏତେ ତୃପ୍ତିକର ହେଉଥିଲା ସମୟେ ସମୟେ ସେଥିରୁ ଟିକିଏ ସୁଙ୍ଘି ଦେଲେ ଆନନ୍ଦ ଲାଗୁଥିଲା ଏମନ୍ତକି କଟକ ଆକବର ଖାଁ ଦୋକାନ ବାଟେ ଆସିଲାବେଳେ, ଶୁଖୁଆ ଖିଆ ମାନେ ଶୁଖୁଆ ଦୋକାନ ବାଟେ ଗଲାବେଳେ ଯିମିତି ପାଟିରୁ ଲାଳ ଗଡ଼ାଇଥାନ୍ତି, ସିମିତି ତୃପ୍ତି ଲାଗୁଥିଲା, ଏବେ ତା ବାସନା ବାଜିଲେ ବିରକ୍ତ ଲାଗିଲା ।

## ସଂସ୍କୃତ ପଣ୍ଡିତମାନଙ୍କ ସଂଶ୍ରୟ

କେନ୍ଦ୍ରାପଡ଼ା ଅବସ୍ଥାନ କାଳରେ ସେଠାର ସୁବିଖ୍ୟାତ ପଣ୍ଡିତ ଶ୍ରୀ ତ୍ରିଲୋଚନ ଷଡଙ୍ଗୀ ଏବଂ ସଂସ୍କୃତ ଟୋଲ ପଣ୍ଡିତଙ୍କ ସହ ପ୍ରତିଦିନ ଯାଇ ଦେଖାକରେ । ସେମାନଙ୍କଠାରୁ ଅନେକ ବିଷୟରେ ଶିକ୍ଷାଲାଭ କରିଥାଏ । ଶ୍ରୀ ତ୍ରିଲୋଚନ ଷଡଙ୍ଗୀ କାବ୍ୟ ବ୍ୟାକରଣାଦିରେ ଯେପରି ଧର୍ମଶାସ୍ତ୍ର ଓ ଦର୍ଶନ ଶାସ୍ତ୍ରାଦିରେ ମଧ ସେପରି ଗଭୀର ଆଲୋଚନା କରିଥାନ୍ତି । ସେ ଜଗନ୍ନାଥ ତତ୍ତ୍ୱ ସଂପର୍କରେ ଅନେକ ତଥ୍ୟ ପ୍ରକାଶ କରିଥିଲେ । ପରବର୍ତ୍ତି କାଳରେ ମୁଁ ଯେତେବେଳେ ‘ସଂସ୍କାରକ’ ପତ୍ର ସଂପାଦନ କଲି ସେ ସଂସ୍କୃତ ଭାଷାରେ ଜଗନ୍ନାଥଙ୍କ ସଂପର୍କରେ ତାତ୍ତ୍ୱିକ ଲେଖାସବୁ ପଠାଇଥିଲେ । ତାହା ଯଥା ସମୟରେ ପ୍ରକାଶିତ ହୋଇଥିଲା ।

ଦିନକର ଏକ ରହସ୍ୟ ପୂର୍ଣ୍ଣ ଘଟଣା । ସଂସ୍କୃତ ଟୋଲ ପଣ୍ଡିତଙ୍କ ସହ ଦେଖାକରି ଫେରୁଛି ଟୋଲର ଜଣେ ଯୁବକ ଛାତ୍ର ମୋ ପଛେ ପଛେ ଆସି କହିଲେ “ଆଜ୍ଞା ମୁଁ ଆପଣଙ୍କୁ ଆଗରୁ ଜାଣିଛି” ମୁଁ ଅବାକ୍ ହୋଇ ଚାହିଁଲି ଏବଂ ପଚାରିଲି “ତମେ ମତେ ଜାଣିଲ କିମିତି ?” ସେ କହିଲେ “ମୋର ସାବତମା ଆପଣଙ୍କ ଗାଁର ଲୋକ । ତାଙ୍କର ବିବାହ ବ୍ୟବସ୍ଥା ଆପଣ କରାଇଥିଲେ ।” ମନେ ପଡ଼ିଲା ମୁଁ ଭଞ୍ଜନଗରରେ

ଥିବାବେଳେ ଯେଉଁ ବିଧବାକୁ ବିବାହ କରାଇଥିଲି ସେ ଏହି ଯୁବକଙ୍କ ସାବତମା । କୌତୁହଳୀ ହୋଇ ତାଙ୍କ ଘରକୁ ଗଲି । ତାଙ୍କର ସେ ସାବତ ମା ଏବଂ ତା'ର ବୁଢ଼ୀମାକୁ ଦେଖିଲି । ମା' ଝିଅ ଦୁହେଁ ମତେ ଦେଖି କୃତକୃତ୍ୟ ହୋଇ ସାଦର ଅଭ୍ୟର୍ଥନା କଲେ । ଝିଅଟି ନାନାଳଙ୍କାର ଭୂଷିତା ଏବଂ ହୃଷ୍ଟପୁଷ୍ଟ । ମା ବୁଢ଼ୀ ମଧ ମହାସୁଖରେ ରହିଛି । ସେମାନଙ୍କର ପୂର୍ବାବସ୍ଥା ସହ ଏବର ଅବସ୍ଥା ତୁଳନା କରି ନିଜକୁ ଧନ୍ୟ ମନେ କଲି ।

ସେ ମା ଝିଅ ଦୁହେଁ ଭଞ୍ଜନଗରରେ ଯା ଘରେ ତା ଘରେ କାମ ପତ୍ର କରି ପାଣିବୋହି ଧାନକୁଟି ନିତାନ୍ତ ଦୁଃସ୍ଥ ଅବସ୍ଥାରେ ଜୀବନଯାପନ କରୁଥିଲେ । ମୁ ଏପରି ଅସହାୟ ବିଧବା ମାନଙ୍କର ବିବାହ କରାଉଥିବା ଜାଣିପାରି ମା ବୁଢ଼ୀ ଦିନେ ଆସି ମୋ ବୋଉକୁ କହିଥିଲା । ପରେ ମୁଁ ଏ ବିବାହର ଆୟୋଜନ କରିଦେଇଥିଲି । ଏବେ ସେମାନେ ମହାସୁଖରେ କାଳଯାପନ କରୁଛନ୍ତି । ଝିଅର ଗୋଟିଏ ସୁସ୍ଥ, ସବଳ, ସୁନ୍ଦର ପୁଅ ସେତେବେଳେକୁ ୮ମ ଶ୍ରେଣୀରେ ପଢୁଥିଲା ।

କେନ୍ଦ୍ରାପଡ଼ା ପଞ୍ଚାୟତ ସମିତି ଚେୟାର୍‌ମ୍ୟାନ ଡକ୍ଟର ସରୋଜ କାନ୍ତ କାନୁନ୍‌ଗୋ ଜଣେ ଶାନ୍ତ ଶିଷ୍ଟ ଭଦ୍ରବ୍ୟକ୍ତି । ଜଣେ ପ୍ରତିଷ୍ଠିତ ଚିକିତ୍ସକ । ସେ ଅଞ୍ଚଳର ସମାଜବାଦୀ ଦଳର ନେତା, ସେ ସେହିଦଳ ପକ୍ଷରୁ ଓଡ଼ିଶା ବିଧାନ ସଭାର ସଭ୍ୟ ନିର୍ବାଚିତ ହୋଇଥିଲେ । ପ୍ରଶାନ୍ତ ତାଙ୍କ ବ୍ଲକ୍‌ର ବି.ଡ଼ି.ଓ । ୧୩/୫/୬୫ ସମ୍ବରଦଶମୀ ଦିନ ସରୋଜବାବୁଙ୍କ ନିମନ୍ତ୍ରଣରେ ପ୍ରଶାନ୍ତ ଓ ମୁଁ ତାଙ୍କ ଘରକୁ ଯାଇଥିଲୁ । କେତେ ପ୍ରକାର ପିଠାପଣା ଖାଉ ଖାଉ ଚିନ୍ତା ହେଲା ଆମରତ ଘର ବୋଲି ନାଇଁ, ଗୁରୁବାର ପେଡ଼ି ଅଡ଼ା ଗଉଣି କା ପାଖରେ ଅଛି କି ନାହିଁ, ଇଶାଣ ଥିଲେ ସିନା ନାନା ପର୍ବ ପର୍ବାଣୀରେ କେଉଁ ପର୍ବରେ କେଉଁ ପିଠା ହେଉଥାନ୍ତା, ମାର୍ଗଶୀର ମାସର କେଉଁ ଗୁରୁବାର ଦହିଭାତ, କେଉଁ ଗୁରୁବାରରେ ଚିତଉ ଅଟକାଳି, କେଉଁ ଗୁରୁବାରରେ ମଣ୍ଡା, ଗଇଁଠା, ଶେଷ ଗୁରୁବାରରେ ଜଗତଯାକର ପିଠାପଣା ହେଉଥାନ୍ତା, ସମ୍ବର ଦଶମୀରେ ଘଡ଼ ଘଡ଼ା ତୁଣ ଆଉ ମିଳୁ ନାଇଁ । ଷଷ୍ଠୀ ଓଷାରେ ଶିଳପା ଗୁଡ଼ାରେ ହଳଦି ମେଞ୍ଚାଏ ମାରି ନୋଥ, ଦଣ୍ଡି, ନାକଚଣା ଖଞ୍ଜି ପାଟ ପିନ୍ଧେଇ ସରୁଚକୁଳି ପୂଜା ହେଉଥାନ୍ତା । ଆମ ପିଲାଙ୍କର ତ ଆଉ ଜନମ ଦିନ ପାଳିତ ହେଉନାହିଁ । ଆଉ ନାତି ନାତୁଣୀମାନଙ୍କର କେବେ କା'ର ମନେ ପଡ଼ିଲେ ପାଳିତ ହୋଇଥାଏ । ଏବ ପିଲାଙ୍କର ବିଚିତ୍ର ପ୍ରକାର ଜନ୍ମଦିନ ପାଳିତ ହେବା ଦେଖି ବଡ଼ କୌତୁହଳ ଲାଗେ । ପୁଅମାନେ ତ ସାଇବ । କିଏ ଇଞ୍ଜିନିୟର ସାଇବ ତକିଏ ବି.ଡ଼ି.ଓ ସାଇବ । ବୋହୂମାନଙ୍କ ମଧରେ କିଏ ଡକ୍ଟର ତ କିଏ ମାଷ୍ଟର୍ । ଏମାନେ ଖ୍ରୀଷ୍ଟୀୟ ବିଧିରେ ପୁଅଝିଅଙ୍କ ଜନ୍ମଦିନ ପାଳନ କରିଥାନ୍ତି । କୁକୁଡ଼ା ଅଣ୍ଡା ପକାଇ କେକ୍ ତିଆରି ହେବ । ନୂଆଁ ଛୁରୀଟିଏ ଅଣାହେବ । ପିଲା ସେ ଛୁରୀରେ କେକ୍ କାଟି ନିଜ ସାଙ୍ଗମାନଙ୍କୁ ଖଣ୍ଡେ ଖଣ୍ଡେ ଦେଉଥିବ, ସେମାନେ କେକ୍

ଖଣ୍ଡେ ଖଣ୍ଡେ ଖାଇ କହୁଥିବେ - "Happy birthday to you !" ଆଉ ଷଷ୍ଠୀଦେବୀ ପୂଜା ନାହିଁ କି ''ଜୀବେମ ଶରଦଃ ଶତଂ, ଶୃଣୁୟାମ ଶରଦଃ ଶତଂ'' ବେଦମନ୍ତ୍ର ନାହିଁ । ଈଶାଣ- ରୋଷେଇ ଘରର ଐଶାନ୍ୟ କୋଣରେ ଏକ ବେଦୀ ଉପରେ ଗୋଟିଏ ମାଟି ପିଣ୍ଡୁଳାରେ ଗୁଆଟିଏ ପୋତା ଯାଇଥାଏ । ଘରେ ଯେତେ ସବୁ ମଙ୍ଗଳ କାର୍ଯ୍ୟ, ଓଷା, ବ୍ରତ ହୁଏ ପ୍ରଥମେ ଈଶାଣ ପୂଜା ହୁଏ । ପ୍ରତି ସନ୍ଧ୍ୟାରେ ପ୍ରଥମେ ଏଠାରେ ସନ୍ଧ୍ୟାବତୀ ଦିଆଯାଏ, ତା'ପରେ ତୁଳସୀ ଚଉଁରା ଓ ଘରର ପ୍ରତ୍ୟେକ ଏରୁଣ୍ଡିରେ ଦିଆଯାଏ । କୁଳ କନ୍ୟା ଓ କୂଳବଧୂ ଗଣ ''ଦୀପଂ ଜ୍ୟୋତି ପରଂବ୍ରହ୍ମ, ଦୀପଂ ଜ୍ୟୋତି ଜନାର୍ଦ୍ଦନ'' ମନ୍ତ୍ର ପାଠ କରି ମୁଣ୍ଡିଆ ମାରନ୍ତି ।

କେନ୍ଦ୍ରାପଡ଼ା ଉତ୍କଳର ତିନୋଟି ପ୍ରଧାନ କ୍ଷେତ୍ରମାନଙ୍କ ମଧ୍ୟରେ ଅନ୍ୟତମ । ପୁରୀ ଶ୍ରୀକ୍ଷେତ୍ର ବା ବିମଳା କ୍ଷେତ୍ର, ଯାଜପୁର ବିରଜାକ୍ଷେତ୍ର, କେନ୍ଦ୍ରାପଡ଼ା ତୁଳସୀକ୍ଷେତ୍ର । ଏଠାର ପ୍ରଧାନ ଦେବତା ବଳଦେବ, ବିଶାଳ ମନ୍ଦିର, ନାନା ପ୍ରକାର ଭୋଗରାଗ ଖଞ୍ଜାହୋଇଛି । କେନ୍ଦ୍ରାପଡ଼ା ମନ୍ଦିରର ରସାବଳୀର ଖ୍ୟାତି ରହିଛି । ଗୀତରେ ଅଛି ''ଆସ କିଏ ଖାଇବ ହୋ ରଜାଘର ଖାନା, ଭୁବନେଶ୍ୱର ରସକୋରା ଦୋପାଗୀ ଉଖୁଡ଼ା, କେନ୍ଦ୍ରାପଡ଼ା ରସାବଳୀ ଧାମନଗର ଚୂଡ଼ା'' ଇତ୍ୟାଦି । ତୁଳସୀ କ୍ଷେତ୍ର ମହାତ୍ମ୍ୟ ଯାହା ଶୁଣିଲି:- କନ୍ଦରାସୁର ନାମକ ଏକ ଅସୁର କୁରୁକ୍ଷେତ୍ର ଯୁଦ୍ଧ ସମୟରେ ଏଠାରେ ବାସ କରୁଥିଲା । ତା'ର ଅତ୍ୟାଚାରରେ ପ୍ରଜାମାନେ ଉତ୍ପୀଡ଼ିତ ହେଉଥିଲେ । ବଳଦେବ ସେହି ସମୟରେ ତୀର୍ଥଯାତ୍ରାରେ ଭ୍ରମଣ କରି କରି ଏଠାରେ ପହଞ୍ଚିଲେ । କନ୍ଦରାସୁର ସହିତ ତାଙ୍କର ଘୋର ଯୁଦ୍ଧ ହେଲା । ସେ ତାକୁ ମାରି ତିନିଖଣ୍ଡ କରି ତିନିଆଡ଼େ ଫିଙ୍ଗି ଦେଲେ । ତାର ଯେଉଁ ଖଣ୍ଡ ଯେଉଁଆଡ଼େ ପଡ଼ିଲା ସେହି ପ୍ରକାରେ ଆଦ୍ୟଖଣ୍ଡି, ମଧଖଣ୍ଡି ଓ ଅନ୍ତ୍ୟଖଣ୍ଡି ନାମରେ ନାମିତ ହେଲା । ଏଠାର ବଳଦେବ ମୂର୍ତ୍ତି ଅପେକ୍ଷାକୃତ ବଡ଼ । ଜଗନ୍ନାଥ ମୂର୍ତ୍ତି ତାଙ୍କଠାରୁ ସାନ, ସୁଭଦ୍ରାତ ସାନ ହେବା ସ୍ୱାଭାବିକ । ଏ ମୂର୍ତ୍ତି ମାନଙ୍କର ପୁରୀ ଶ୍ରୀମନ୍ଦିର ମୂର୍ତ୍ତିମାନଙ୍କ ପରି ଖଣ୍ଡିଆ ହାତ ମଧ ନାହିଁ । କେବଳ ମାଦିଳିଟି ମାନ । ମୁଖ ମଣ୍ଡଳର ତଳକୁ ଯେଉଁଠି ହାତ ରହିବା କଥା ସେଇଠି ଗୋଟିଏ ଗୋଟିଏ ପିଣ୍ଡୁଳାକାର ଚିହ୍ନ ରହିଛି ।

କଥିତ ଅଛି ବଳଦେବ କନ୍ଦରାସୁରକୁ ହତ୍ୟା କରିବା ପରେ ତା'ର କନ୍ୟା ତୁଳସୀ ବଳଦେବଙ୍କୁ ପୂଜାର୍ଚ୍ଚନା କରି ତାଙ୍କୁ ବିବାହ କରିବା ପାଇଁ ପ୍ରାର୍ଥନା କରିଥିଲା । ବଳଦେବ ତା'ର ଇଚ୍ଛାପୂରଣ କରିଥିଲେ ଏବଂ ଏହି କ୍ଷେତ୍ରକୁ ତୁଳସୀ କ୍ଷେତ୍ର ନାମରେ ନାମିତ କରିଥିଲେ । ମୋର କେନ୍ଦ୍ରାପଡ଼ା ରହଣିକାଳ ସ୍ୱାଧ୍ୟାୟ, ଯୋଗଦା ପ୍ରଣାଳୀରେ ଆଧ୍ୟାତ୍ମିକ ସାଧନା, ପଣ୍ଡିତମାନଙ୍କ ସହ ଶାସ୍ତ୍ରାଲୋଚନା, ନିୟମିତ ପ୍ରାର୍ଥନା, ପ୍ରାତଃ ସାୟଂ ଭ୍ରମଣ ଇତ୍ୟାଦି ପ୍ରକାରେ ଅତିବାହିତ ହୋଉଥିଲା ।

କେନ୍ଦ୍ରାପଡ଼ାରେ ଥିବାବେଳେ ମୁଁ ଅନେକଥର କଟକ ଆସିଥାଏ । ବିଶେଷତଃ ଆଶ୍ଚର୍ଯ୍ୟ ମହାଶୟ (ଆଚାର୍ଯ୍ୟ ହରିହର ଦାସ) ପୀଡ଼ିତ ଅବସ୍ଥାରେ ଥିଲାବେଳେ ତାଙ୍କୁ ଦେଖିବାକୁ ଆସିଥାଏ । ଦିନେ ତାଙ୍କ ସହିତ ଦେଖାକରିବା ବେଳେ ସେ ଆଖିବୁଜିକି ମୋର ହାତଧରି ଆଙ୍ଗୁଠି ଗୁଡ଼ିକୁ ଚିପାଚିପି କରି ସାମାନ୍ୟ କିଛି କଥାବାର୍ତ୍ତା କରୁଥାନ୍ତି । ସେତେବେଳେ ମୋର ସମଗ୍ର ଶରୀରରେ ଗୋଟାଏ କିଛି ବୈଦ୍ୟୁତିକ ଶକ୍ତି ସଂଚାରିତ ହେଲାପରି ବୋଧକଲି ।

## ଶ୍ରୀବସ୍ତ ଗୋରକ୍ଷାଶ୍ରମରେ

୧୯୬୬ରେ ଶ୍ରୀବସ୍ତ ଗୋରକ୍ଷାଶ୍ରମକୁ ପୁଣି ଆସିଲି । ଉଦ୍ଦେଶ୍ୟ ସ୍ୱର୍ଗତଃ ଶ୍ରୀବସ୍ତ ପଣ୍ଡାଙ୍କ ଅନ୍ତିମ ଇଚ୍ଛା ଗୋରକ୍ଷାଶ୍ରମର ସୁରକ୍ଷା ପାଇଁ କୌଣସି ସର୍ବଭାରତୀୟ ସଂସ୍ଥା ହାତରେ ସମର୍ପଣ କରିବା । ତାଙ୍କର ଆଶଙ୍କା ଥିଲା ତାଙ୍କ ପରେ ତାଙ୍କର କୌଣସି ଉତ୍ତରାଧିକାରୀ କାଳେ ସଂପତ୍ତି ଅପହରଣ କରିନେବେ । ସେଥିଯୋଗୁଁ ତାଙ୍କର ଶେଷ କାଳରେ ଆମ୍ଭମାନଙ୍କୁ ନେଇ ଟ୍ରଷ୍ଟବୋର୍ଡ଼ ଗଠନ କରିଥିଲେ ।

ମୁଁ ଆସି ଦେଖିଲି ପୂର୍ବପରି ଆଶ୍ରମର ସଂପତ୍ତି ଜଣେ ମାନେଜର ଶ୍ରୀ ଲିଙ୍ଗରାଜ ମହାପାତ୍ରଙ୍କ ହାତରେ ଅର୍ପିତ ହୋଇଅଛି । ସେ ନିଜେ ନ ଆସି ତାଙ୍କ ପୁଅ ରାମକୃଷ୍ଣଙ୍କୁ ଏ ଦାୟିତ୍ୱ ଦେଇଥାନ୍ତି । ରାମକୃଷ୍ଣ କେତେଜଣ ହଳିଆ ଏବଂ କନ୍ୟା ବିଦ୍ୟାଳୟର ଶିକ୍ଷକ ଶ୍ରୀଷପାଦ ପତିଙ୍କ ସହାୟତା ଓ ପରାମର୍ଶରେ ପରିଚାଳନା କରନ୍ତି । ଆର୍ଯ୍ୟମନ୍ଦିରରେ କନ୍ୟା ବିଦ୍ୟାଳୟ ଚାଲେ ।

ମୁଁ ଆସିବା ପରେ ଶ୍ରୀ ବାସୁଦେବ ତ୍ରିପାଠୀଙ୍କୁ ସାଙ୍ଗକଲି । ଆମେ ଦୁହେଁ ରହିବା ପାଇଁ ସ୍ଥିର କଲୁ, କିନ୍ତୁ ରହିବା ପାଇଁ ଜାଗା ନାହିଁ । ଆର୍ଯ୍ୟ ମନ୍ଦିରର ବାରିପଟ ପିଣ୍ଡାରେ ଇଟା ଥୋଇ ଚୂଲି କଲୁ । ଦୁହେଁ ରୋଷେଇ ବାସ କରି ଖାଉ । ଗୋଟାଏ ଭଙ୍ଗା ଆଲମାରୀ ପଡ଼ିଥିଲା । ତାକୁ ସଫାସୁତୁରା କରି ଲୁଗାପଟା ହାଣ୍ଡି କୁଣ୍ଡି ରଖିଲୁ । ମୋର ଆଗମନ ସମ୍ବାଦ ପାଇ ଭଞ୍ଜନଗର ଓ ବେଲଗୁଣ୍ଠା ଉଚ୍ଚ ବିଦ୍ୟାଳୟମାନଙ୍କରେ ପଢୁଥିବା ଅନେକ ସ୍ଥାନୀୟ ଛାତ୍ର ପାଠ ବୁଝାବୁଝି କରିବା ପାଇଁ ଆସନ୍ତି । ମୁଁ ପିଲାମାନଙ୍କୁ ଭଲ ପାଠ ପଢ଼ାଏ (Tuition) ବୋଲି ଆଗରୁ ଖ୍ୟାତି ଥିଲା । ଦେଖୁ ଦେଖୁ ପ୍ରାୟ ୩୦ ଜଣ ଯାଏଁ ପଠନାର୍ଥୀ ଯୋଗଦେଲେ । ଜାଗା ତ ନାହିଁ- ପ୍ରଥମେ ପ୍ରଥମେ ଗଛମୂଳମାନଙ୍କରେ ବସି ପଢ଼ାଗଲା । ତତ୍‌ପରେ ଗୋଟିଏ ଝାଟିମାଟିର ଘର ତିଆରି କରି ତାଳପତ୍ର ଛପର କରି ସେଠାରେ ବସବାସ ଓ ପଢ଼ାପଢ଼ିର ବ୍ୟବସ୍ଥା ହେଲା । ୰ ଶ୍ରୀବସ ପଣ୍ଡାଙ୍କ ଉଦ୍ଦେଶ୍ୟ ପ୍ରକାରେ ଏକ ବାନପ୍ରସ୍ଥାଶ୍ରମ କରାଗଲା । ଶ୍ରୀ ହରିବନ୍ଧୁ



ବାଞ୍ଛାନିଧି ପଟ୍ଟନାୟକଙ୍କ ସହକର୍ମୀ ସ୍ୱାଧୀନତା ସଂଗ୍ରାମୀ ୰ ବାସୁଦେବ ତ୍ରିପାଠୀ (ସ୍ୱାମୀ ବେଦାନନ୍ଦ ସରସ୍ୱତୀ)

ଖାଡ଼ଙ୍ଗା, ପଣ୍ଡିତ ଶ୍ରୀ ଗୋଦାବରୀଶ ଦାଶ, ଶ୍ରୀ ବାସୁଦେବ ତ୍ରିପାଠୀ ଓ ମୁଁ ବାନପ୍ରସ୍ଥ ସଂକଳ୍ପ ନେଲୁ । ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କ ପୌରୋହିତ୍ୱରେ ହୋମାଗ୍ନି ସମ୍ମୁଖରେ ଆମ୍ଭମାନଙ୍କର ଶପଥ ଗ୍ରହଣ କରାଯାଇଥିଲା । ଆମ୍ଭେମାନେ ଛାତ୍ରମାନଙ୍କୁ ଶିକ୍ଷାଦାନ କରୁଁ ଏବଂ ସେମାନଙ୍କ ଶୃଙ୍ଖଳିତ ଜୀବନଯାପନ, ସଦାଚରଣ, ଦେଶୀୟ ଏବଂ ଯୌଗିକ ବ୍ୟାୟାମ ଅଭ୍ୟାସ ଇତ୍ୟାଦି ପ୍ରତି ଦୃଷ୍ଟି ଦେଉ ।

ଏଠାରେ ମାସାବଧି ଏକ ଯଜ୍ଞ ଅନୁଷ୍ଠିତ ହେଲା । ୩୦ଜଣ ବଦାନ୍ୟ ବ୍ୟକ୍ତି ପ୍ରତ୍ୟେକ ଦିନେ ଲେଖାଏଁ ଯଜ୍ଞ ଭାର ଗ୍ରହଣ କରିଥିଲେ । ବହୁବିଶିଷ୍ଟ ବ୍ୟକ୍ତି ଶ୍ରୀରାଧାକୃଷ୍ଣ ଦାସ, ଶ୍ରୀଲକ୍ଷ୍ମୀନାରାୟଣ ପଟ୍ଟନାୟକ, ଶ୍ରୀ ଦଣ୍ଡପାଣି ମହାପାତ୍ର, ଶ୍ରୀ ବୀରଭଦ୍ର ମହାପାତ୍ର ପ୍ରଭୃତି ପରିଚାଳନା ଭାରନେଇଥିଲେ । ଯଜ୍ଞକର୍ତ୍ତାମାନେ ମାସକ ଯାକ ହବିଷ୍ୟାନ୍ନ ଗ୍ରହଣ କରି ଶୁଦ୍ଧ ପୂତ ଭାବରେ ଯଜ୍ଞବିଧାନ କରୁଥିଲେ । ଅକ୍ଟୋବର ୧ ତାରିଖ ଶ୍ରୀବସ ପଣ୍ଡାଙ୍କ ଜନ୍ମତିଥି ଏବଂ ୨ ତାରିଖ ମହାତ୍ମା ଗାନ୍ଧୀଙ୍କ ଜୟନ୍ତୀ ଯଜ୍ଞ ମଣ୍ଡପରେ ପାଳିତ ହୋଇ ଯଜ୍ଞଶେଷ କରାଯାଇଥିଲା ।

କେତେକ ଛାତ୍ରଙ୍କୁ ନେଇ ଏକ ପ୍ରଶିକ୍ଷଣ ଶିବିର ଆଶ୍ରମ ନିକଟ ତୋଟାରେ ୧୫ଦିନ ପାଇଁ ଖୋଲାଯାଇଥିଲା । ବହୁ ବଦାନ୍ୟ ବ୍ୟକ୍ତି ସେହି ପ୍ରଶିକ୍ଷଣ ସକାଶେ ଅର୍ଥଦାନ କରିଥିଲେ । ବେଲଗୁଣ୍ଠା ଓ ଭଞ୍ଜନଗରର ବହୁ ବିଶିଷ୍ଟ ବ୍ୟକ୍ତି ନିମନ୍ତ୍ରିତ ହୋଇ ଆସି ଶିକ୍ଷାର୍ଥୀମାନଙ୍କୁ ବିଭିନ୍ନ ବିଷୟରେ ଭାଷଣ ଦେଇଥିଲେ । ଶିକ୍ଷାର୍ଥୀମାନେ ବାନପ୍ରସ୍ଥୀମାନଙ୍କ ଗହଣରେ ଆଖପାଖ ଗ୍ରାମମାନଙ୍କରେ ପ୍ରତିଦିନ କିଛି ସମୟ ପାଇଁ ବିଭିନ୍ନ ପ୍ରକାର ସେବାକାମ କରୁଥିଲେ ।

ଆମ୍ଭେମାନେ ସେଠାରେ ରହିବା ହେତୁ ଗୋରକ୍ଷାଶ୍ରମ ପକ୍ଷରୁ ଆମ୍ଭମାନଙ୍କୁ ନାନାପ୍ରକାର ହଇରାଣ ହରକତ କରାଯାଇଥିଲା । ଆମର କୌଣସି କାମରେ ସାହାଯ୍ୟ ନ କରିବା ପାଇଁ ହଳିଆମାନଙ୍କୁ ପ୍ରବର୍ତ୍ତାଉଥିଲେ । ଏପରିକି କୂଅରୁ ପାଣି ଉଠାଇବା ପାଇଁ ଦଉଡ଼ିଟା ମଧ ଦେବାକୁ ମନା । ମାନେଜରଙ୍କ ପୁତ୍ର ରାମକୃଷ୍ଣ ଓ କନ୍ୟା ବିଦ୍ୟାଳୟଶିକ୍ଷକ ଶ୍ରୀଶପାଦ ପତି ଆମ ମାନଙ୍କର ସମସ୍ତ କାମରେ ବିରୋଧ କରନ୍ତି । ଆମ ଟ୍ରଷ୍ଟ ବୋର୍ଡ଼ର ସଭାପତି ଶ୍ରୀ ଦୀନବନ୍ଧୁ ବେହେରା ଏବଂ କୋଷାଧକ୍ଷ ଶ୍ରୀ କ୍ଷେତ୍ରମଣି ପଣ୍ଡା ମୁଁ ଏଠାରେ ଆସି ରହିବା, ଛାତ୍ରମାନଙ୍କୁ ଶିକ୍ଷାଦେବା, ବାନପ୍ରସ୍ଥାଶ୍ରମ ସ୍ଥାପନ କରିବା, ଯଜ୍ଞାନୁଷ୍ଠାନ କରିବା ଇତ୍ୟାଦି କାର୍ଯ୍ୟକଳାପ ଦେଖି ମୋ ପ୍ରତି ସନ୍ଦେହାପନ୍ନ ହୋଇଥିଲେ । କାଳେ ମୁଁ ଗୋରକ୍ଷାଶ୍ରମରେ ଅଧିକାର ଜମାଇ ବସିବି ପରା ବୋଲି ତାଙ୍କର ସନ୍ଦେହ । ସେଥିଯୋଗୁଁ ଆମର ଏସବୁ କାମରେ ତାଙ୍କୁ ନିମନ୍ତ୍ରଣ କଲେ ମଧ ଯୋଗ ଦିଅନ୍ତି ନାହିଁ ।

ଲିଙ୍ଗରାଜ ମହାପାତ୍ରଙ୍କ ପୂର୍ବରୁ ଶିବରାମ ପଣ୍ଡା ଆଶ୍ରମ ପରିଚାଳନା କରୁଥିଲେ । ତାଙ୍କର ହିସାବପତ୍ର ଶ୍ରୀଶପାଦ ପତି ଯାଞ୍ଚ କରି ନଗଦ ଟ ୩୦୦/-ଙ୍କା ଏବଂ ୪ ଭରଣ ଧାନ ତାଙ୍କ ଉପରେ ବାକିଥିବା ଦର୍ଶାଇଥିଲେ । ଟ୍ରଷ୍ଟ ବୋର୍ଡ଼ ସଭାରେ ଶିବରାମ ପଣ୍ଡା ଏହା ସ୍ୱୀକାର କଲେ ନାହିଁ । ବରଂ ଅଭିଯୋଗ କରିଥିଲେ ଯେ ଯାଞ୍ଚକର୍ତ୍ତା ହିସାବ ପତ୍ରରେ ଦର୍ଶାଯାଇଥିବା ଅନେକ ଖର୍ଚ୍ଚ ଛାଡ଼ିଦେଇ ଭୁଲ୍‌ରେ ବାକି ଦେଖାଉଛନ୍ତି । ଅତଏବ ଏ ସବୁ ଦେବାପାଇଁ ସେ ରାଜି ନୁହନ୍ତି । ବାରମ୍ବାର ଟ୍ରଷ୍ଟବୋର୍ଡ଼ ବସି ଏ ବିଷୟରେ କୌଣସି ନିଷ୍ପତ୍ତି କରିପାରିଲେ ନାହିଁ । ଶେଷକୁ ଶ୍ରୀ ବିଶ୍ୱନାଥ ଦାସ ମହାଶୟ ଟ୍ରଷ୍ଟବୋର୍ଡ଼ର ଏକ ସଭାରେ ଯୋଗଦେଲେ । ତାଙ୍କୁ କିଏ ଡାକିଥିଲା କେଜାଣି, ସେ ଏ ସମସ୍ତ ବିଷୟ ବୁଝାବୁଝି କରି କହିଲେ "ବାବୁ ଏସବୁ ପୋଡ଼ ପୋତ କରିଦିଅ, ପୋଡ଼ ପୋତ କରି ଦିଅ ।" ତଦନୁଯାୟୀ ଶିବରାମ ପଣ୍ଡା ସେଥିରୁ ମୁକ୍ତ ହେଲେ । ସଭା ଚାଲିଥିବା ବେଳେ ବିଶ୍ୱନାଥବାବୁ ବାହାରକୁ ଆସି ମତେ ଡାକିଲେ ଏବଂ ଟଙ୍କା ଚାଳିଶଟି ମତେ ବଢ଼ାଇଦେଲେ । ମୁଁ ଗ୍ରହଣ କଲିନାହିଁ । କାହିଁକି ଦେଉଛନ୍ତି ବୁଝି ପାରିଲି ନାହିଁ । ମୋ ପାଖରେ ବାସୁଦେବ ତ୍ରିପାଠୀ ଥିଲେ, ସେ କହିଲେ "ଧର, ଶ୍ରଦ୍ଧାରେ

ଦେଉଛନ୍ତି ।'' ମୁଁ କହିଲି ''ତମେ ଧର ।'' ସେ କାହିଁକି ମତେ ଟଙ୍କା ଦେଉଥିଲେ ତା'ର ରହସ୍ୟ ଏପର୍ଯ୍ୟନ୍ତ ମୁଁ ଭେଦ କରିପାରିନାହିଁ ।

ସେହି ଦିନ ବିଶ୍ୱନାଥ ବାବୁଙ୍କ ଉପସ୍ଥିତିରେ ଗୋରକ୍ଷାଶ୍ରମର ଭବିଷ୍ୟତ ବିଷୟରେ ବିଚାର ହେଲା । ଆର୍ଯ୍ୟ ସମାଜର କୌଣସି ଏକ ସର୍ବଭାରତୀୟ ସଂସ୍ଥା ହାତରେ ସମର୍ପଣ କରିବା କଥା ଉଠିଲା । ସାର୍ବଦେଶିକ ଆର୍ଯ୍ୟ ପ୍ରତିନିଧି ସଂସ୍ଥା ହାତରେ ସ୍ୱର୍ଗତ ଶ୍ରୀବସ୍ତ ପଣ୍ଡା ସର୍ବ ପ୍ରଥମେ ଏ ଅନୁଷ୍ଠାନକୁ ନ୍ୟାସ କରି ଦେଇଥିଲେ କିନ୍ତୁ ସେହି ସଂସ୍ଥା ଏହା ଗ୍ରହଣ କରିନଥିଲେ । ବିଶ୍ୱନାଥ ବାବୁ, ଦୟାନନ୍ଦ ଅଙ୍ଗ୍ଲୋବୈଦିକ ବିଦ୍ୟାଳୟ ସଂସ୍ଥା ହାତରେ ସମର୍ପଣ କରିବା ପ୍ରସ୍ତାବ କରି ଓଡ଼ିଶାର ଭୂତପୂର୍ବ ରାଜ୍ୟପାଳ ଏବଂ ସେହି ସମୟରେ ଡ଼ି.ଏ.ଭି ର ପରିଚାଳକ ଶ୍ରୀ ଅଯୋଧ୍ୟା ନାଥ ଖୋସଲାଙ୍କୁ ନିବେଦନ କରିବା ପାଇଁ ପରାମର୍ଶ ଦେଲେ । ସଙ୍ଗେ ସଙ୍ଗେ ତାଙ୍କ ନିକଟକୁ ପତ୍ର ଲେଖାଗଲା । ବିଶ୍ୱନାଥ ବାବୁଙ୍କ ନିର୍ଦ୍ଦେଶ ପ୍ରକାରେ ମୁଁ ସେ ପତ୍ରଲେଖିଲି ଏବଂ ସେ ସଂଶୋଧନ କଲେ । ଟ୍ରଷ୍ଟ ବୋର୍ଡ଼ର ସମସ୍ତ ସଭ୍ୟ ସ୍ୱାକ୍ଷର କରି ପତ୍ର ପଠାଗଲା । ଖୋସଲା ସାହେବ ଥରେ ଦି ଥର ଆସି ଘରଦ୍ୱାର ଜମିବାଡ଼ି, ବ୍ୟାଙ୍କରେ ଗଚ୍ଛିତ ଥିବା ଟ ୨୩୦୦୦/ (ତେଇଶି ହଜାର ଟଙ୍କା)ର ହିସାବ ଦେଖିଲେ । କୃଷିବିଭାଗ କର୍ମଚାରୀଙ୍କୁ ଡ଼କାଇ ଜମିବାଡ଼ିର କିପରି ଉନ୍ନତି କରାଯିବ, ଜଳସେଚନର କି ବ୍ୟବସ୍ଥା ହୋଇପାରିବ ଇତ୍ୟାଦି ବୁଝାସୁଝା କଲେ । ସେ ଯିବା ପରେ ବହୁ ଦିନ ଯାଏ କୌଣସି ବ୍ୟବସ୍ଥା ନ ହେବା ଦେଖି ଶ୍ରୀ ବାସୁଦେବ ତ୍ରିପାଠୀ, ଶ୍ରୀ ବୀରଭଦ୍ର ମହାପାତ୍ର, ଶ୍ରୀ ରାଧାକୃଷ୍ଣ ଦାଶ, ଶ୍ରୀ ରାମଚନ୍ଦ୍ର ବେହେରା ଏବଂ ମୁଁ ଶିବରାତ୍ରୀ ଉତ୍ସବ ବେଳେ ବେଦବ୍ୟାସ, ପାନପୋଷ ବୈଦିକ ଆଶ୍ରମର ପ୍ରତିଷ୍ଠାତା ସ୍ୱାମ ବ୍ରହ୍ମାନନ୍ଦ ସରସ୍ୱତୀଙ୍କୁ ଏ ଅନୁଷ୍ଠାନର ଦାୟିତ୍ୱ ନେବାପାଇଁ ଅନୁରୋଧ କରିବାକୁ ଗଲୁ । ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ ପୂର୍ବେ କେତେଥର ଗୋରକ୍ଷାଶ୍ରମକୁ ଆସିଥିଲେ । ୧୯୫୦ ସାଲରେ ସେ ପ୍ରଥମେ ରସଲକୋଣ୍ଡା ମୋର ବାସଭବନକୁ ଆସି ମୋ ସହିତ ପରିଚୟ ଲାଭ କରିଥିଲେ । ମୁଁ ତାଙ୍କୁ ନେଇ ଏହି ଆଶ୍ରମ ଦେଖାଇ ଥିଲି । ସେତେବେଳକୁ ସେ ପାନପୋଷ ବୈଦିକାଶ୍ରମ ପ୍ରତିଷ୍ଠା କରିଥିଲେ । ଆଶ୍ରମ ଘର, ବଗିଚା ଓ ଜମିବାଡ଼ି ଦେଖି ତାଙ୍କର ଟିକିଏ ଆଗ୍ରହ ସୃଷ୍ଟି ହୋଇଥିଲା । ତା'ପରେ ସେ ଥରେ ଅଧେ ଆସିଥିଲେ । ତାଙ୍କର ବୈଦିକାଶ୍ରମ ପ୍ରତିଷ୍ଠା ଓ ଅନ୍ୟାନ୍ୟ କାର୍ଯ୍ୟକଳାପ ଦେଖି, ଆମ୍ଭେମାନେ ଆଶାନ୍ୱିତ ହୋଇ ଗୋରକ୍ଷାଶ୍ରମର ଦାୟିତ୍ୱ ନେବାପାଇଁ ତାଙ୍କୁ ଅନୁରୋଧ କଲୁ । ଏଣେ ଖୋସଲା ସାହେବଙ୍କ ନିଷ୍ପତ୍ତିକୁ ମଧ ଅପେକ୍ଷା କରାଯାଇଥିଲା । ଖୋସଲା ସାହେବ ଥରେ କଳିଙ୍ଗା ଗସ୍ତରେ ଆସି ଟ୍ରଷ୍ଟ ବୋର୍ଡ଼ର ସଭ୍ୟମାନଙ୍କୁ ସେଠାକୁ ଡ଼କାଇଲେ । ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀଙ୍କୁ ମଧ ସେଠାରେ ଯୋଗଦେବା ପାଇଁ ଅନୁରୋଧ କରାଯାଇଥିଲା । ଶ୍ରୀ ପ୍ରିୟବ୍ରତ ଦାଶ ଖୋସଲାଙ୍କ ସାଙ୍ଗରେ ଆସିଥିଲେ । ଖୋସଲା ସାହେବ ସମସ୍ତ ବିଷୟ ବ୍ୟବସାୟ ଦୃଷ୍ଟିରେ ବିଚାରକଲେ । ଶ୍ରୀବସ୍ତ

ପଣ୍ଡାଙ୍କର ମୁଖ୍ୟ ଉଦ୍ଦେଶ୍ୟ ପରିତ୍ୟକ୍ତ ବୃଦ୍ଧ ଅକର୍ମଣ୍ୟ ଗାଈ ଗୋରୁଙ୍କୁ ପୋଷିବା କଥାକୁ ସେ ଏଥିଦ୍ୱାରା କିଛି ଲାଭ ନାହିଁ, ଏହା ବନ୍ଦ କରିଦେବା ପାଇଁ କହିଲେ । ମୁଁ କହିଛି "This is not a commercial institution. It is a philonthrophic one. ବିଶେଷତଃ ପ୍ରତିଷ୍ଠାତାଙ୍କ ଉଦ୍ଦେଶ୍ୟ ମଧ୍ୟରେ ତାହା ହେଉଛି ମୁଖ୍ୟ ।'' ସେ ଏହାକୁ ଏକ sentiment କହି ଉଡ଼ାଇ ଦେଲେ । ଗୋରକ୍ଷାଶ୍ରମ ସଂପତ୍ତିରୁ ଯାହା ଆଦାୟ ହେବ ସେଥିରେ ହିଁ ସମସ୍ତ କାମ ଚଳିବ । ଡ଼ି.ଏ.ଭି. ସଂସ୍ଥାରୁ କିଛି ସାହାଯ୍ୟ ମିଳିପାରିବ ନାହିଁ ବୋଲି କହିଲେ । ସେତିକିରେ ସେ ପ୍ରସ୍ତାବ ବନ୍ଦ ହେଲା । ସଭ୍ୟମାନେ ହତାଶ ହୋଇ ଫେରିଲୁ । ଆଉ କୌଣସି ଭବିଷ୍ୟତ ଯୋଜନା ହୋଇ ପାରିଲା ନାହିଁ । ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ ସେଠାରେ ଥିଲେ । ଆମେ ଟ୍ରଷ୍ଟ ବୋର୍ଡ଼ର ତିନିଜଣ ସଭ୍ୟ ଶ୍ରୀ ବାସୁଦେବ ତ୍ରିପାଠୀ, ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଣ୍ଡା ଏବଂ ମୁଁ ସ୍ୱାମୀଜୀଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇ ଗୋରକ୍ଷାଶ୍ରମକୁ ଡାକି ନେଲୁ । ଅନ୍ୟ ଦୁଇଜଣ ସଭ୍ୟ ଶ୍ରୀ ଦୀନବନ୍ଧୁ ବେହରା ଓ ଶ୍ରୀ କ୍ଷେତ୍ରମଣି ପଣ୍ଡା ହାତେ ମାପି ଚାଖଣ୍ଡେ ଚାଲିବା ଲୋକ । ସେମାନଙ୍କ ସହ ପରାମର୍ଶ କଲେ କାଳ ବିଳମ୍ବ ହେବା ଆଶଙ୍କା କରି ଆମେ ତିନିଜଣ ସଭ୍ୟ ଏକ ସ୍ୱତନ୍ତ୍ର ସଭା କରି ତାଙ୍କରି ହସ୍ତରେ ଆଶ୍ରମ ପରିଚାଳନା ଭାର ଦେବା ପାଇଁ ନିର୍ଦ୍ଧାରଣ କଲୁ । ପରେ ଶୁଣାଗଲା ଯେ ଶ୍ରୀ ଦୀନବନ୍ଧୁ ବେହେରା ମଧ ତାଙ୍କୁ ସେହି ଧରଣର ଏକ ନିବେଦନ କରିଥିଲେ ।

ଦିନସ୍ଥିର ହେଲା । ସ୍ୱାମୀଜୀ ଆସିଲେ । ତାଙ୍କ ସାଙ୍ଗରେ ଭୁବନେଶ୍ୱରରୁ ଶ୍ରୀ ପ୍ରିୟବ୍ରତ ଦାସ ଆସିଥିଲେ । ଟ୍ରଷ୍ଟବୋର୍ଡ଼ ସଭା ବସିଲା । ପ୍ରତ୍ୟେକ ସଭ୍ୟ ପୃଥକ ପୃଥକ ଭାବେ ଇସ୍ତଫା ପତ୍ର ଦେଲେ । ସ୍ୱାମୀଜୀଙ୍କୁ ଏସବୁ ଇସ୍ତଫା ପତ୍ର ଦିଆଗଲା । ସେ ଅଧକ୍ଷ ଭାବରେ ଏକାକୀ ପରିଚାଳନା କରିବାସ୍ଥିର ହେଲା । ପ୍ରିୟବ୍ରତ ଦାଶ ଓ ସ୍ୱାମୀଜୀଙ୍କ ମଧ୍ୟରେ କ'ଣ ଗୁପ୍ତ ପରାମର୍ଶ କରି ଉଭୟେ ଆଶ୍ରମ ପରିଚାଳନା କରିବା ସଂପର୍କରେ ବ୍ୟବସ୍ଥା କଲେ ।

ତହିଁଆର ଦିନ ସକାଳୁ ମୁଁ କହିଲି ସ୍ୱାମୀଜୀ ''ମୁଁ ଏଥର ଯାଉଛି ।'' ସେ କହିଲେ ''କୁଆଡ଼େ'' ? ମୁଁ କହିଲି ଘରକୁ । ଛ ସାତ ବର୍ଷ କାଳ ମୁଁ ଏଠାରେ ଯେଉଁଥି ପାଇଁ ପଡ଼ି ରହିଥିଲି ତା' ସଫଳ ହୋଇଛି । ଆମ୍ଭମାନଙ୍କୁ ନେଇ ସ୍ୱର୍ଗତ ଆଶ୍ରମ ପ୍ରତିଷ୍ଠାତା ଯେତେବେଳେ ନୂତନ ଟ୍ରଷ୍ଟବୋର୍ଡ଼ ଗଠନ କଲେ ସେତେବେଳେ ତାଙ୍କର ଉଦ୍ଦେଶ୍ୟ ପ୍ରକାଶ କରିଥିଲେ ଯେ ତାଙ୍କ ଅନ୍ତେ ତାଙ୍କ ଉତ୍ତରାଧିକାରୀମାନେ ଏ ସଂପତ୍ତି ଯେପରି ମାଡ଼ି ନ ବସନ୍ତି । ସେ ଆଶଙ୍କା ବର୍ତ୍ତମାନ ଦୂରହେଲା । ମୋରି ଉଦ୍ୟମରେ ଏହା ସଂପନ୍ନ ହେଲା । ଏଣିକି ଆପଣ ଦିଅଁ ଗଢ଼ନ୍ତୁ ବା ମାଙ୍କଡ଼ ଗଢ଼ନ୍ତୁ ।'' ଶେଷକୁ ସେ କହିଲେ ଯେ ସେ (ସ୍ୱାମୀଜୀ) ତ ଆଶ୍ରମରେ ରହିବାକୁ ପଡ଼ିବ, ଏଣୁ ମତେ ତାଙ୍କ ବୈଦିକାଶ୍ରମ ପାନପୋଷ ପରିଚାଳନା କରିବା ଭାର ଗ୍ରହଣ କରିବାକୁ ଅନୁରୋଧ

କଲେ । ତଦନୁଯାୟୀ ମୁଁ ସେଠାକୁ ଗଲି ।

ସେଠାରେ ପ୍ରାୟ ମାସେ ଖଣ୍ଡେ ରହିଛି ଗୋଟିଏ ମର୍ମନ୍ତୁଦ ଘଟଣା ଘଟିଲା । ସ୍ୱାମୀଜୀଙ୍କ ପୃଷ୍ଠ ପୋଷକତାରେ ଜଣେ ଖ୍ରୀଷ୍ଟିୟାନ ଯୁବକ ପଢ଼ାପଢ଼ି କରି ସରକାରୀ ଚାକିରୀ ପାଇଥାନ୍ତି । କାଳକ୍ରମେ ସ୍ୱାମୀଜୀଙ୍କ ସାଙ୍ଗରେ ତାଙ୍କର କୌଣସି କାରଣରୁ ଅପଢ଼ ହେଲା । ସ୍ୱାମୀଜୀ ସେଥିରେ ବିଚଳିତ ହୋଇ ସେ ଲୋକକୁ ଶାସ୍ତି ଦେବାପାଇଁ ଯୋଗାଡ଼ ଯତ୍ନ କରିଦେଇ ସେଦିନ ରାତ୍ରିରେ ଟାଟାନଗର ବାହାରିଗଲେ । ସେ ଲୋକଟି ପ୍ରତିଦିନ ସନ୍ଧ୍ୟାରେ ପାନପୋଷରୁ ତା କାମ ସାରି ଘରକୁ ଆଶ୍ରମ ବାଟଦେଇ ଫେରୁଥାଏ । ସ୍ୱାମୀଜୀ ଯିବା ବାସିଦିନ ସଂଧ୍ୟାରେ ଆଶ୍ରମର କେତେଜଣ ବଳୁଆ ଲୋକ ସେହି ଖ୍ରୀଷ୍ଟିଆନ ଯୁବକ ଆଶ୍ରମ ବାଟଦେଇ ଗଲାବେଳେ ତାକୁ କୌଶଳରେ ଡ଼ାକି ଆଣି ଆଶ୍ରମର ଅତିଥିଶାଳାରେ ପୁରାଇ ତାକୁ ଲୁହା ଛଡ଼ରେ ନିର୍ଘୁମ ମାଡ଼ ଦେଲେ ଏବଂ ସେ ଘରେ ବାନ୍ଧି ପକାଇ ଦେଇ କେତେଜଣ ବୟସ୍କ ଛାତ୍ରକୁ ଜଗାଇ ଦେଇ ଜିପ୍ ଧରି ପୋଲିସ୍ ଷ୍ଟେସନକୁ ବାହାରି ପଡ଼ିଲେ । ସେତେବେଳକୁ ମୁଁ ଉପାସନା ଶେଷ କରି ପଦାକୁ ଆସି ଦେଖିଲି ଜିପ୍ ବାହାରୁଛି । ସ୍ୱାମୀଜୀତ ନାହାନ୍ତି । ଗାଡି କୁଆଡ଼େ ଯାଇଛି ପଚାରିଲି । ପରେ ଜାଣି ପାରିବେ ବୋଲି କହି ବାହାରିଗଲେ । ଇତି ମଧ୍ୟରେ ସେ ବ୍ୟକ୍ତି ଭାଗ୍ୟ କ୍ରମେ କୌଶଳରେ ବନ୍ଧନରୁ ମୁକ୍ତ ହୋଇ କାଛଡ଼େଇଁ ଘୋସାରି ଘୋଷାରି ଯାଇ ନିକଟସ୍ଥ ଜଣକ ଘରେ ଶରଣ ପଶିଲା । ଘାତକ ମାନେ ଫେରିଆସି ସେ କେଉଁଠି ଅଛି ଜାଣି ପାରି ଦର୍ପଭରେ ଗୃହସ୍ୱାମୀଙ୍କୁ ତାକୁ ଛାଡ଼ି ଦେବାକୁ ଧମକ ଦେଲେ । କିନ୍ତୁ ସେ ଶରଣାଗତକୁ ଛାଡ଼ିଲା ନାହିଁ । ମୁଁ ରାତିରେ ଥରେ ଉଠି ଦେଖିଲା ବେଳକୁ ବେଦ ବିଦ୍ୟାଳୟ ଖୋଲା ଅଛି । ଆଲୁଅ ଜଳୁଛି । ସମସ୍ତ ଛାତ୍ର କ୍ଲାସ୍‌ରେ ବସିଛନ୍ତି । ଗୁରୁଜୀମାନେ ତାକୁ ଶିକ୍ଷାଦେଉଛନ୍ତି । ପୋଲିସ ଆସିଲେ କାଳେ କେଉଁ ଛାତ୍ର କ'ଣ କହିଦେବ ସେଥିପାଇଁ କୌଶଳ କରାଯାଇଛି । ରାତି ପାହିଲା । ମୁଁ କିମିତି ସେଠାରୁ ବାହାରି ଆସିବି ଚିନ୍ତାକଲି । ସ୍ୱାମୀଜୀତ ନାହାନ୍ତି । ମୋର ପାସ୍ ବୁକ୍ ଦେବାବ୍ ସେଠାକୁ ଟ୍ରାନସଫର କରିନେଇଥିଲି । ସେଥିରେ ମୋଟ ଟ୩୫ଙ୍କା ଥିଲା । ସେଥିରୁ ଟ ୩୦ ଟଙ୍କା ବାହାର କଲି । କିନ୍ତୁ କୌଣସି କାରଣରୁ ଦିନେ ଡ଼େରି ହୋଇଗଲା । ଇତି ମଧ୍ୟରେ ସ୍ୱାମୀଜୀଙ୍କୁ କୁଆଡ଼େ ଟେଲିଗ୍ରାମ୍ ହୋଇଥିଲା । ସେ ରାତି ରାତି ଆସି ପହଞ୍ଚିଲେ । ମୁଁ ଟ୍ରେନ୍‌କୁ ଯିବାକୁ ପ୍ରସ୍ତୁତ ଥିଲି । ତାଙ୍କୁ ଦେଖାକରିବାକୁ ଗଲି, ସେ ସେତିକିବେଳକୁ ବଡ଼ ବିବ୍ରତ ଓ ଚିନ୍ତିତ ଥିବା ଜଣାଗଲା । ମୋତେ ଦେଖି କହିଲେ "ସେ ଲୋକଟା ମତେ ମାରିଦେଇ ଥାନ୍ତା, ମୋ ଜୀବନ ନେଇ ଯାଇଥାନ୍ତା ।" ମୁଁ କିଛି ଉତ୍ତର ନଦେଇ ବିଦାୟ ନେଇ ଚାଲି ଆସିଲି । ବୁର୍ଲା ଯାଇ ସେଠାରେ କିଛି ଦିନ ରହି କଟକ ଫେରିଲି ।

ଶ୍ରୀବତ୍ସ ଜନ୍ମ ତିଥିରେ ଯୋଗ ଦେବାପାଇଁ ଶ୍ରୀବତ୍ସ ଗୋରକ୍ଷାଶ୍ରମକୁ ଗଲି ।

ସେତେବେଳକୁ ଭଞ୍ଜନଗର ଓ ବେଲଗୁଣ୍ଠାର କାଛ ବାଡ଼ମାନଙ୍କରେ ସ୍ୱାମୀଜୀଙ୍କ ଉକ୍ତ ନୃଶଂସକାଣ୍ଡ ସମ୍ପର୍କରେ ଲେଖାହୋଇଛି । ସ୍ୱାମୀଜୀ ମୋତେ ସନ୍ଦେହ କଲେ । କାରଣ ସେ କଥା କେବଳ ମୁଁ ଜାଣିଥିଲି । ସ୍ୱାମୀଜୀ ସେହି ରାଗରେ ମୋ ବିରୁଦ୍ଧରେ ନାନା କୁତ୍ସାରଟନା କଲେ । ମତେ ଜିପ୍ ମଡ଼ାଇ ଦେଇ ତୋଟି ଚିପି ଦେବେ ଇତ୍ୟାଡି କହିଲେ । କିନ୍ତୁ ପରେ ବୁଝିଲେ ଯେ ଭଞ୍ଜନଗର ଖ୍ରୀଷ୍ଟିଆନମାନେ ଏସବୁ କରିଛନ୍ତି ।

ମୁଁ ସେଠାରେ ଆଉ କେତେ ଦିନ ରହିଲି । ସ୍ୱାମୀ ତ୍ୟାଗାନନ୍ଦ ସରସ୍ୱତୀ ନାମକ ଜଣେ ବ୍ୟକ୍ତିକୁ ପଠାଇଲେ । ମୁଁ କି ଜାଣେ ? ମୁଁ ତ ସେଠାରେ ଦାୟିତ୍ୱ ତ୍ୟାଗ କରି ପଳାଇଯିବାକୁ ତିଆର । ତାକୁ ସମସ୍ତ ଦାୟିତ୍ୱ ଅର୍ପଣ କଲି । ସେ ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ନାନା ପ୍ରକାର ଉପଦ୍ରବ କଲେ । ମୁଁ ସେତେବେଳକୁ ଆଶ୍ରମରେ ନ ରହି ଗୁଡ଼ିପଲ୍ଲୀରେ ଥାଏ ଏବଂ ମୋର ଶିଷ୍ୟ ଭାସ୍କର ଘରେ ଖିଆପିଆ କରେ । ସ୍ୱାମୀଜୀ ଥରେ ଆସିଲେ । ସମସ୍ତ ଘଟଣା ବୁଝିଲେ, କିନ୍ତୁ ମୋ ପ୍ରତି ଏକ ସନ୍ଦେହ ଦୃଷ୍ଟି ରଖିଲେ । ମୁଁ ଏକ ଶୁଭ ମୁହୂର୍ତ୍ତରେ ସେ ଅଞ୍ଚଳ ତ୍ୟାଗ କରି ଗୋବରା ବାହାରି ଆସିଲି ।

## ପ୍ରବୋଧର ବିବାହ



ବାଞ୍ଛାନିଧି ପଟ୍ଟନାୟକଙ୍କ ପଞ୍ଚମ ପୁତ୍ର ପ୍ରବୋଧ ଓ ପୁତ୍ରବଧୂ ଲକ୍ଷ୍ମୀ

ଗୋଷାବାରେ ଅବସ୍ଥାନ କାଳରେ ମୋର ପଞ୍ଚମ ପୁତ୍ର ପ୍ରବୋଧ କୋରାପୁଟ ଜିଲ୍ଲାରେ ପରିବାର ନିୟନ୍ତ୍ରଣ ବିଭାଗରେ କମ୍ପ୍ୟୁଟର ଭାବରେ ଚାକିରି କରୁଥାଏ । ସେତେବେଳେ ଗୁଣ୍ଡୁପୁରରେ ତା'ର ବିବାହ ଉତ୍ସବ କରିବାପାଇଁ ମୁଁ ମୋ ସାଙ୍ଗ ଭୁଲା (ବାଞ୍ଛାନିଧି ଶତପଥି)ଙ୍କ ସହିତ ସେଠାକୁ ଯାଇଥିଲି । ପିଲାମାନେ ନିଜ ନିଜ ଚାକିରି ସ୍ଥାନରୁ ଯାଇ ସେଠାରେ ଏକତ୍ରିତ ହେଲେ । ତା. ୮.୬.୧୯୬୯ରେ ଗୁଣ୍ଡୁପୁରର କନ୍ୟା ଲକ୍ଷ୍ମୀଙ୍କ ସହିତ ପ୍ରବୋଧର ବିବାହ ସଂପନ୍ନ ହୋଇଥିଲା ।

## ଗୋବରାର ଅବସ୍ଥାନ

୧୯୨୭ରେ ମହାତ୍ମାଗାନ୍ଧୀ ଖଦୀ ଗସ୍ତରେ ଆସି ଗୋବରାଠାରେ ପଦାର୍ପଣ କରିଥିବା କଥା ପୂର୍ବେ ବର୍ଣ୍ଣନା କରାଯାଇଛି । ସେହି ସ୍ଥାନରେ ଗୋଟିଏ ସ୍ମୃତି ରକ୍ଷା କରିବା କଳ୍ପନା ଥିଲା । ବର୍ତ୍ତମାନ ସେ ସୁଯୋଗ ମିଳିଲା । ଉପେନ୍ଦ୍ର ଭଞ୍ଜ କଳା ସଂସଦ ପୁନର୍ଜୀବିତ ହେଲା । ଦିବ୍ୟ ଜୀବନ ସଙ୍ଘ, ଅରବିନ୍ଦ ପାଠଚକ୍ର ଇତ୍ୟାଦି ସଂଗଠିତ ହେଲା । କେତେଦିନ ସଡ଼କ ନିକଟସ୍ଥ ଶ୍ରୀ ନୀଳାମ୍ବର (ଦୁର୍ଯ୍ୟୋଧନ) ତ୍ରିପାଠୀଙ୍କ ନୂତନ ଘରେ ଏବଂ ପରେ ମୋ ଭାଇ ପୁରୁଷୋତ୍ତମର ଘରେ ରହିଲି । ତାପରେ ପ୍ରସ୍ତାବିତ ଗାନ୍ଧୀ ସ୍ମୃତି ମନ୍ଦିର ନିକଟରେ ଗୋଟିଏ ଛୋଟିଆ ନଡ଼ା ଛପର ଘର ତିଆରି କରି ସେଠାରେ ରହିଲି । ସେତିକି ବେଳେ ମୋର ପଞ୍ଚମ ପୁତ୍ର ପ୍ରବୋଧଚନ୍ଦ୍ର ଗୋବରାକୁ ପରିବାର ନିୟନ୍ତ୍ରଣ ବିଭାଗର Computer ଭାବରେ ବଦଳି ହୋଇ ଆସିଲା । ତା ପରିବାର ସହ ସେହି ନବ ନିର୍ମିତ ଘରେ ବାସ କରିବାକୁ ଲାଗିଲି ।

## ସର୍ବୋଦୟ ସମ୍ମିଳନୀ ପାଇଁ କୁରୁକ୍ଷେତ୍ର ଯାତ୍ରା

୧୯୭୩ ମସିହା ଏପ୍ରିଲ ମାସରେ ମୁଁ ଅନ୍ୟ କେତେଜଣଙ୍କ ସହିତ କୁରୁକ୍ଷେତ୍ରରେ ହୋଇଥିବା ସର୍ବୋଦୟ ସମ୍ମିଳନୀରେ ଯୋଗଦେବାକୁ ଯାଇଥିଲି । ଦିଲ୍ଲୀରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରତିରକ୍ଷା ବିଭାଗର ଉପମନ୍ତ୍ରୀ ଥିଲେ । ଆମମାନଙ୍କ ଭିତରୁ କେତେକଙ୍କ ପେନ୍‌ସନ୍ ସେତେବେଳକୁ ମଞ୍ଜୁର ହୋଇନଥିଲା । ତାଙ୍କୁ ଏ କଥା ଜଣାଇଲୁ । ସେ ଫୋନ୍ ଦ୍ୱାରା ବୁଝିଲେ । ତା'ପରେ ଆମ୍ଭେମାନେ ସେହି ଅଫିସକୁ ଯାଇ ଆମ ଓଡ଼ିଶାର ତତ୍ତ୍ୱାବଧାରକଙ୍କୁ ଦେଖାଇଲୁ । ସେ ବଡ଼ ଆଦରରେ ଆମ୍ଭମାନଙ୍କୁ ସତ୍କାର କଲେ ଏବଂ ଆମ ଦରଖାସ୍ତମାନ ତାଙ୍କ ଅଫିସରୁ ଖୋଜି ବାହାର କଲେ । ସଙ୍ଗେ ସଙ୍ଗେ ଶ୍ରୀ କାମନା ପଣ୍ଡା ଓ ମୋର ପେନ୍‌ସନ ମଞ୍ଜୁର କରାଇଦେଲେ ।

ତା'ପରେ ଆମେ ସବୁ ସର୍ବୋଦୟ ସମ୍ମିଳନୀରେ ଯୋଗଦେଇ ଦିଲ୍ଲୀ, ମଥୁରା, ବୃନ୍ଦାବନ, ଆଗ୍ରା ପ୍ରଭୃତି ଦେଇ ଫେରିଲୁ ।

## ମନସ୍ୱିନୀର ବିବାହ

ମୋର କନିଷ୍ଠା କନ୍ୟା ମନସ୍ୱିନୀ ବି.ଏସ୍.ସି ପାସ୍ କରି ବି.ଇଡି. କରିଥିଲା । ତା'ର ବିବାହ ଖଣ୍ଡପଡ଼ା ନିକଟ ରାଣୀପଡ଼ା ଗ୍ରାମର ଶ୍ରୀ ବାସୁଦେବ ପଟ୍ଟନାୟକଙ୍କ ପୁତ୍ର ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକଙ୍କ ସହିତ କରିବାପାଇଁ ସ୍ଥିର ହେଲା । ସେ ଜଳସେଚନ ବିଭାଗରେ ଜୁନିୟର ଇଂଜିନିୟର ଭାବରେ କାର୍ଯ୍ୟରତ ଥିଲେ । ସେତେବେଳେ ମୋର ଚତୁର୍ଥ ପୁତ୍ର ପ୍ରସନ୍ନ ଆସିଷ୍ଟାଣ୍ଟ ଇଂଜିନିୟର ଭାବରେ ବ୍ରହ୍ମପୁରରେ ଅବସ୍ଥାପିତ ହୋଇଥିଲା । ତା'ର ବାସଭବନରେ ମନସ୍ୱିନୀର ବିବାହ ତା ୬.୧୧.୧୯୭୩ରେ ଅନୁଷ୍ଠିତ ହୋଇଥିଲା ।



ବାଞ୍ଛାନିଧି ପଟ୍ଟନାୟକଙ୍କ କନିଷ୍ଠା କନ୍ୟା ମନସ୍ୱିନୀ ଓ ଜାମାତା ପ୍ରସନ୍ନ କୁମାର

# ଗାନ୍ଧୀକୂପ, ଗାନ୍ଧୀସ୍ତୁପ, ଗାନ୍ଧୀମଣ୍ଡପ

ମହାତ୍ମା ଗାନ୍ଧୀ ଉତ୍କଳକୁ ଖଦୀ ଗସ୍ତରେ ଆସିଥିବାବେଳେ ଗୋବରାଠାରେ ୬/୧୨/୨୭ରେ ପଦାର୍ପଣ କରିଥିଲେ । ଏ ବିଷୟ ଯଥାସ୍ଥାନରେ ବର୍ଣ୍ଣନା କରାଯାଇଛି । ସେହି ସ୍ମୃତି ଜାଗ୍ରତ ରଖିବା ଉଦ୍ଦେଶ୍ୟରେ ଉପେନ୍ଦ୍ର ଭଞ୍ଜ କଳା ସଂସଦ ପକ୍ଷରୁ ଗାନ୍ଧୀ କୂପ, ଗାନ୍ଧୀ ସ୍ତୁପ ଏବଂ ଗାନ୍ଧୀ ମଣ୍ଡପ ନିର୍ମାଣ କରିବା ସ୍ଥିର ହେଲା । ସର୍ବସାଧାରଣଙ୍କଠାରୁ ଚାନ୍ଦା ସଂଗ୍ରହ କରି ଏ କାର୍ଯ୍ୟ ସଂପନ୍ନ କରିବା ପାଇଁ ନିର୍ଦ୍ଧାରଣ ହେଲା । ସଙ୍ଗେ ସଙ୍ଗେ କାର୍ଯ୍ୟ ମଧ୍ୟ ଆରମ୍ଭ ହେଲା । ପ୍ରଥମେ ଗାନ୍ଧୀ ସ୍ତୁପର ଗୋବରା ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରର ଡାକ୍ତର ଶ୍ରୀ ବିଜୟାନନ୍ଦ ପଟ୍ଟନାୟକଙ୍କ ଦ୍ୱାରା ଶୁଭ ଦିଆଗଲା । ବାସୁଦେବପୁର ନିବାସୀ ଇଞ୍ଜିନିଅର ଶ୍ରୀ ଜଗନ୍ନାଥ ତ୍ରିପାଠୀ ଏହି ସ୍ତୁପ ନିର୍ମାଣ କାର୍ଯ୍ୟରେ ବିଶେଷ ଭାବରେ ସାହାଯ୍ୟ କରିଥିଲେ ।

ତା'ପରେ କର୍ଣ୍ଣାଟକ ଦେଶର ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ରୁଦ୍ରାପ୍ପା ମଲ୍ଲାପ୍ପା ବବଲେଶ୍ୱର ପରବର୍ତ୍ତୀ କାଳରେ ରୁଦ୍ରଦେବ ଶାସ୍ତ୍ରୀ (ଓଡ଼ିଶାର ସର୍ବସାଧାରଣଙ୍କ ନିକଟରେ ବବଲେଶ୍ୱର ନାମରେ ପରିଚିତ) ସେହି ସମୟରେ ତାଙ୍କ ବନ୍ଧୁମାନଙ୍କୁ ଦେଖିବା ଉଦ୍ଦେଶ୍ୟରେ ଏ ଅଞ୍ଚଳକୁ ଆସିଥିବା ବେଳେ ଆମ୍ଭମାନଙ୍କ ଅନୁରୋଧରେ ଗାନ୍ଧୀକୂପର ଶୁଭାରମ୍ଭ କରିଥିଲେ । ଘୁମୁସରର ତତ୍କାଳୀନ ଆର.ଡ଼ି.ଓ., ହରିଜନମାନଙ୍କ ବସ୍ତିରେ କୂପ ଖନନ ପାଇଁ ଆସିଥିବା ଗ୍ରାଣ୍ଟରୁ ଗୋବରା ଓ ବାସୁଦେବପୁରର ହରିଜନମାନଙ୍କ ବ୍ୟବହାର ଉଦ୍ଦେଶ୍ୟରେ ଏହି କୂପ ପାଇଁ କେତେ ଟଙ୍କା ମଞ୍ଜୁର କରିଥିଲେ । କୂପ ସର୍ବଶୁଭରେ ସଂପନ୍ନ ହେଲା । ଏ ଦୁଇ ଗ୍ରାମରେ ଯେତେ କୂପ ଅଛି ସମସ୍ତ କୂପର ଜଳ ଅପେକ୍ଷା ଏହି କୂପର ଜଳ ମଧୁର ହେଲା ଏବଂ ବହୁ ଲୋକଙ୍କ ଉପକାରରେ ଆସିଲା ।

ପାନପୋଷ ବୈଦିକାଶ୍ରମ ଏବଂ ଶ୍ରୀବସ୍ତ ଗୋରକ୍ଷାଶ୍ରମରେ ଆର୍ଯ୍ୟ କନ୍ୟାଗୁରୁକୁଳର ପ୍ରତିଷ୍ଠାତା ଆର୍ଯ୍ୟଧର୍ମ ପ୍ରଚାରକ ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀଙ୍କ ଦ୍ୱାରା ଗାନ୍ଧୀ ମଣ୍ଡପର ଭିତ୍ତିସ୍ଥାପନ କରାଯାଇଥିଲା । ସେ ମହାଶୟ ପ୍ରଥମେ ଟ ୧୦୧ ଙ୍କା ଓ ପରେ ଟ୫୦୦ଙ୍କା ପ୍ରଦାନ କରିଥିଲେ । ସାଧାରଣ ଚାନ୍ଦାରେ ମଣ୍ଡପର କେତେକାଂଶ ନିର୍ମାଣ ହେବାପରେ ତତ୍କାଳୀନ ଓଡ଼ିଶାର ମନ୍ତ୍ରୀ, ହରିଜନ ସେବକ ସଂଘର ସଭାପତି, ନିମଖଣ୍ଡୀ ଠକ୍କର୍ ବାପା ଆଶ୍ରମ ପ୍ରତିଷ୍ଠାତା, 'ସେବକ' ପତ୍ରିକାର ସମ୍ପାଦକ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ମୋହନ ନାୟକ କେନ୍ଦୁପତ୍ର ଗ୍ରାଣ୍ଟରୁ ଏହି ମଣ୍ଡପ ପାଇଁ ଟ୨୦୦୦ଙ୍କା ମଞ୍ଜୁର କରିଥିଲେ ।

ଏ ଗ୍ରାଣ୍ଟ ମଞ୍ଜୁର ହୋଇ ଆସିଲା ବେଳକୁ ମୁଁ ଅସୁସ୍ଥତା ଯୋଗୁଁ ଗୋବରା ଛାଡ଼ି

କଟକ ବାହାରି ଆସିବା ପାଇଁ ତିଆର । ନୋହିଲା ରୋଗମାନ ସବୁ ଆସି ଆକ୍ରମଣ କଲା । ପାଦରେ ଏକ୍‌ଜିମା, ଶ୍ୱାସ, କାଶ ଦୁର୍ବଳତା ଇତ୍ୟାଦି । ବେଲଗୁଣ୍ଠା ବି.ଡ଼ି.ଓ.କୁ କହିଲି ସେ ଟଙ୍କା ସେ ନିଜ ତତ୍ତ୍ୱାବଧାନରେ ରଖି ବ୍ଲକ ତରଫରୁ ଉକ୍ତ ମଣ୍ଡପ କାମ ସମ୍ପାଦନ କରନ୍ତୁ । ସେ ସରକାରଙ୍କ ଠାରୁ ଅନୁମତି ଆଣି କଣ୍ଟ୍ରାକ୍ଟର ନିଯୁକ୍ତ କରି ସେ କାମ ସମ୍ପୂର୍ଣ୍ଣ କରିବେ ବୋଲି କହିଲେ । ପରେ ପରେ ଅନେକ ବିଡ଼ିଓ ଆସିଲେ, କିନ୍ତୁ ତାର ତତ୍ତ୍ୱ କେହି ନେଲେ ନାହିଁ ।

ବହୁତ କୁହାବୋଲା ପରେ ମଣ୍ଡପ କାର୍ଯ୍ୟ ପୂରଣ କଲେ, କିନ୍ତୁ ଦ୍ୱାର ଝରକାରେ କବାଟ ଲଗାଇଲେ ନାହିଁ । ମୋର ସ୍ୱାସ୍ଥ୍ୟଗତ କାରଣରୁ ମୁଁ ଆଉ ସାଧାରଣ କାର୍ଯ୍ୟରେ ଲିପ୍ତ ରହିପାରିଲି ନାହିଁ ।

ଗୋବରାରେ ମୁଁ କରିଥିବା ଆଶ୍ରମ (ଲୋକେ ତାକୁ ଆଶ୍ରମ ବୋଲି କହନ୍ତି) ଭାଙ୍ଗିଦେଇ କଟକ ବାହାରି ଆସିଲି । ଏକ୍‌ଜିମା ପାଇଁ ମୁଁ ଅନ୍ୟ ଔଷଧ ବ୍ୟବହାର ନ କରି ଜଣେ ହୋମିଓପ୍ୟାଥି ଚିକିତ୍ସକଙ୍କ ପରାମର୍ଶରେ 'ଲାଇକୋପୋଡ଼ିୟମ'ର ଉଚ୍ଚଶକ୍ତିର ପାନେ ଦି ପାନ ସେବନ କଲି । ଅତି ଆଶ୍ଚର୍ଯ୍ୟ ଭାବରେ ଏକ୍‌ଜିମା ସଂପୂର୍ଣ୍ଣ ଆରୋଗ୍ୟ ହୋଇଗଲା । କଟକରେ ଅନ୍ୟ ଜଣେ ହୋମିଓପ୍ୟାଥି ଚିକିତ୍ସକ ଏକଥାଶୁଣି ପୁଣି ଏରୋଗ ବାହାରିବ ବୋଲି କହିଲେ । ସତକୁ ସତ କେତେ ଦିନପରେ ପୁଣି ଦେଖାଦେଲା । ଶ୍ୱାସ ରୋଗ ମଧ ଥାଏ । କେହି କେହି କହନ୍ତି ଶ୍ୱାସ ଭଲ ହେଲେ ଏକ୍‌ଜିମା ବାହାରିବ । ଏକ୍‌ଜିମା ଭଲ ହେଲେ ଶ୍ୱାସ ବାହାରିବ । କିନ୍ତୁ ମୁଁ ଦେଖିଲି ଉଭୟ ଏକା ସଙ୍ଗେ ରହିଥାଏ । ଇତି ମଧରେ ମୁଁ ଦିଲ୍ଲୀ ଗଲି । ଦିଲ୍ଲୀ ନିକଟସ୍ଥ ଚାନ୍ଦିପୁର ଉଡ଼ାଜାହାଜ ଶିବିରରେ ମୋର କନିଷ୍ଠ ପୁତ୍ର ପ୍ରଭାସ ଥାଏ । ସେଠାରେ ତା ପାଖରେ ରହିଲି । ଏକ୍‌ଜିମା ପାଇଁ ନାନାପ୍ରକାର ବାହ୍ୟ ପ୍ରୟୋଗ କଲି । ଭଲ ହେବା ଦେଖିଲି ନାହିଁ । ଶେଷରେ ପ୍ରାକୃତିକ ଚିକିତ୍ସା ବିଲାମାଟି ପ୍ରୟୋଗ କଲି । କେତେଦିନ ପ୍ରୟୋଗ କରିଛି ସଂପୂର୍ଣ୍ଣ ଉପଶମ ହୋଇଗଲା । ସେଠାରେ ଦୁଇମାସ ଏବଂ ଦିଲ୍ଲୀରେ ମୋର ନାତି ବିନୟଭାନୁ ପାଖରେ ଦୁଇମାସ ରହିଲି । ଏ ଉଭୟ ସ୍ଥଳରେ ଶ୍ୱାସ ରୋଗର ପ୍ରକୋପ ଦେଖାଗଲା ନାହିଁ । ସେଠାରୁ ଫେରି ବାଲେଶ୍ୱରରେ ମୋର ତୃତୀୟ ପୁତ୍ର ପ୍ରଶାନ୍ତ (ସେତେବେଳେ ସେ ସେଠାରେ Additional District Magistate) ନିକଟରେ ରହିଲି । ସେତେବେଳେ ଶ୍ୱାସରୋଗ ଥାଏ । ସେଠାର ଜଣେ ଅବସର ପ୍ରାପ୍ତ ଏଲୋପ୍ୟାଥି ଡାକ୍ତରଙ୍କ ଠାରୁ ଏଲୋପ୍ୟାଥି ଔଷଧ ବ୍ୟବହାର କଲି । ସେ ଏହି ରୋଗକୁ Chronic Bronchitis ବୋଲି ସ୍ଥିର କଲେ । ସାମାନ୍ୟ କେତେଦିନ ମଧରେ ଶ୍ୱାସ ଉପଶମ ହେଲା କିନ୍ତୁ ତା ଏକରକମ ଯାପ୍ୟ ହୋଇ ରହିଛି । କୋଟାସ୍‌ମିଲ୍ ନାମକ ଏକ ଔଷଧ ପ୍ରତିଦିନ ସେବନ କରି ରୋଗର ପ୍ରକୋପ ବନ୍ଦ କରିବାକୁ ପଡ଼େ ।

॥ ୧୮୩ ॥

# ପ୍ରଭାସର ବିବାହ

ମୋର କନିଷ୍ଠ ପୁତ୍ର ପ୍ରଭାସ ବୁର୍ଲାରୁ ଇଂଜିନିୟରିଂ ପାସ୍ କରି ବାୟୁସେନାରେ ଯୋଗ ଦେଇଥିଲା । ୧୯୭୬ ମସିହାରେ ସେ ଜାମ୍‌ନଗରରେ Flying Officer ଭାବରେ କାର୍ଯ୍ୟରତ ଥିଲା । ତା'ର ବିବାହ କଟକ ଜିଲ୍ଲା ସାଉନ୍ଦାଙ୍କ ପୀଠ ଝଙ୍କଡ଼ ଗ୍ରାମର ଶ୍ରୀ ଗୋପାଳ କୃଷ୍ଣ ଦାସଙ୍କ କନ୍ୟା ମୀରାଙ୍କ ସହିତ କରିବା ପାଇଁ ସ୍ଥିର ହେଲା । ଶ୍ରୀ ଗୋପାଳ କୃଷ୍ଣ ଦାସ ସେତେବେଳେ ବ୍ରହ୍ମପୁରରେ ଜଙ୍ଗଲ ବିଭାଗର କନ୍‌ଜେର୍‌ଭେଟର୍ ଭାବରେ କାର୍ଯ୍ୟରତ ଥିଲେ । ମୋର ଚତୁର୍ଥ ପୁତ୍ର ପ୍ରସନ୍ନ ଓ ତା'ର ସ୍ତ୍ରୀ ଡକ୍ଟର ଶୈଳ ଉଭୟେ ଭଞ୍ଜନଗରରେ ଅବସ୍ଥାପିତ ହୋଇଥିଲେ । ସେମାନଙ୍କ ସରକାରୀ ବାସଭବନରେ ୧୬-୧୧-୧୯୭୬ରେ ପ୍ରଭାସ ଓ ମୀରାଙ୍କ ବିବାହ ଅନୁଷ୍ଠିତ ହୋଇଥିଲା ।



ବାଞ୍ଛାନିଧି ପଟ୍ଟନାୟକଙ୍କ କନିଷ୍ଠ ପୁତ୍ର ପ୍ରଭାସ ଓ ପୁତ୍ରବଧୂ ମୀରା

## ଦିଲ୍ଲୀରେ ଗଣତନ୍ତ୍ର ଦିବସ

ସେହି ବର୍ଷର ଗଣତନ୍ତ୍ର ଦିବସର ମହା ଆଡ଼ମ୍ବରପୂର୍ଣ୍ଣ ଉତ୍ସବ ଦେଖିବା ସୁଯୋଗ ପାଇଥିଲି । ରାଷ୍ଟ୍ରପତି ଭବନ ଏବଂ ଦିଲ୍ଲୀ ସେକ୍ରେଟରୀଏଟ୍ ମଇଦାନରେ ସେ ଉତ୍ସବ ପାଳିତ ହୁଏ । ଦେଶ ତଥା ବିଦେଶର ବହୁ ଲୋକଙ୍କ ସମାଗମ ହୋଇଥାଏ । ଓଟ, ଘୋଡ଼ା, ପଦାତିକ ବାହିନୀ, ଏନ୍.ସି.ସି. ଛାତ୍ରମାନଙ୍କର ପେରେଡ୍ (Parade), ନାନା ପ୍ରଦେଶରୁ ଆସିଥିବା ନାନାପ୍ରକାର ନାଚ, ତାମସା, ଆତସବାଜି, ଉଡ଼ାଜାହାଜ ମାନଙ୍କର ବିଭିନ୍ନ ପ୍ରକାର ଚାଳନ କୌଶଳ, ସର୍ବୋପରି ଦୁଇଘୋଡ଼ା ଯୋଚା ବଗିରେ ରାଷ୍ଟ୍ରପତିଙ୍କ ସଭାସ୍ଥଳକୁ ବିଜେ ହେବା ପଟୁଆର ପ୍ରଭୃତି ବୃଥା ବହୁଅର୍ଥ ଶ୍ରାଦ୍ଧ ଆଡ଼ମ୍ବର ଦେଖି ମନେହେଲା ଏହା ଦରିଦ୍ର ଭାରତବାସୀଙ୍କ ଗଣତନ୍ତ୍ର ନୁହେଁ । ସାଧାରଣ ଲୋକମାନେ ତ ଏହା ପାଳନ କରନ୍ତି ନାହିଁ । କେବଳ ସରକାରଙ୍କ ପକ୍ଷରୁ ଏ ଲୋକ ଦେଖାଣିଆ ଉତ୍ସବ କାହିଁକି ? ସର୍ବସାଧାରଣ ଲୋକେ ଯଦି ଏହାର ମହତ୍ତ୍ୱ ବୁଝିଥାନ୍ତେ ତେବେ ଘରେ ଘରେ ଯେପରି ଓଷା ପୁଣ୍ୟ ପର୍ବ ପାଳିତ ହେଉଛି ସେପରି ହେଉଥାନ୍ତା । ନାଚ ତାମସା ଦେଖିବା



**ବିଦେଶାଗତ ପର୍ଯ୍ୟଟକମାନେ ପୁରୀ ସମୁଦ୍ରକୂଳରେ ବାଞ୍ଛାନିଧି ପଟ୍ଟନାୟକଙ୍କ ଉଠାଇଥିବା ଫଟୋ**

ପାଇଁ ଲୋକେ କୌତୁହଳ ବଶତଃ ଯେପରି ଭିଡ଼ ହୁଅନ୍ତି ଏହା ସେପରି ଏକ ତାମସା ମାତ୍ର । ଦିଲ୍ଲୀରେ ଶ୍ରୀରାମ ନବମୀ ଉତ୍ସବରେ ରାବଣ, କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ପ୍ରଭୃତିଙ୍କର ବିଶାଳ ପ୍ରତିକୃତି ମାନ ପୋଡ଼ା ହେଲାବେଳେ ଯେତେ ଲୋକ ଉତ୍ସାହର ସହ ଯୋଗଦେଇ ଜାତୀୟ ପର୍ବମାନ ପାଳନ କରୁଥାନ୍ତି ତା ତୁଳନାରେ ଗଣତନ୍ତ୍ର ଉତ୍ସବ କିଛି ନୁହେଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଲୋକେ ଏହିପରି ଅନ୍ୟାନ୍ୟ ଧାର୍ମିକ ପର୍ବମାନଙ୍କରେ ଯେପରି ଉତ୍ସାହ ଓ ଆଗ୍ରହ ଦେଖାଇଥାନ୍ତି ଏ ବିରାଟ ବ୍ୟୟ ବହୁଳ ଗଣତନ୍ତ୍ର ଉତ୍ସବରେ ସେପରି ଆଗ୍ରହ ଦେଖାଯାଏ ନାହିଁ । ଏହା ଏକ ପ୍ରହସନ ମାତ୍ର ।

ଆଉ ଏକ ଆଚମ୍ବିତ କଥା । ରାଷ୍ଟ୍ରପତିଙ୍କ ପାଇଁ ଉଦ୍ଦିଷ୍ଟ ଘୋଡ଼ା ଗାଡ଼ିଟି ଆଉ କେବେ କୌଣସି କାର୍ଯ୍ୟରେ ବ୍ୟବହୃତ ହୁଏ ନାହିଁ । କେବଳ ସ୍ୱାଧୀନତା ଦିବସ ଏବଂ ଗଣତନ୍ତ୍ର ଦିବସ ପାଇଁ ଏହା ଉଦ୍ଦିଷ୍ଟ ହୋଇ ରଖାଯାଇଥାଏ । ମନ୍ଦିରମାନଙ୍କରେ ଦେବ ଦେବୀଙ୍କ ଉଦ୍ଦେଶ୍ୟରେ ଏପରି ବିମାନ ଓ ରଥ ରଖାଯାଇଥାଏ । କିନ୍ତୁ ସେ ରଥ ଓ ବିମାନ ପାଇଁ ଦୈନିକ କିଛି ଖର୍ଚ୍ଚ ନାହିଁ । ବଗି ପାଇଁ ଘୋଡ଼ାମାନଙ୍କର ଖାଦ୍ୟପେୟ,

---



ଅନୁଗୁଳରେ ଚତୁର୍ଥ ପୁତ୍ର ପ୍ରସନ୍ନ ଚନ୍ଦ୍ରଙ୍କ ବାସଭବନରେ ବାଞ୍ଛାନିଧି ପଟ୍ଟନାୟକ

---

ରକ୍ଷଣାବେକ୍ଷଣ, ରୋଗ ହେଲେ ଔଷଧ, ଡାକ୍ତରଙ୍କ ପାରିଶ୍ରମିକ, ଘୋଟକଶାଳା, ରକ୍ଷକର ଦରମା ଇତ୍ୟାଦି କେତେ ଖର୍ଚ୍ଚ ହେଉଥିବ ଅନୁମେୟ। ରାଷ୍ଟ୍ରପତି ତ ଆମ୍ଭମାନଙ୍କର ସର୍ବୋଚ୍ଚ ଗଣଦେବତା। ତାଙ୍କପାଇଁ କରାଯାଉଥିବା ବୃଥା ବ୍ୟୟ ବାହୁଲ୍ୟରେ କିଛି ଦୋଷ ନାହିଁ।

ବର୍ତ୍ତମାନର ରାଷ୍ଟ୍ରପତି ଭବନ ବ୍ରିଟିଶ୍ ସରକାର ଅମଳର ବଡ଼ଲାଟ ବା ଭାଇସ୍‌ରାୟ ଭବନ ବହୁ ଅର୍ଥବ୍ୟୟରେ ଏହି ବିଶାଳ ଭବନ ଆଜକୁ ୬୫ ବର୍ଷ ତଳେ ନିର୍ମିତ ହୋଇଥିଲା। ଦିଲ୍ଲୀରେ ରାଷ୍ଟ୍ରପତି ଅତ୍ୟୁଚ୍ଚ ରାଜକୀୟ ମର୍ଯ୍ୟାଦା ଏବଂ ଆଡ଼ମ୍ବରରେ ଏହି ଭବନରେ ବାସ କରନ୍ତି। ଏହା ସମଗ୍ର ପୃଥିବୀରେ ଏକ ସୁନ୍ଦର ଏବଂ ବ୍ୟୟ ବହୁଳ ପ୍ରାସାଦ। ସେତେବେଳେ ଏହି ପ୍ରାସାଦ ନିର୍ମାଣରେ ୧୨୦ ଲକ୍ଷ ଟଙ୍କା ବ୍ୟୟିତ ହୋଇଥିଲା। ଏବେ ତା'ର ମୂଲ୍ୟ ପ୍ରାୟ ୨୦/୩୦ ଗୁଣ ବଢ଼ିଯିବ। ଏଥିରେ ୩୪୦ ଗୋଟି ପ୍ରକୋଷ୍ଠ, ୭୪ଗୋଟି ଲବି, ୧୮ଟି ସିଡ଼ି, ୨୭ଟି ଝରଣା ଅଛି। ଏହା ଦୁଇ ହେକ୍ଟର ପରିମିତ ଜମିରେ ନିର୍ମିତ ଏବଂ ଏହାର ଚତୁର୍ଦ୍ଦିଗରେ ୧୩୩



**ଅନୁଗୁଳରେ ଅବସ୍ଥାନ କାଳରେ ରୋଗଶଯ୍ୟାରୁ ଉଠି ନିଜ ଧର୍ମପତ୍ନୀଙ୍କ ସହିତ ବାଞ୍ଛାନିଧି ପଟ୍ଟନାୟକ**

ହେକ୍ଟର ପରିମିତ ବିଶାଳ ମୋଗଲ ଉଦ୍ୟାନ । ଏହି ଉଦ୍ୟାନରେ ଅନେକ କେନାଲ ଏବଂ ଚତୁଷ୍କୋଣ ଦ୍ୱୀପମାନ ବିରାଜିତ । ଏହାଛଡ଼ା ରାଷ୍ଟ୍ରପତିଙ୍କ ପାଇଁ ଆଉ ଦୁଇଗୋଟି ପ୍ରାସାଦ । ଗୋଟିଏ ସିମିଳାରେ ୩୬୦ପ୍ରକୋଷ୍ଠ ବିଶିଷ୍ଟ ଇଂରେଜ ଏଲିଜାବେଥାନ ଢଙ୍ଗରେ ଈଷତ୍ ନୀଳବର୍ଣ୍ଣ ଚୂନ ପଥର ନିର୍ମିତ ପ୍ରାସାଦ । ପାଚେରୀ ମଧ୍ୟରେ ଆଉ ୨୬ଟି କ୍ୱାର୍ଟର କର୍ମଚାରୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଏହି କର୍ମଚାରୀ ମାନଙ୍କର ସଂଖ୍ୟା ଏକଦା ୮୦୦ ଥିଲା । ଏଠାରୁ ଦୁଇ ମାଇଲ ଦୂରରେ ସସର୍ଦା ନାମକ ସ୍ଥଳରେ ରାଷ୍ଟ୍ରପତିଙ୍କ ପୁରାତନ ଗ୍ରୀଷ୍ମନିବାସ । ଏହା ୧୮୪୦ରେ ନିର୍ମିତ ହୋଇଥିଲା । ଦାକ୍ଷିଣାତ୍ୟ ସହ ସଂପର୍କ ରଖିବା ଉଦ୍ଦେଶ୍ୟରେ ହାଇଦରାବାଦଠାରେ ଆଉ ଏକ ପ୍ରାସାଦ ୧୯୫୫ରେ ନିର୍ମିତ ହୋଇଥିଲା ।

ଏକ ପୁରାତନ ହିସାବ ପ୍ରକାରେ ଏହି ରାଷ୍ଟ୍ରପତି ଭବନରେ ବାର୍ଷିକ ୮୦କୋଟି ଟଙ୍କା ବ୍ୟୟିତ ହୁଏ । ଭାରତର ପ୍ରଥମ ରାଷ୍ଟ୍ରପତି ଲର୍ଡ ମାଉଣ୍ଟ୍ ବାଟେନ୍ ଏକ ନୂତନ ସ୍ୱାଧୀନ ଜାତିର ଏଡ଼େ ବଡ ବ୍ୟୟ ବହୁଳ ଭବନରେ ନ ରହି ଅନ୍ୟ ଅପେକ୍ଷାକୃତ କ୍ଷୁଦ୍ର ଗୃହ ଯୋଗାଇବାପାଇଁ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କୁ କହିଥିଲେ । ସେ କଥା ପରେ ଦେଖାଯିବ ବୋଲି ସେତେବେଳେ ପ୍ରଧାନମନ୍ତ୍ରୀ କହିଥିଲେ ।

ରାଷ୍ଟ୍ରପତିଙ୍କ ମାସିକ ଦରମା ଦଶହଜାର ଟଙ୍କା । ଏହାଛଡ଼ା ବାର୍ଷିକ ଭତ୍ତା ପାନ୍ତି ପନ୍ଦର ହଜାର । ତାଙ୍କର ତତ୍ତ୍ୱ ନେବାପାଇଁ ଦୁଇଟି ବଡ଼ ବଡ଼ ଶାସନ ବିଭାଗ ଅଛି । ସାଧାରଣ ସେକ୍ରେଟରୀ ବିଭାଗ ଏବଂ ସାମରିକ ସେକ୍ରେଟେରୀ ବିଭାଗ । ତାଙ୍କ ନିଜ ବ୍ୟବହୃତ ବିଦେଶୀ କାର୍ ଛଡ଼ା, ଅସଂଖ୍ୟ ଗାଡ଼ି, କର୍ମଚାରୀ, କିରାନୀ, ପିଅନ, ଚାକର ବାକର ପ୍ରାୟ ଦୁଇ ହଜାର । ଗୃହ ସାଜ ସଜ୍ଜା ଏବଂ ଉଦ୍ୟାନାଦି ପାଇଁ ଆଉ ଏକ ସ୍ୱତନ୍ତ୍ର ବିଭାଗ ରହିଛି ।

ବିଭିନ୍ନ ବିଷୟରେ ତାଙ୍କର ସେବାପାଇଁ ବିଶେଷଜ୍ଞ ମାନେ ନିଯୁକ୍ତ ହୋଇଥାନ୍ତି । ଦିଲ୍ଲୀରୁ ଅନ୍ୟ ସ୍ଥାନକୁ ଗସ୍ତରେ ଗଲାବେଳେ ତାଙ୍କର ସେବା ପାଇଁ ଜଣେ ଡାକ୍ତର ଯାଇଥାନ୍ତି । ଆପତ୍‌କାଳୀନ ଚିକିତ୍ସା ପାଇଁ ସମସ୍ତ ଜିନିଷ ହାତ ପାତିଲା ମାତ୍ରକେ ମିଳିବା ଭଳି ବ୍ୟବସ୍ଥା କରି ରଖାଯାଇଥାଏ । ସମ୍ଭବତଃ ଏସବୁ ନିତାନ୍ତ ପ୍ରୟୋଜନ, ଯେହେତୁ ରାଷ୍ଟ୍ରପତିଙ୍କ ଜୀବନ ଅତ୍ୟନ୍ତ ମୂଲ୍ୟବାନ ।

ରାଷ୍ଟ୍ରପତିମାନେ ଅବସର ନେବାପରେ ସେମାନଙ୍କ ଜୀବନ କାଳ ଶେଷଯାଏଁ ବାର୍ଷିକ ପନ୍ଦର ହଜାର ଟଙ୍କା ଭତ୍ତା ପାନ୍ତି ଏବଂ ତାଙ୍କର ସଚିବାଳୟ ଓ ଅନ୍ୟାନ୍ୟ ପରିଚାଳନା ପାଇଁ ବାର୍ଷିକ ବାର ହଜାର ଟଙ୍କା ପାଇଥାନ୍ତି । ରାଷ୍ଟ୍ରପତିମାନେ ମାତ୍ର ୪/୫ ବର୍ଷ କାଳ ଏହି ପଦାଭିଷିକ୍ତ ହୋଇ ଅବସର ନେବାପରେ ଭତ୍ତା ଓ ତାଙ୍କର ଦପ୍ତର ପାଇଁ ରାଜକୋଷରୁ ଏତେ ଅର୍ଥ ଶ୍ରାଦ୍ଧ ହୋଇଥାଏ । ଭାରତ ଭଳି ଦରିଦ୍ର ଦେଶ ପାଇଁ

ସମ୍ବିଧାନରେ ଏପରି ବିଧାନ ମଧ୍ୟ ଅଛି ହେ !!!

## ଦୀପତଳ ଅନ୍ଧାର

ଉପଯୁକ୍ତ ବିଭବ ବର୍ଣ୍ଣନା ସାଙ୍ଗକୁ ଦିଲ୍ଲୀ ନିକଟସ୍ଥ ପଲ୍ଲୀମାନଙ୍କରେ ଥିବା ବିଦ୍ୟାଳୟ ଓ ହରିଜନ ବସ୍ତି କଥା ମଧ୍ୟ ଟିକିଏ ନ କହିଲେ ଭଲ ହେବନାହିଁ ।

ଦିଲ୍ଲୀ ଓ ମୀରଟ ମଧ୍ୟରେ ଚାନ୍ଦିପୁରଠାରେ ସାମରିକ ବ୍ୟୋମଯାନ ଛାଉଣି । ସେଠାରେ ମୋର କନିଷ୍ଠ ପୁତ୍ର ଚାକିରୀ କରେ । ତା ପାଖରେ କେତେଦିନ ରହିଥିଲି । ସକାଳେ ସନ୍ଧ୍ୟାରେ ବୁଲିଗଲା ବେଳେ ନିକଟସ୍ଥ ହରିଜନ ପଲ୍ଲୀ ଓ ଏକ ଉଚ୍ଚ ଇଂରେଜୀ ବିଦ୍ୟାଳୟ ଦେଖିଥିଲି ।

ହରିଜନ ପଲ୍ଲୀଟିରେ ସର୍ବମୋଟ ୨୦/୨୫ ଟି ଘର । ନିକଟରେ ଥିବା ଇଟା ଭାଟିର ଅନାବଶ୍ୟକ ରଦି ଇଟା ଯାହା ପଡ଼ିଥାଏ, ସେଥିରୁ କିଛି ଗୋଟାଇ ଆଣି ଗୋଟିକ ଉପରେ ଗୋଟିଏ ରଖି ଘରର କାନ୍ଥ କରାଯାଇଥାଏ । କାଦରେ ମଧ୍ୟ ବନ୍ଧା



ପୁରୀରେ ଅବସ୍ଥାନ କାଳରେ ତୃତୀୟ ପୁତ୍ର ପ୍ରଶାନ୍ତ ଚନ୍ଦ୍ରଙ୍କ ସରକାରୀ ବାସଭବନ ସମ୍ମୁଖରେ ବାଞ୍ଛାନିଧି ପଟ୍ଟନାୟକ

ଯାଇନାହିଁ । ଚୂନ ସିମେଣ୍ଟ ତ ଦୂରର କଥା । ଛାତ ଉପରେ ଏକରକମ ଲମ୍ବାଘାସ କିମ୍ବା ଗହମ ନଡ଼ା ଛପର ହୋଇଥାଏ । ଅଣ୍ଟାଯାଏ ନ ନଇଁଲେ ଘର ଭିତରକୁ ଯାଇ ହେବ ନାହିଁ । ଘରେ କବାଟ ଦ୍ୱାର ନଥାଏ । ଅଖା ଖଣ୍ଡିଏ ପର୍ଦ୍ଦା ଭଳି ଲମ୍ବାଇ ଦିଆଯାଇଥାଏ । ଛୋଟିଆ ଛୋଟିଆ ଦଉଡ଼ିଆ ଖଟ ରାତିରେ ଶୋଇବା କାମରେ ଲାଗେ । ଦିନରେ ତାକୁ ପଦାରେ ପକାଇ ତା ଉପରେ ଲୁଗାପଟା ରଖାଯାଏ । ସେମାନେ ସମସ୍ତେ କୁଲି ଓ ଶଗଡ଼ିଆ ଶ୍ରେଣୀର ଲୋକ । ଜମିବାଡ଼ି କିମ୍ବା ଚାଷବାସ କିଛି ନାହିଁ । ସକାଳୁ ସନ୍ଧ୍ୟାଯାଏଁ ମଜୁରି ଖଟି ଯାହା ରୋଜଗାର କରନ୍ତି ସେଥିରେ ଜୀବିକା ନିର୍ବାହ ହୁଏ । ଭୟାନକ ହାଡ଼ଭଙ୍ଗା ଶୀତ ଓ ଝଡ଼ ବର୍ଷାରେ ସେହି ଘରେ ପଶୁମାନେ ଗାତରେ ରହିଲା ପରି ରହନ୍ତି । ମୁଁ ଯିବା ଦେଖି ଗୋଟିଏ ଖଟରୁ ଲୁଗାପଟା ଉଠାଇ ନେଇ ମତେ ବସିବାକୁ ଦେଲେ । ଏତେ ଦୁଃଖ କଷ୍ଟରେ ବଞ୍ଚିଥିଲେ ମଧ୍ୟ ସେ ଗାଁରେ ଦୁଇ ଚାରିଟି ରେଡ଼ିଓ ଥିବାର ଦେଖିବାକୁ ପାଇଲି । ଅବସର ବେଳେ ଦୁଃଖ କଷ୍ଟ ଲାଘବ କରିବା ପାଇଁ ଏତିକି ମାତ୍ର ସାନ୍ତ୍ୱନା ଓ ଚିତ୍ତବିନୋଦନ ।



ପୁରୀ ଅବସ୍ଥାନ ସମୟରେ ଜର୍ମାନ ପରିବ୍ରାଜକ ମାନଙ୍କ ସହିତ ବାଞ୍ଛାନିଧି ପଟ୍ଟନାୟକ ଓ ତାଙ୍କ କନ୍ୟା ମୃଣାଳିନୀ ଓ ପୁତ୍ର ନୀହାରେନ୍ଦୁ

# ଓଡ଼ିଶାକୁ ପ୍ରତ୍ୟାବର୍ତ୍ତନ

ତତ୍‌ପରେ ମୁଁ ପୁତ୍ର କନ୍ୟାମାନଙ୍କ ପାଖରେ ବିଭିନ୍ନ ସ୍ଥାନରେ ରହି କେବଳ ବିଶ୍ରାମ ଜୀବନ ଅତିବାହିତ କରିବାକୁ ଲାଗିଲି । ବଲାଙ୍ଗୀରରେ ଥିଲାବେଳେ ସେଠାରେ କେତେଜଣ ପଣ୍ଡିତଙ୍କ ସହ ସଖ୍ୟତା ସମ୍ପାଦନ କରି ସେମାନଙ୍କ ସହ ସଂସ୍କୃତ ଚର୍ଚ୍ଚା କରିବା ସୁଯୋଗ ପାଇଥିଲି । ପାଟଣାଗଡ଼ ଆର୍ଯ୍ୟ ସମାଜ ବନ୍ଧୁମାନଙ୍କୁ ଦେଖା କରିଥିଲି । ସେଠାର ଆର୍ଯ୍ୟ ସମାଜର ବାର୍ଷିକ ଉତ୍ସବ ସେହି ସମୟରେ ଅନୁଷ୍ଠିତ ହୋଇଥିଲା । ସୁଦୂର କର୍ଣ୍ଣାଟକରୁ ଶ୍ରୀ ରୁଦ୍ରଦେବ ଶାସ୍ତ୍ରୀ (ବଙ୍ଗଲେଶ୍ୱର) ସଭାପତି ଭାବରେ ନିମନ୍ତ୍ରିତ ହୋଇ ଆସିଥିଲେ । ଆମ୍ଭମାନଙ୍କର ସାକ୍ଷାତର ସୁଯୋଗ ମିଳିଥିଲା । ସଭା ପୂର୍ବରୁ ତାଙ୍କ ସହିତ ପ୍ରଥମେ କଟକଠାରେ ମିଳନ ହେଲା । ସେଠାରୁ ବରୀ ପ୍ରଭୃତି ସ୍ଥାନକୁ ତାଙ୍କ ଇଚ୍ଛା ପ୍ରକାରେ ଯିବାକୁ ହେଲା । ଏଥିପୂର୍ବରୁ ସେ ବିବାହ ପରେ କଟକ ଆସି ମୋର



ପୁରୀର ଅବସ୍ଥାନ କାଳରେ ଖବର କାଗଜ ସହିତ ସମୁଦ୍ରକୂଳ ଉଦ୍ୟାନରେ
ବାଞ୍ଛାନିଧି ପଟ୍ଟନାୟକ

ବଡ଼ ଝିଅ ମନ୍ଦାକିନୀ ପାଖରେ ସସ୍ତ୍ରୀକ କେତେକାଳ ରହିଥିଲେ । ତାକୁ ଦେଖିବା ପାଇଁ ସେ ଆଗ୍ରହ ପ୍ରକାଶ କରିଥିଲେ । ବଲାଙ୍ଗୀରରେ ମୋର ୪ର୍ଥ ପୁତ୍ର ଜଳସେଚନ ବିଭାଗର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିଅର ଥିଲା । ସେଠାରେ କେତେଦିନ ରହି ବବଲେଶ୍ୱର ତାଙ୍କ ପ୍ରଦେଶକୁ ଗଲେ । ଲାହୋରରେ ଆର୍ଯ୍ୟ ସମାଜ ପ୍ରଶିକ୍ଷଣ ପାଇବା ବେଳେ ସଂସ୍କୃତରେ ଶାସ୍ତ୍ରୀ ପାସ୍ କରିଥିଲେ । ତତ୍‌ପରେ ଘରୋଇ ଭାବରେ I.A ଓ B.Ed ପାସ୍‌କରି ଗୋଟିଏ ହାଇସ୍କୁଲରେ ଶିକ୍ଷକତା କରୁଥିଲେ । ବର୍ତ୍ତମାନ ଅବସର ଗ୍ରହଣ କରି ଭାରତର କର୍ଣ୍ଣାଟକର ଉଜିରେ ନାମକ ଏକ ସ୍ଥାନରେ ବାସ କରନ୍ତି । ତା'ପରେ ତାଙ୍କ ସହିତ ଆଉ ସାକ୍ଷାତ ହୋଇନାହିଁ । କିନ୍ତୁ ପତ୍ର ଆଦାନ ପ୍ରଦାନ ରହିଥାଏ ।

ମୁଁ ଏହାପରେ ସାନପୁଅ ପ୍ରଭାସ ବାୟୁସେନାରେ ବାରାକପୁରରେ ଥିଲାବେଳେ ସେଠାକୁ ଯାଇଥିଲି । ସେ ସମୟରେ ଦିଲ୍ଲୀରେ ମୋର- ବଡ଼ ନାତି ବିନୟ ପାଖରେ କେତେ ସମୟ ରହିଥିଲି । ସେଠାରୁ ଫେରି ବରୀରେ ବଡ଼ ଝିଅ ଘରେ ବହୁଦିନ ରହିଲି । ସେଠାରେ ଏକ ମହିଳା ସମିତି ଗଠିତ ହେଲା । ସାପ୍ତାହିକ ସମବେତ ପ୍ରାର୍ଥନା ହୁଏ । ସାହିତ୍ୟ ଚର୍ଚ୍ଚା ହୁଏ । ଗୋଟିଏ ହାତଲେଖା ପତ୍ରିକା ପ୍ରକାଶ କରାଗଲା ।

ବରୀରୁ ଫେରି, ନିରାକାରପୁର ଠାରେ ମୋର ମଝିଆ ଝିଅ ମୃଣାଳିନୀ ପାଖରେ ଅନେକ ଦିନ ରହିଲି । ସେଠାରେ ଅନେକ ଛାତ୍ର ଆସି ମୋ ନିକଟରେ ପାଠ ବୁଝନ୍ତି । ପ୍ରାତଃ ସାୟଂ ଭ୍ରମଣ କାଳରେ ମୋ ସହିତ ଯୋଗ ଦିଅନ୍ତି । ବ୍ୟାୟାମ ପ୍ରଭୃତି ଶିକ୍ଷାଲାଭ କରନ୍ତି । ତତ୍‌ପରେ କଟକ, ଢେଙ୍କାନାଳ, ବାଲେଶ୍ୱର, ବୁର୍ଲା ଭୁବନେଶ୍ୱର ପ୍ରଭୃତି ନାନା ସ୍ଥାନରେ ପୁଅମାନଙ୍କ ପାଖରେ କଟାଇଥିଲି ।

ମୁଁ ବର୍ତ୍ତମାନ ୮୭ବର୍ଷରେ ପଦାର୍ପଣ କଲି । ସମଗ୍ର ଜୀବନ କାଳରେ କୌଣସି ପ୍ରକାର ଉତ୍କଟ ରୋଗରେ ପୀଡ଼ିତ ହୋଇ ନଥିଲି । ଯାହା କିଛି ହୁଏ ମୋର ଜାତକ ଫଳାନୁସାରେ ଅତିଶୀଘ୍ର ଅନାୟାସରେ ଉପଶମ ହୋଇ ଯାଇଥାଏ । ଗତ ୧୯୮୬ ଏପ୍ରିଲ ମାସରେ ଅନୁଗୁଳଠାରେ ମୋର ଚତୁର୍ଥ ପୁତ୍ର ପ୍ରସନ୍ନ ଚନ୍ଦ୍ର ପାଖରେ ଥିଲାବେଳେ ଏକ ମାରାତ୍ମକ ରୋଗରେ ପୀଡ଼ିତ ହେଲି । ଶନି ଦଶା ସେତେବେଳକୁ ଶେଷ ହୋଇଥିଲା । ବୁଧ ଦଶା ଆସିଲା । ବୁଧ ଏ କୋଷ୍ଠିରେ ମୀନ ଲଗ୍ନକୁ ମାରକ, ସେ ଆସି ପ୍ରବେଶ ହେବା ମାତ୍ରେ ମୁଁ ରୋଗାକ୍ରାନ୍ତ ହେଲି । ପ୍ରଥମେ ମୋର ନାକରୁ ରକ୍ତସ୍ରାବ ହେଲା । ବହୁତ ରକ୍ତସ୍ରାବ ହେବା ଫଳରେ ମୋତେ ଅନୁଗୁଳ ଡାକ୍ତରଖାନାରେ ଅସ୍ତ୍ରୋପଚାର କରାଗଲା । ତା' ପରଠୁ ମୁଁ ଜ୍ଞାନଶୂନ୍ୟ ହୋଇଗଲି । ଜ୍ଞାନ ଫେରିବା ପରେ ଯାହାସବୁ ଘଟିଲା ସେସବୁ ମୋର ସ୍ମୃତିରେ ନାହିଁ । ମୋର ମଧ୍ୟମା କନ୍ୟା ମୃଣାଳିନୀ (ବାସନ୍ତୀ) ଯିଏ କି ମୋର ପୀଡ଼ିତାବସ୍ଥାରେ ଆରମ୍ଭରୁ ଶେଷଯାଏ ମୋ ପାଖରେ ରହି ସେବା ଶୁଶ୍ରୁଷା କରୁଥିଲା ତା'ଠାରୁ ସମସ୍ତ ବିଷୟ ଶୁଣିବାକୁ ପାଇଲି । ମୋର ସେଇ

ଅବସ୍ଥା ସମ୍ପର୍କରେ ମୋର ସମସ୍ତ ପୁଅ, ଝିଅ ଏବଂ ବନ୍ଧୁ ବାନ୍ଧବମାନଙ୍କୁ ଜଣାଇ ଦିଆଯାଇ ଥିଲା । ସମସ୍ତେ ଉପସ୍ଥିତ ହୋଇ ସେବା ଶୁଶ୍ରୁଷା କରୁଥିଲେ । ମୋର ସମସ୍ତ ପୁତ୍ର, ପୁତ୍ରବଧୂ, କନ୍ୟା ଓ ନାତି ନାତୁଣୀମାନେ ବିଭିନ୍ନ ସେବା କାର୍ଯ୍ୟରେ ତତ୍‌ପର ଥିଲେ । ସେମାନଙ୍କର ସଦିଚ୍ଛା, ସହାନୁଭୂତି, ସେବା ଦ୍ୱାରା ମୁଁ ପୁନର୍ଜୀବନ ପାଇଲି ।

ଯେଉଁଦିନ ମୋର ସମ୍ପୂର୍ଣ୍ଣ ଚେତନା ନଥିଲା ସେଦିନ ମତେ ଏକ ଅପୂର୍ବ ଦୃଶ୍ୟ ଦେଖାଗଲା । ମୁଁ ଏକ ଶବାଧାରରେ ଶୋଇ ଆକାଶର ଅତି ଉଚ୍ଚରେ ମହାତେଜସ୍କର ଜ୍ୟୋତିରେ ବାୟୁମଣ୍ଡଳରେ ଭାସି ଯାଉଛି । ମୁଁ ଏହାକୁ ଏକ ସାଧାରଣ ସ୍ୱପ୍ନ ଜ୍ଞାନକରି ଗୁରୁତ୍ୱ ଦେଇ ନଥିଲି । ମୋର ଶଳାଙ୍କ ପୁଅ ଡାକ୍ତର ଶାରଦା ଚରଣ ଏ ସ୍ୱପ୍ନ କଥା ଶୁଣି କହିଲା ଯେ ଚିକିତ୍ସା ଶାସ୍ତ୍ରରେ ଏପରି ଅବସ୍ଥାରେ ଜୀବ ଅନ୍ୟ ଏକ ସ୍ତରକୁ ଚାଲିଯିବାର ଅନୁଭୂତି ଅନେକ ଲୋକଙ୍କ କ୍ଷେତ୍ରରେ ଘଟିଥିବା ଲେଖାଅଛି । ତା'ଠାରୁ ଏହାଶୁଣି ମୁଁ ଏ ସ୍ୱପ୍ନକୁ ଗୁରୁତ୍ୱ ଦେଲି ।

ମହାଳୟା ଶ୍ରାଦ୍ଧରେ ପିତୃପିତାମହ ମାନଙ୍କୁ ଦୀପ ଦାନ କରି ବିଦାୟ ଦେବା ବେଳେ ନିମ୍ନଲିଖିତ ଶ୍ଳୋକ ବୋଲାଯାଏ ।

''ପିତୃଲୋକଂ ପରିତ୍ୟଜ୍ୟ
ଆଗତା ଯେ ମହାଳୟେ,
ଉଜ୍ଜ୍ୱଳଂ ଜ୍ୟୋତିଷାଂ ମାର୍ଗଂ
ଗଚ୍ଛନ୍ତୁ ତେ ବ୍ରଜନ୍ତୁ ତେ ।

ମୁଁ ଯେଉଁ ଜ୍ୟୋତିଷାଂ ଜ୍ୟୋତିରେକଂ ପଥ ଦେଖିଲି ବୋଧହୁଏ ତାହା ପିତୃଲୋକକୁ ଯିବାପଥ । ସେହି ଆଲୋକ ପଥକୁ ଅନେକ ସମୟରେ ମନେ ପକାଇ ମୁଁ ସମୟେ ସମୟେ ଧ୍ୟାନ କରିଥାଏ ।

ମୋର ଚତୁର୍ଥ ପୁତ୍ରବଧୂ ଶୈଳବାଳା ସେଠାର ଚିକିତ୍ସାଳୟର ଡାକ୍ତର ଥିଲେ । ତାଙ୍କର ସହଯୋଗରେ ସେଠାର ଅନ୍ୟାନ୍ୟ ଡାକ୍ତରମାନେ ସମସ୍ତେ ବରାବର ଆସି ଯତ୍‌ପରୋନାସ୍ତି ଚେଷ୍ଟାକରି ମୋର ଚିକିତ୍ସା କରୁଥିଲେ । ସେଠାର ସମସ୍ତ କର୍ମଚାରୀମାନେ ମଧ୍ୟ ମୋର ସେବା ଅକୁଣ୍ଠିତ ଚିତ୍ତରେ କରୁଥିଲେ ।

ମୋର ପୁତ୍ରବଧୂ ଶୈଳବାଳା ମୋର କି ଭାବରେ ଚିକିତ୍ସା, ସେବା ଓ ଶୁଶ୍ରୁଷା କରୁଥିଲେ ତାହାର ଏକ ବିବରଣୀ ନିମ୍ନରେ ପ୍ରଦାନ କରୁଛି ।

''ଅପରାଧ ସହସ୍ର ପରାବୃତଂ
ନହିମାତା ସମୁପେକ୍ଷତେ ସୁତଂ''

ମୁଁ ପଥ୍ୟ ଗ୍ରହଣ ବେଳେ ନାନାପ୍ରକାର ହଇରାଣ କରେ । ସେ ସମୟରେ ମୋର ପୁତ୍ରବଧୂ ମୋତେ ପ୍ରତିଦିନ ଖୁଆଇବା ଭାର ନେଇଥାନ୍ତି । ମୋର ପିଲାଦିନର ଗୋଟିଏ

କଥା ମନେଅଛି । ପିଲାଦିନେ ମଧ ଖାଇବାରେ ବହୁତ ହଇରାଣ କରେ । ମୋ ବୋଉ ମୋ ବେକ ଚିପିଧରି ମୁଁ ଆଁ କଲେ ପାଟିରେ ଖାଦ୍ୟ ପୁରାଇ ଦିଏ । ଏହା ମାତାର ପୁତ୍ରର ସ୍ୱାସ୍ଥ୍ୟ ପ୍ରତି ନିଷ୍ଠାର ନିଦର୍ଶନ । ପିଲା ଯେତେ ହଇରାଣ କଲେ ମଧ ମା ବିରକ୍ତ ନ ହୋଇ ତାର ସ୍ୱାସ୍ଥ୍ୟର ଉନ୍ନତି ବିଧାନ ସକାଶେ ଯେ କୌଣସି ଉପାୟ ଅବଲମ୍ୱନ କରି ଖୁଆଇଥାଏ । ପିଲାକୁ ରୋଗ ହେଲେ ଏହିପରି ତାଡ଼ନା କରି ଔଷଧ ଖୁଆଇ ଥାଏ ।

ମୋର ବୋହୂ ମହନୀୟା ଶୈଳବାଳା ଏକାଧାରରେ ମାତା ଏବଂ ଚିକିତ୍ସକ ଉଭୟ କାର୍ଯ୍ୟ କରୁଥିଲେ । ମୋର ତ କିଛି ଜ୍ଞାନ ନଥାଏ । ସେତେବେଳେ ମୋର କିଏ କଣ କରେ, ମୁଁ କାହା ସହିତ କ'ଣ କଥା ହୁଏ ସେ ସବୁ ମୋର କିଛି ମନେ ନାହିଁ ।

ଯାହା ଯାହା ଶୁଣିଛି ସେଥିରୁ ବୁଝିପାରିଛି ଶୈଳ ମାନବୀ ନୁହଁନ୍ତି, ସାକ୍ଷାତ୍ ଦେବୀ, ସେ କି କରୁଣାମୟୀ । ମୋର ଜୀବନରକ୍ଷା କରିବାପାଇଁ ତାଙ୍କର ସମସ୍ତ ଜଞ୍ଜାଳ ମଧରେ ସମସ୍ତକାର୍ଯ୍ୟ ତୁଲାଇ ଏକାଗ୍ର ଦୃଷ୍ଟି ରଖିଥିଲେ ମୋ ଉପରେ । ଶୁକଦେବ ଜନକ ରାଜା ଆଦେଶରେ ତୈଳପୂର୍ଣ୍ଣ ପାତ୍ର ହାତରେ ଧରି ସମଗ୍ର ସହର ବୁଲି ସମସ୍ତ ବିଷୟ ଦେଖି ଆସିଲା ପରି ଏବଂ ନଟୀ ମସ୍ତକରେ ଜଳପୂର୍ଣ୍ଣ ଭାଣ୍ଡଧରି ନୃତ୍ୟ କଲାଭଳି ଏହି ଦେବୀ ସରକାରୀ କର୍ତ୍ତବ୍ୟ ତୁଲାଇ ଘରର ସମସ୍ତ କାର୍ଯ୍ୟ ଦେଖି ନିଜର ସ୍ନାନାଦି ପୂଜା ପ୍ରଭୃତି ଯଥା ସମୟରେ ସମାପନ କରି ମୋ ଉପରେ ସବୁବେଳେ ଦୃଷ୍ଟି ସ୍ଥାପନ କରୁଥାନ୍ତି । ମୋର ମଳମୂତ୍ରାଦି ପରିଷ୍କାର କରିବାଠାରୁ ଆରମ୍ଭ କରି ଖୁଆଇ, ପିଆଇ, ଶୁଆଇ ସମସ୍ତ କାର୍ଯ୍ୟ ନିଜେ ଦେଖନ୍ତି ଏବଂ ଘରକୁ ଯୋଉ ସବୁ ବନ୍ଧୁ ମତେ ଦେଖିବାକୁ ଆସନ୍ତି ସେମାନଙ୍କର ପରିଚର୍ଯ୍ୟା କରିବାରେ ହେଳା କରନ୍ତି ନାହିଁ । ମତେ ଖୁଆଇବା ବେଳେ ମୁଁ ତାଙ୍କ ମୁହଁକୁ ମୋ ପାଟିରୁ ଖାଦ୍ୟ ପକାଏ । ଏ ସବୁରେ ସେ ବିଷର୍ଣ୍ଣ ହୁଅନ୍ତି ନାହିଁ । ଥରେ ଥରେ ବିରକ୍ତ ହୋଇ ଚାଲିଯାଆନ୍ତି କିନ୍ତୁ ''ନହିମାତା ସମୁପେକ୍ଷତେ ସୁତଂ'' ବଚନ ଅନୁସାରେ ପୁଣି ସଙ୍ଗେ ସଙ୍ଗେ ଆସି ସେଇ କାର୍ଯ୍ୟରେ ରତ ହୁଅନ୍ତି । ତାଙ୍କର ପୁତ୍ର, କନ୍ୟାମାନେ ମଧ ନିର୍ବିକାର ଚିତ୍ତରେ ମୋର ସେବା କରୁଥାନ୍ତି । ମୋର ପୁତ୍ର ପ୍ରସନ୍ନ ମୋର ସେହି ଅବସ୍ଥାରେ ସବିଶେଷ ଚିନ୍ତିତ ହୋଇ ମୋର ଅବସ୍ଥା ନିରୀକ୍ଷଣ କରୁଥାଏ ଏବଂ ନିର୍ବାକ ଭାବରେ ଆଖି ଛଳ ଛଳ କରି ଦେଖୁଥାଏ । ଉଭୟେ ଦିନର ବିଭିନ୍ନ ସମୟ ପାଳିକରି ମୋ ପାଖରେ ଖଟୁଥାନ୍ତି । ମୋର ଅନ୍ୟ ପୁତ୍ରମାନେ ତାଙ୍କର କାର୍ଯ୍ୟକ୍ଷେତ୍ରରୁ ବାରମ୍ବାର ଆସି ମୋର ସେବାରେ ଲାଗିଥାନ୍ତି ।

ମୋର ପୀଡ଼ିତ ଅବସ୍ଥାରେ ମୁଁ ବାରମ୍ବାର ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ପୁରୀ ଯିବା ପାଇଁ କହୁଥାଏ । ମୋ ସ୍ୱାସ୍ଥ୍ୟର ଉନ୍ନତି ହେବାପରେ ପୁରୀରେ ଆସି ରହିଲି ଓ ଦେବ ଦେବ ଜଗନ୍ନାଥଙ୍କୁ ଦର୍ଶନ କରି ତାଙ୍କ ବାହୁଛାୟା ତଳେ ବିଶ୍ରାମ ଜୀବନ ଯାପନ କରୁଛି ।



॥ ୧୯୪ ॥

# ଆତ୍ମଜୀବନୀ ସମାପ୍ତି କାଳ ପରଠାରୁ
# ୰ ବାଞ୍ଛାନିଧି ପଟ୍ଟନାୟକଙ୍କ ଜୀବନ ବୃତ୍ତାନ୍ତ

ସ୍ୱାଧୀନତା ସଂଗ୍ରାମୀ ୰ ବାଞ୍ଛାନିଧି ପଟ୍ଟନାୟକ ରୋଗ ମୁକ୍ତ ହୋଇ ଅଗଷ୍ଟ ୧୯୮୭ରେ ଅନୁଗୁଳରୁ ପୁରୀ ଆସି ତାଙ୍କ ତୃତୀୟ ପୁତ୍ର ପ୍ରଶାନ୍ତ ଚନ୍ଦ୍ରଙ୍କ ପାଖରେ ବିଶ୍ରାମ ଜୀବନ ଯାପନ କରୁଥିଲେ । ତାଙ୍କର ପୁରୀ ଅବସ୍ଥାନ କାଳରେ ତାଙ୍କ ଆତ୍ମଜୀବନୀ 'ମୋ କଥା' ଓ ସନ୍ଧ୍ୟା ଉପାସନା ସମ୍ପର୍କରେ ଲିଖିତ 'ସନ୍ଧ୍ୟା' ଫେବୃୟାରୀ ୧୯୮୮ରେ ପ୍ରକାଶ ପାଇଥିଲା । ପୁରୀରେ ସେ ପ୍ରାୟ ପ୍ରତିଦିନ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଯାଉଥିଲେ ଏବଂ ଅନେକ ବିଦ୍ୱାନ ଓ ସାଧୁ ସନ୍ଥମାନଙ୍କ ପାଖକୁ ଯାଇ ଆଳାପ ଆଲୋଚନା କରୁଥିଲେ । ବଙ୍ଗଳା ଭାଷାର 'ଆତ୍ମ ରାମାୟଣ' ବହିର ଅନୁବାଦ କରିଥିଲେ ।

୧୯୮୮ ମସିହା ଜୁନ୍ ମାସରେ ସେ ପୁରୀରୁ ଭୁବନେଶ୍ୱର ଆସି ତାଙ୍କ ଦ୍ୱିତୀୟ ପୁତ୍ର ପ୍ରମୋଦ ଚନ୍ଦ୍ର (ତତ୍‌କାଳୀନ ଡୀନ୍, ଇଞ୍ଜିନିୟରିଙ୍ଗ କଲେଜ, କୃଷି ବିଶ୍ୱବିଦ୍ୟାଳୟ)ଙ୍କ ବାସଭବନରେ ବାସ କଲେ । ଭୁବନେଶ୍ୱରକୁ ଆସିଲା ପରେ ସେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ୧୬-୬-୮୮ରେ ସାକ୍ଷାତ କରି ତାଙ୍କୁ ଆତ୍ମଜୀବନୀ 'ମୋ କଥା' ସମର୍ପଣ କରିଥିଲେ । ରଥଯାତ୍ରା ବାସୀଦିନ (ଜୁଲାଇ ୧୯୮୮)ସେ ନିଜ ପ୍ରକୋଷ୍ଠରେ ତାଙ୍କୁ ଦେଖିବାକୁ ଆସିଥିବା ଜଣେ ବନ୍ଧୁଙ୍କୁ ବହିଟିଏ ଦେଖାଇବା ପାଇଁ ନିଜ ଆସନରୁ ଉଠି ବହି ଆଣିବାକୁ ଗଲାବେଳେ ହଠାତ୍ ଗୋଟିଏ ଗୋଡ଼ ମୋଡ଼ି ହୋଇଯାଇ ପଡ଼ିଗଲେ ଏବଂ ତାଦ୍ୱାରା ତାଙ୍କ ବାମ ଗୋଡ଼ ହାଡ଼ ଭାଙ୍ଗି ଯାଇଥିଲା । ଭଙ୍ଗାହାଡ଼ ଯୋଡ଼ିବା ପାଇଁ ଗୋଡ଼କୁ ପ୍ଲାଷ୍ଟର୍ କରାଯିବାରୁ ସେ ଶଯ୍ୟାଶାୟୀ ହୋଇ ରହିଲେ । ପ୍ଲାଷ୍ଟର ଥିବା ଅବସ୍ଥାରେ ତାଙ୍କ ବାମ ଅଙ୍ଗରେ ପକ୍ଷାଘାତର ଲକ୍ଷଣ ଦେଖାଗଲା, ଏବଂ ଅଳ୍ପଦିନ ପଡ଼ିରହିବା ଭିତରେ ୮୭ ବର୍ଷ ବୟସରେ ତା ୧୬-୮-୧୯୮୮ (ଚିତାଲାଗି ଅମାବାସ୍ୟା) ଦିନ ଭୋର ଚାରିଟା ବେଳେ ସେ ଶେଷ ନିଃଶ୍ୱାସ ତ୍ୟାଗ କରି ଇହଲୀଳା ସମ୍ବରଣ କରିଥିଲେ । ଶ୍ରୀକ୍ଷେତ୍ରର ଶ୍ରୀ ଜଗନ୍ନାଥଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଥିବାରୁ ତାଙ୍କୁ ପୁରୀ ନିଆଯାଇ ସ୍ୱର୍ଗଦ୍ୱାର ଠାରେ ତାଙ୍କର ଅନ୍ତିମ ସଂସ୍କାର କରାଯାଇଥିଲା ।

ooo

# ପରିଶିଷ୍ଟ -୧

## ବଂଶଲତା

ମୋର ପିତା ଲକ୍ଷ୍ମୀନାରାୟଣ । ପିତାମହ ବଳରାମ, ପ୍ରପିତାମହ ଚକ୍ରପାଣି । ମୋ ପିତାଙ୍କର ଆଉ ତିନିଭାଇ ଥିଲେ । ବାଲ୍ମିକୀ, ଜଗନ୍ନାଥ ଓ ଦୁର୍ଗାମାଧବ, ମୋ ପିତାମହଙ୍କ ଏକ ପାଳିତ ପୁତ୍ର ଥିଲେ । ତାଙ୍କ ନାମ ଚତୁର୍ଭୁଜ ।

ମୋର ଏକମାତ୍ର ଭଉଣୀ ସତ୍ୟଭାମା । ମୋର ପିତା ଲକ୍ଷ୍ମୀନାରାୟଣ ଏକ ମାତୃହୀନ ସଦ୍ୟଜାତ ବ୍ରାହ୍ମଣ ସନ୍ତାନକୁ ପାଳନ କରିଥିଲେ । ନାମ ଦୟାନିଧି ଶର୍ମା । ଦାଦା ବାଲ୍ମିକୀଙ୍କ ପୁତ୍ର ପୁରୁଷୋତ୍ତମ ଏବଂ କନ୍ୟା ରୁକ୍ମିଣୀ ଓ ରୋହିଣୀ ।

ମୋର ପିତୃବ୍ୟ ଜଗନ୍ନାଥଙ୍କର ଏକମାତ୍ର କନ୍ୟା ସରସ୍ୱତୀ । ତାଙ୍କର ପୁତ୍ର ସନ୍ତାନ ନଥିଲେ । ମୋର ଦ୍ୱିତୀୟ ପୁତ୍ର ପ୍ରମୋଦକୁ ତାଙ୍କୁ ଦତ୍ତପୁତ୍ର ରୂପେ ପ୍ରଦାନ କରାଯାଇଅଛି । କନିଷ୍ଠ ପିତୃବ୍ୟ ଦୁର୍ଗାମାଧବଙ୍କର ଏକମାତ୍ର ପୁତ୍ର ଗୋଦାବରୀ ପ୍ରସାଦ । ଚତୁର୍ଭୁଜଙ୍କର ଏକମାତ୍ର ପୁତ୍ର ବାଙ୍କନିଧି ।

ମୋର ସହଧର୍ମିଣୀଙ୍କ ନାମ କୁନ୍ଦଲତା । ମୋର ଛଅ ପୁତ୍ର ୧-ପ୍ରଫୁଲ୍ଲ ଚନ୍ଦ୍ର, ୨-ପ୍ରମୋଦ ଚନ୍ଦ୍ର ,୩-ପ୍ରଶାନ୍ତ ଚନ୍ଦ୍ର ୪-ପ୍ରସନ୍ନ ଚନ୍ଦ୍ର,୫-ପ୍ରବୋଧ ଚନ୍ଦ୍ର, ୬-ପ୍ରଭାସ ଚନ୍ଦ୍ର ଏବଂ ତିନି କନ୍ୟା ୧-ମନ୍ଦାକିନୀ, ୨-ମୃଣାଳିନୀ, ୩-ମନସ୍ୱିନୀ ।

ବଡ଼ପୁଅ ପ୍ରଫୁଲ୍ଲ ଓ ବୋହୂ ଦେବହୁତିଙ୍କର ପୁତ୍ର ସୌମିତ୍ର ଓ କନ୍ୟା ସସ୍ମିତା । ଦ୍ୱିତୀୟ ପୁତ୍ର ପ୍ରମୋଦ ଓ ବୋହୂ ସୌଦାମିନୀଙ୍କର ପୁତ୍ର ସୁଜାଦ୍, ସୁବ୍ରତ ଓ ଶୁଭେନ୍ଦୁ । ତୃତୀୟ ପୁତ୍ର ପ୍ରଶାନ୍ତ ଅବିବାହିତ । ଚତୁର୍ଥ ପୁତ୍ର ପ୍ରସନ୍ନ ଓ ଶୈଳବାଳାଙ୍କର ପୁତ୍ର ଅନିତେଶ ଓ ଲଗ୍ନଜିତ୍, କନ୍ୟା ଲୀନା ଓ ମୌସୁମୀ । ପଞ୍ଚମ ପୁତ୍ର ପ୍ରବୋଧ ଓ ବୋହୂ ଲକ୍ଷ୍ମୀଙ୍କର ପୁତ୍ର ଅଜିତେଶ ଓ ଅନିମେଷ । ଷଷ୍ଠ ପୁତ୍ର ପ୍ରଭାସ ଓ ବୋହୂ ମୀରାଙ୍କର କନ୍ୟା ମନୀଷା ଓ ଇପ୍‌ସା ।

କନ୍ୟା ମନ୍ଦାକିନୀର ପୁତ୍ର ବିନୟଭାନୁ, ବିଜୟଭାନୁ, ଭାରତ ଭାନୁ ଓ ବିରାଜଭାନୁ, କନ୍ୟା-ମଧୁଛନ୍ଦା, ସୁନନ୍ଦା, ଅଳକନନ୍ଦା, ନିଶିନନ୍ଦା ଓ ଶଶୀନନ୍ଦା । ମୃଣାଳିନୀର ପୁତ୍ର ନୀହାରେନ୍ଦୁ, କନ୍ୟା ସୁନୀତା ଓ ସୁଚରିତା । ମନସ୍ୱିନୀର ପୁତ୍ର ଅଂଶୁମାନ, କନ୍ୟା-ମାମା ଓ ପିଙ୍କି ।

ମୋର ଜାମାତା ୧-ଆଡ୍‌ଭୋକେଟ ଶ୍ରୀ ନବକିଶୋର ଦାସ , ୨-ଅଧ୍ୟାପକ ଶ୍ରୀ ବୀରକିଶୋର ଭୂୟାଁ ମହାପାତ୍ର ,୩-ଇଞ୍ଜିନିୟର ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକ । ମୋର ସମସ୍ତ ପୁତ୍ର କନ୍ୟା ବୋହୂ ଓ ନାତି ନାତୁଣୀମାନେ ଉପଯୁକ୍ତ ଶିକ୍ଷା ଲାଭକରି ନିଜ ନିଜ କର୍ମକ୍ଷେତ୍ରରେ ସୁପ୍ରତିଷ୍ଠ ହୋଇ ସୁସ୍ଥ ଶରୀରରେ ସ୍ୱକର୍ମ ସାଧନାରେ ବ୍ରତୀ ହୋଇଅଛନ୍ତି ।



ବାଞ୍ଛାନିଧି ପଟ୍ଟନାୟକଙ୍କ ପତ୍ନୀ କୁନ୍ଦଲତା ଦେବୀ

ମୋର ସହଧର୍ମିଣୀ ଶ୍ରୀମତୀ କୁନ୍ଦଲତା ସର୍ବଦା ଦେବପୂଜା ଓ ପୁରାଣ ଶାସ୍ତ୍ରାଦି ସ୍ୱାଧ୍ୟାୟନିରତା, ସତୀସ୍ୱାଧ୍ୱୀ ତପକ୍ଲିଷ୍ଟା କ୍ଷୀଣାଙ୍ଗୀ ମିତ ଭାଷିଣୀ ଅମିତ ଲଜ୍ଜାଶୀଳା ଏବଂ ସନ୍ତାନବତ୍ସଳା ଅଟନ୍ତି । ସ୍ୱାଧୀନତା ସଂଗ୍ରାମରେ ମଧ୍ୟ ସେ ଯୋଗଦେଇ ଲବଣ ସତ୍ୟାଗ୍ରହ ବେଳେ ଗଞ୍ଜା ଏବଂ ରମ୍ଭା ଅଞ୍ଚଳରେ ଆମ୍ଭମାନଙ୍କର ଗଞ୍ଜାମର ନେତା ଶ୍ରୀ ନିରଞ୍ଜନ ପଟ୍ଟନାୟକ ଏବଂ ଉତ୍କଳର ନାରୀନେତ୍ରୀ ଶ୍ରୀମତୀ ସରଳା ଦେବୀଙ୍କ ସହ ଗ୍ରାମେ ଗ୍ରାମେ ବୁଲି ସତ୍ୟାଗ୍ରହ ବାର୍ତ୍ତା ପ୍ରଚାର କରିଥିଲେ । ସରଳା ଦେବୀଙ୍କର ପ୍ରଥମ ଗସ୍ତ ବେଳେ ଗୋବରା ସଭାରେ ଅନ୍ୟାନ୍ୟ ଗ୍ରାମବାସୀମାନଙ୍କ ସହ କଂଗ୍ରେସ ପାଣ୍ଠିକୁ ନିଜର ଅଳଙ୍କାରମାନ ଅର୍ପଣ କରିଥିଲେ । ପୁରୀରେ ହୋଇଥିବା କଂଗ୍ରେସ ଅଧିବେଶନ ବେଳେ ମହିଳା ସ୍ୱେଚ୍ଛାସେବକ ବାହିନୀରେ ଯୋଗଦେଇ ସେବାଦଳ ପ୍ରଶିକ୍ଷଣ ଲଭିଥିଲେ । ସେ ବର୍ତ୍ତମାନ ବୃଦ୍ଧାବସ୍ଥାରେ ବିଭିନ୍ନ ପୁତ୍ର କନ୍ୟାମାନଙ୍କ ସହ ଅବସ୍ଥାନ କରୁଛନ୍ତି ।



# ପରିଶିଷ୍ଟ-୨

## ଲେଖକଙ୍କ ଦ୍ୱାରା ଅନୂଦିତ ଶ୍ଳୋକାବଳୀରୁ କିୟଦଂଶ

### ଶ୍ଳୋକ -୧

କ୍ୱଚିଦ୍ ବୀଣା ବାଦ୍ୟଂ
କ୍ୱଚିଦପିଚ ହାହେତି କଳହଂ
କ୍ୱଚିଦ୍ ବିଦ୍ୱଦ୍ ଗୋଷ୍ଠୀ
କ୍ୱଚିଦପି ସୁରା ମତ୍ର କଳହଃ ।
କ୍ୱଚିଦ୍ ରମ୍ୟାରାମା
କ୍ୱଚିଦପି ଜରା ଜର୍ଜ୍ଜରତନୁଃ
ନ ଜାନେ ସଂସାରଃ
କିମମୃତମୟଃ କିଂ ବିଷମୟଃ ॥

### ଅନୁବାଦ

କାହିଁ ବୀଣା ବାଦ୍ୟ
କାହିଁ କରୁଣ କ୍ରନ୍ଦନ
କାହିଁ ଶାସ୍ତ୍ରଚର୍ଚ୍ଚା
କାହିଁ ଅବା ମଦ୍ୟପାନ
କାହିଁ ଲଳନା ଲଳିତ
ତନୁ ଢ଼ଳ ଢ଼ଳ
କାହିଁ ବୃଦ୍ଧର ଶରୀର
ଜରାଜରଜର
ଦେଖି ଏ ବିଷମ କଥା
ହୁଏ ଏ ବିଚାର
ଅମୃତ ନା ବିଷମୟ
ଅଟେ ଏ ସଂସାର ।



## ଶ୍ଳୋକ -୨

ନିକ୍ଷିପ୍ତାଽପି ପରଂ ପଦାହତିଶତୈଃ
ଶଶ୍ୱଦ୍ ବହୁ ପ୍ରାଣିନାଂ
ସନ୍ତପ୍ତାପି କରୈଃ ସହସ୍ରକିରଣୈ-
ରଗ୍ନିଃ ସ୍ଫୁଲିଙ୍ଗୋପମୈଃ
ଛାଗାଦ୍ୟୈଶ୍ଚ ବିଚର୍ବିତୋଽପି ସତତଂ
ମୃଷ୍ଟାପି କୁଦ୍ଦାଳକୈଃ
ଦୂର୍ବା ନ ମ୍ରିୟତେ କୃଶାଽପି ନିତରାଂ
ଧାତୁର୍ଦୟା ଦୁର୍ବଳେ ॥
*(H.H. Wilson)*

## ଅନୁବାଦ

ଶାଶ୍ୱତ କାଳରୁ ନାନା ପ୍ରାଣୀ ନିରନ୍ତରେ
ଦଳି ଚକଟି ଯାଆନ୍ତି ଦୁବର ଉପରେ
ଛେଳି ମେଣ୍ଢା ଗୋରୁ ଗାଈ ଚୋବାଇ ଖାଆନ୍ତି
କୋଡ଼ିରେ ହାଣି କୃଷକେ ଦୂରେ ପିଙ୍ଗି ଥାନ୍ତି
ଅତି କ୍ଷୀଣ ହୋଇ ଦୁବ ତଥାପି ନ ମରେ
ବିଧାତାଙ୍କ ଦୟା ସଦା ଦୁର୍ବଳ ଉପରେ ।



## ଶ୍ଳୋକ-୩

ପ୍ରସଂଗାଦ୍ ଗାତ୍ରସଂସ୍ପର୍ଶାଦ୍
ନିଃଶ୍ୱାସାଦ୍ ସହଭୋଜନାଦ୍
ଏକଶଯ୍ୟାସନାଚ୍ଚୈବ
ବସ୍ତ୍ରମାଲ୍ୟାନୁଲେପନାଦ୍
କୁଷ୍ଠଂ ଚ ଶ୍ଳେଷ୍ମାଚ
ନେତ୍ରେଭ୍ୟଃ ସ୍ୟନ୍ଦ ଏବ ଚ

ଔପସର୍ଗିକି ରୋଗାଂଶ୍ଚ

ସଂକ୍ରାମନ୍ତି ନରାନ୍ ବପୁଃ ।

## ଅନୁବାଦ

ମୁହଁକୁ ମୁହଁ ଲଗାଇ କଥାବାର୍ତ୍ତା ହେଲେ

ଅନ୍ୟର ଦେହକୁ ଦେହ ଲଗାଲଗି ହେଲେ

ଶ୍ୱାସ ଗ୍ରହଣ କରିଲେ ଏକାଠି ଖାଇଲେ

ଅନ୍ୟର ବସନ ବସ୍ତ୍ର ପରିଧାନ କଲେ

କିମ୍ବା ତା ମାଳା ଗ୍ରହଣ ଚନ୍ଦନ ଲେପନ

କଲେ କୁଷ୍ଠ ଶ୍ଳେଷ୍ମା ଚକ୍ଷୁ ଆଦି ବ୍ୟାଧିମାନ

ଜଣଙ୍କ ଠାରୁ ଜଣଙ୍କ ଠାକୁ ସଂକ୍ରମଣ

କରିଥାନ୍ତି ଏଣୁ ହୋଇଥିବ ସାବଧାନ



## ଶ୍ଳୋକ -୪

ଯତ ପାଦତୋୟା ଭବରୋଗବୈଦ୍ୟାଃ

ଯତ୍ ପାଦପାଂଶୁ ବିମଳତ୍ୱସିଦ୍ଧୟେ ॥

ଯନ୍ନାମ କିଲ୍ବିଷ ବିନାଶନାୟ

ତମପ୍ରମେୟଂ ପୁରୁଷଂ ନମାମି ॥

## ଅନୁବାଦ

ଭବରୋଗ ଦୂର କରେ ଯାର ପାଦ ଜଳ

ଯାର ପଦଧୂଳି କରେ ହୃଦୟ ନିର୍ମଳ

ଯାହାର ନାମ କରଇ କଳୁଷ ବିନାଶ

ଭଜେ ମୁଁ ସେ ଅପ୍ରମେୟ ପରମ ପୁରୁଷ ।



## ଶ୍ଲୋକ-୪

କ୍ୱୈତଦ୍ ବକ୍ତ୍ରାରବିନ୍ଦଂ କ୍ୱତଦରମଧୁ
କ୍ୱାୟତାସ୍ତେ କଟାକ୍ଷାଃ
କ୍ୱାଳାପାଃ କୋମଳାସ୍ତେକ୍ୱ ଚ ମଦନଧନୁ
ଭଙ୍ଗୁରୋ ଭ୍ରୂବିଳାସଃ ।
ଇଥଂ ଖଟ୍ୱାଙ୍ଗ କୋଟୌ ପ୍ରକଟିତ ଦଶନୌ
ମଞ୍ଜୁ ଗୁଞ୍ଜଦ୍ ସମୀରଂ
ରାଗାନ୍ଧାନାମିବୋଚ୍ଚୈରୁପହସତି ମହା
ମୋହଜାଲଂ କପାଳମ୍ ॥

(- ବୈଦ୍ୟଭାନୁ ପଣ୍ଡିତସ୍ୟ)

## ଅନୁବାଦ

କାହିଁଗଲା ତୋର ସେ ମୁଖ କମଳ
କାହିଁ ଗଲା ତୋର ସୁଧା ଅଧର
କାହିଁ ଗଲା ତୋର ବାଙ୍କ ଚାହାଣୀ
କାହିଁ ଗଲା ମଧୁ କୋମଳ ବାଣୀ
କାମଧନୁ ନିନ୍ଦିତ ଭ୍ରୁରୁ ଯୁଗଳ
ଭଙ୍ଗୁର ବିଳାସ କାହିଁ ଗଲା ସକଳ
ଖପୁରି ମଧ୍ୟରେ ପ୍ରକଟିତ ଦଶନ
ସନ୍ଧିରେ ପବନ କରି ମଧୁର ସ୍ୱନ
ସତେକି କରେ ମୋହ ଗ୍ରସ୍ତ ଲୋକଙ୍କୁ
ମୋହ ଜାଲ କପାଳ ଉପହାସକୁ

❐

## ଶ୍ଳୋକ-୬

ଖଲ୍ବାଟୋ ଦିବସେଶ୍ୱରସ୍ୟ କିରଣୈଃ
ସନ୍ତାପିତୋ ମସ୍ତକେ
ବାଞ୍ଛନ୍ ଦେଶମନାତପଂ ବିଧିବଶାତ୍
ବିଲ୍ୱସ୍ୟ ମୂଳଂ ଗତଃ
ତତ୍ରାପ୍ୟସ୍ୟ ମହାଫଳେନ ପତତା
ଭଗ୍ନଂ ସଶବ୍ଦଂ ଶିରଃ
ପ୍ରାୟୋ ଗଚ୍ଛତି ଯତ୍ର ଭାଗ୍ୟ ରହିତଃ
ତତ୍ରାପି ଯାନ୍ତ୍ୟାପଦଂ ।

## ଅନୁବାଦ

ଟାଙ୍ଗରା ମୁଣ୍ଡାକୁ ବାଟିଲା ଖରା
ଛାଇ ଖୋଜି ଖୋଜି ହେଲା ଘାବରା
ବେଲ ଗଛ ମୂଳେ ଦରବ ଯୋଗେ
ଛାଇ ଦେଖି ଯାଇ ମିଳିଲା ବେଗେ
ଏଡ଼ିକି ବେଲ ତା' ମୁଣ୍ଡରେ ପଡ଼ି
ଠୋ କିନି ମୁଣ୍ଡ ହେଲା ଦି'ଗଡ଼ି
ଭାଗ୍ୟ ହୀନଜନ ଧାଏଁ ଯହିଁକି
ବିପତ୍ତି ଗୋଡ଼ାଇଥାଏ ତହିଁକି ।

❒

# ପରିଶିଷ୍ଟ -୩
## (କବିତା)

### ନିବେଦନ

ଦେଖୁଛ ଜାଣୁଛ ପ୍ରଭୁ ମୋର ଭଲମନ୍ଦ
ତିଳେ ହେଲେ ଅନୁଭବ ନ କରେ ମୁଁ ମନ୍ଦ
ଅନ୍ତରେ ବାହାରେ ତମେ ଅଛ ବୋଲି ପୁରି
ଜାଣିଶୁଣି ଯା' ପାରୁ ତା ଯାଉଅଛି କରି ।



### ପ୍ରାର୍ଥନା

ବାହିଁକି ଆଣିଛ ଏଥି କିଛି ଜାଣୁ ନାହିଁ
କି କରିବି କହ ଏଥି ହେ ଜୀବନ ସାଇଁ ।
ଦିଅ ମତେ ବଳ ବୁଦ୍ଧି ଦିଅ ଦିବ୍ୟ ଜ୍ଞାନ
ତମରି ଚରଣ ତଳେ ରହୁ ସଦା ମନ ।
ସହଜେ ବାର୍ଦ୍ଧକ୍ୟ ଦେହ ଜୀର୍ଣ୍ଣଶୀର୍ଣ୍ଣ ଅତି
ରୋଗ ଆକ୍ରମଣେ ହତଜ୍ଞାନ ହୁଏ ମତି ।
କର ନିରାମୟ ପ୍ରଭୁ ମନ ହେଉ ସ୍ଥିର
ତବ ପାଦପଦ୍ମେ ମନ ରହୁ ନିରନ୍ତର ।



# ପ୍ରକୃତିରୁ ଭକ୍ତି ଶିକ୍ଷା

କି ଶୁଭ ଅନୁକୂଳରେ ଆଜି ପ୍ରଭାତରେ
ଦେଖିଲି ଅନତି ଦୂରେ ନିର୍ଜନ ପ୍ରାନ୍ତରେ ॥

ଉଭା ଏକ ତରୁବର ଘନ ପଲ୍ଲବିତ
ଶାଖାଦ୍ୱୟ ଚଉଦିଗେ କରି ବିସ୍ତାରିତ ॥

ପୁଷ୍ପ ଫଳଭାରେ ସଦା ହୋଇ ଅବନତ
ଜ୍ଞାନୀ ଜନେ ଯଥା ଜ୍ଞାନେ ବିନମ୍ର ଆନତ ॥

ଭାବଗ୍ରାହୀ ଯୋଗୀସମ ଦୃଢ଼ ପଦ୍ମାସନେ
ଏକାଗ୍ର ଚିତ୍ତରେ ଧ୍ୟାନେ ରତ ମନେ ମନେ ॥

ରୁଚିର ପ୍ରଭାତ କାଳ, ଶୀତଳ ସମୀର
ବହେ ଧୀରେ, ଗଗନରୁ ଛିଡ଼ଇ ଶିଶିର ॥

ପ୍ରଭାତ ଶୀକରସ୍ନାତା ଅରୁଣ ରଞ୍ଜିତା
ନାନା ବର୍ଣ୍ଣ କୁସୁମରେ ହୋଇ ପୁଲକିତା ॥

ନିରୁପମା, ଅନୁପମା ଅତି ମନୋରମା
ସୁବାସିତ ଶୁଭ୍ରବର୍ଣ୍ଣେ ସସ୍ମିତା ସୁମନା ॥

ଅଳଂକାର ମାନଙ୍କରେ ହୋଇ ବିମଣ୍ଡିତା
ଶ୍ୟାମଳପଲ୍ଲବ ବାସ ହୋଇ ପରିହିତା ॥

ଲତାଦେବୀ, ଅତିଶୟ ହୋଇ ହରଷିତା
ଆପାଦ ମସ୍ତକ ତରୁବରେ ଆଲିଂଗିତା ॥

ନୃତ୍ୟରତା ଲଳନାର ଝରେ ସ୍ୱେଦବାରି
ତାରୁଣ୍ୟ ସୁଷମା ସେକି ଯାଉଅଛି ଝରି ॥

ଶିଶିର ସ୍ନାତା ସୁମନା ଅଙ୍ଗରୁ ଶିଶିର-
ବିନ୍ଦୁ ବିନ୍ଦୁ ହୋଇ ବହେ ଦିଶେ କି ସୁନ୍ଦର ॥

ମୁକ୍ତା ସମାନ ଶିଶିର ବିନ୍ଦୁ ଧରି କରେ
ଦାରୁବ୍ରହ୍ମ ପଦେ ଢ଼ାଳି ପୂଜେ ହରଷରେ ॥

ଦେଖି ଏ ଅପୂର୍ବ ଦୃଶ୍ୟ ମୋର ହୃଦୟରେ
ଅପୂର୍ବ ଭକତି ରସ ଖେଳିଲା ସତ୍ୱରେ ॥

◻◻

# ଆତ୍ମାନୁଭୂତି

## (ପରିବାରର ସମସ୍ତଙ୍କ ନାମକୁ ନେଇ ରଚିତ କବିତା)

ବିଭୂପଦ ସ୍ମରି ସ୍ମରି ତେଜିଲି ଶୟନ
**ପ୍ରଫୁଲ୍ଲ** ହୋଇ ଶ୍ରୀପଦ କରିଲି ବନ୍ଦନ ।
**ପ୍ରମୋଦ** ହେଲା ମାନସ ହୃଦୟ **ପ୍ରଶାନ୍ତ**
**ପ୍ରସନ୍ନ** ମାନସେ ଧ୍ୟାନ କରିଲି ଏକାନ୍ତ ।

**ପ୍ରବୋଧ** ପୁଲକ ଜାତ ଅପୂର୍ବ ହରଷ
ଦିବ୍ୟଜ୍ୟୋତି ସମ୍ମୁଖରେ ହୋଇଲା **ପ୍ରଭାସ** ।

ମହାନନ୍ଦ **ମନ୍ଦାକିନୀ** ବହିଲା ପ୍ରଖରେ
ଜ୍ଞାନ **ମୃଣାଳିନୀ** ତହିଁ ଖେଳିଲା କଲ୍ଲୋଳେ ।

ମତି **ମନସ୍ୱିନୀ** ମହାମୁଦେ କଲା କେଳି
ଦିବ୍ୟ ମହୋତ୍ସବ ତହିଁ ନ ହୁଅଇ ବଳି ।

**ମନ୍ଦାକିନୀ** ତୀରେ ଅନୁଷ୍ଠିତ **ଦେବହୂତି**
**ସୌଦାମିନୀ** କାନ୍ତିମତି **ଶୈଳବାଳା** ସତୀ ।
**ମହାଲକ୍ଷ୍ମୀ** ଆଦି **ମୀରା** ଭଜନେ ପ୍ରସନ୍ନା
ଉପଗତ ହେଲେ ସର୍ବେ ଯଜ୍ଞଭୂମି ଧନ୍ୟା ।

**କୁନ୍ଦେନ୍ଦୁ ନିହାର** ହାର ଅମଳ ଧବଳ
ଶୁଭଜ୍ଞାନ ପ୍ରକାଶିତ ହେଲା ହୃଦସ୍ଥଳ ।
**ପୁରୁଷୋତ୍ତମ** ଦର୍ଶନ **ଗୋଦାବରୀ** ସ୍ନାନ
କରିଲେ ଯେସନେ ଜନ ହୁଏ ପୂର୍ଣ୍ଣକାମ ।
ବାଞ୍ଛା କଳ୍ପବଟ ମୂଳେ କରିଲେ ଧିଆନ
**ଦୟାନିଧି ବାଞ୍ଛାନିଧି** ହୁଅନ୍ତି ପ୍ରସନ୍ନ ।

□□

# ପରିଶିଷ୍ଟ-୪

## ବାଞ୍ଛାନିଧି ପଟ୍ଟନାୟକଙ୍କ ଜୀବନର ମୁଖ୍ୟ ଘଟଣାବଳୀ

(ବାଞ୍ଛାନିଧି ପଟ୍ଟନାୟକ ତାଙ୍କ ଜୀବଦ୍ଦଶାରେ ତାଙ୍କ ଜୀବନର ମୁଖ୍ୟ ଘଟଣାବଳିର ଏକ ତାଲିକା ଡାଏରୀରେ ଲେଖି ଯାଇଥିଲେ)

**୧୯.୧୦.୧୯୦୧ – ଜନ୍ମ, ଗ୍ରାମ ଗୋବରା (ଗଞ୍ଜାମ)**

୧୯୧୫ ପର୍ଯ୍ୟନ୍ତ – ଗ୍ରାମର ଉ:ପ୍ରା ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା ।

୭.୭.୧୯୧୫ – ରସଲକୋଣ୍ଡା ହାଇସ୍କୁଲରେ ଫାଷ୍ଟ ଫାରମ୍‌ରେ ନାମ ଲେଖା ।

୨୯.୩.୧୯୨୧ – ମାଟ୍ରିକ୍ୟୁଲେସନ ପରୀକ୍ଷା ପୂର୍ବରୁ ବ୍ରହ୍ମପୁର ଯାଇ ମହାତ୍ମାଗାନ୍ଧୀଙ୍କୁ ଦର୍ଶନ ।

୩୦.୩.୧୯୨୧ – ଏସ୍.ଏସ୍. ଏଲ୍. ସି, ପରୀକ୍ଷା ଆରମ୍ଭ ।

୪.୭.୧୯୨୧ – ମାଟ୍ରିକ୍ୟୁଲେସନ୍‌ରେ ଉତ୍ତୀର୍ଣ୍ଣ ହୋଇ ପାରଳାଖେମୁଣ୍ଡି କଲେଜରେ ଯୋଗଦେବାର ସାତଦିନ ପରେ କଲେଜ ପଢ଼ା ବର୍ଜନ ।

୧୩.୪.୧୯୨୨ – ସତ୍ୟାଗ୍ରହୀ ଭାବରେ ଭଞ୍ଜନଗରରେ ମଦଦୋକାନରେ ପିକେଟିଙ୍ଗ୍ କରି ଏକ ବର୍ଷ ପାଇଁ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ।

୩.୬.୧୯୨୨ – ରସଲକୋଣ୍ଡା ସବ୍‌ଜେଲ୍‌ରୁ ମାନ୍ଦ୍ରାଜର ବାଲାଲୋର ଜେଲକୁ ସ୍ଥାନାନ୍ତରିତ ।

୧୨.୩.୧୯୨୩ – ବାଲାଲୋର ଜେଲରୁ ମୁକ୍ତ ।

୧୯୨୩ରୁ ୧୯୨୫ – ବେଲଗୁଣ୍ଠାରେ ଜାତୀୟ ବିଦ୍ୟାଳୟ ସ୍ଥାପନ ଓ ପରିଚାଳନା ।

୨୭.୮.୧୯୨୫ – କାକୀନାଡା କଂଗ୍ରେସ ଅଧିବେଶନରେ ଯୋଗଦାନ ।

୪.୧୨.୧୯୨୫ – ବେଲଗୁଣ୍ଠା ଜାତୀୟ ବିଦ୍ୟାଳୟରୁ ବିଦାୟ ନେଇ ପିତାଙ୍କ ଇଚ୍ଛାରେ କରଣ କାମ ଗ୍ରହଣ ।

| | |
|---|---|
| ୧୦.୪.୧୯୨୬ | – ଶ୍ରୀମତୀ କୁନ୍ଦଲତାଙ୍କ ସହିତ ବିବାହ । |
| ୧୯୨୬ | – (ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ) ପିତା ଲକ୍ଷ୍ମୀ ନାରାୟଣ ପଟ୍ଟନାୟକଙ୍କ ପ୍ରୟାଣ । |
| ୬.୧୨.୨୭ | – ମହାତ୍ମା ଗାନ୍ଧୀଙ୍କ ଗୋବରାରେ ପଦାର୍ପଣ । |
| ୧.୪.୨୮ | – ମନ୍ଦାକିନୀର ଜନ୍ମ । |
| ୧୯୨୮ | – କଲିକତା ଜାତୀୟ କଂଗ୍ରେସରେ ଯୋଗଦାନ । |
| ୧୯୩୦ | – କରଣ କାମରୁ ଇସ୍ତଫା ଦେଇ ଲବଣ ସତ୍ୟାଗ୍ରହରେ ଯୋଗଦାନ । |
| ୧୩.୪.୩୦ | – ଲବଣ ସତ୍ୟାଗ୍ରହରେ ବ୍ରହ୍ମପୁରରେ କାରାବରଣ କରି ଏକବର୍ଷ ପାଇଁ ସଶ୍ରମ କାରାଦଣ୍ଡରେ ଦଣ୍ଡିତ । |
| ୨୬.୪.୩୦ | – କରଣ କାମରୁ ବରଖାସ୍ତ । |
| ୯.୭.୩୦ | – ବ୍ରହ୍ମପୁରରୁ ତିରୁଚିରାପଲ୍ଲୀ ଓ ସେଠାରୁ ବେଲାରୀ ଜେଲକୁ ସ୍ଥାନାନ୍ତରିତ । |
| ନଭେମ୍ବର ୧୯୩୦ | – ବେଲାରୀ ଜେଲରୁ ମୁକ୍ତ । |
| ୨୯.୧୨.୩୧ | – କରଣ କାମରେ ପୁନର୍ନିଯୁକ୍ତ । |
| ୭.୧.୩୨ | – ପୁରୀ ସେବାଦଳ ତାଲିମ୍ କେନ୍ଦ୍ରକୁ ସ୍ତ୍ରୀ କୁନ୍ଦଲତାଙ୍କୁ ଆଣିବା ପାଇଁ ପୋଲିସ୍ ପକ୍ଷରୁ ବାରଣ । |
| ୮.୧.୩୨ | – ଇଚ୍ଛାପୁରକୁ ସାଇକେଲ ଯାତ୍ରା । ଜଣେ ସ୍ୱେଚ୍ଛାସେବକଙ୍କ ସାହାଯ୍ୟରେ ପୁରୀରୁ କୁନ୍ଦଲତାଙ୍କ ପ୍ରତ୍ୟାବର୍ତ୍ତନ । |
| ୯.୧.୩୨ରୁ ୩୦.୧.୩୨ | – ବାଲିପଦରରେ ସତ୍ୟାଗ୍ରହ ଓ ସେବାଦଳ ଶିବିର । |
| ୨୦.୧.୩୨ | – କରଣ କାମରେ ପୁନର୍ନିଯୁକ୍ତି ପ୍ରତ୍ୟାଖ୍ୟାନ । |
| ୨.୮.୩୨ | – କରଣ କାମରୁ ବରଖାସ୍ତ । |
| ୧୬.୧.୩୨ରୁ ୨୪.୧.୩୨ | – ନାଳିସିଙ୍ଗଠାରେ ଜଙ୍ଗଲ ଆଇନ ଅମାନ୍ୟ । |

| | | |
|---|---|---|
| ୨୬.୧.୩୨ | – | କଟକ ଗମନ । |
| ୧୩.୩. ୩୨ | – | ପ୍ରଫୁଲ୍ଲର ଜନ୍ମ (ଗୋବରା) । |
| ୨.୪.୩୨ | – | ଇଚ୍ଛାପୁରରେ ଏକମାସ ରହଣି । ବ୍ରହ୍ମପୁରରେ ହରିଜନ ସେବକ ଓ ପରେ ଜିଲ୍ଲା ହରିଜନ ସେବକ ସଂଘର ସମ୍ପାଦକ । ହଳଦିପଦରରେ ସପରିବାର ଅବସ୍ଥାନ । |
| ୨୬.୪.୩୪ | – | ଗୋବରାରେ ଗ୍ରାମ ସଙ୍ଗଠନ କାର୍ଯ୍ୟ । |
| ୧୪.୮.୩୫ | – | ପ୍ରମୋଦର ଜନ୍ମ (ଇଚ୍ଛାପୁର) । |
| ୧୯୩୬ ରୁ ୧୯୩୯ | – | ଜିଲ୍ଲାବୋର୍ଡ଼ ସଭ୍ୟ । |
| ୪.୧୦.୧୯୩୭ | – | ପ୍ରଶାନ୍ତର ଜନ୍ମ (ଗୋବରା) । |
| ୧୨.୧.୧୯୩୮ | – | କଟକରେ କୈବଲ୍ୟ କୁଟୀରର ପରିଚାଳକ ଭାବରେ ଯୋଗଦାନ । |
| ୪.୯.୩୯ | – | ବିଶ୍ୱନାଥ ଦାଶଙ୍କ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ପରେ କରଣ କାମରେ ପୁନର୍ନିଯୁକ୍ତ । |
| ୩୦.୩.୪୦ | – | ପଞ୍ଚମ ସନ୍ତାନ ପ୍ରସନ୍ନର ଜନ୍ମ (ଗୋବରା) । |
| ୨୫.୨.୪୧ | – | କୈବଲ୍ୟ କୁଟୀର (କଟକ) କାର୍ଯ୍ୟରୁ ଅବ୍ୟାହତି, ପର୍ଶୁରାମ ମହାନ୍ତିଙ୍କ ଯୋଗଦାନ । |
| ୨୦.୬.୪୧ | – | କରଣ ପଦବୀରୁ ଇସ୍ତଫା । ଦଦାପୁଅ ଭାଇ ପୁରୁଷୋତ୍ତମଙ୍କ ନାମରେ ସୁପାରିଶ । |
| ୧୨.୭.୪୨ | – | ଷଷ୍ଠ ସନ୍ତାନ ମୃଣାଳୀନିର ଜନ୍ମ । |
| ୧୯୪୪ | – | କ୍ଷତ୍ରିୟବରପୁର ହାଇସ୍କୁଲ ପ୍ରତିଷ୍ଠା । ଗୋଶାଳାରେ ମନ୍ଦାକିନୀର ବିବାହ । |
| ୨୪.୧୨.୪୪ | – | ସପ୍ତମ ସନ୍ତାନ ପ୍ରବୋଧର ଜନ୍ମ । |
| ୧୯୪୪ ରୁ ୧୯୪୮ | – | କ୍ଷତ୍ରିୟ ବରପୁର ହାଇସ୍କୁଲ ପରିଚାଳନା । |
| ୧.୪.୪୮ | – | ଅଷ୍ଟମ ସନ୍ତାନ ପ୍ରଭାସର ଜନ୍ମ । |
| ୧୯୫୦ | – | ଗୋବରାରୁ ସପରିବାର ଗୋଶାଳାକୁ ସ୍ଥାନାନ୍ତରିତ । |

| | | |
|---|---|---|
| ୨୫.୩.୫୦ | – | କୃଷି ସମିତି ପରିଚାଳକ ଭାବେ ନିଯୁକ୍ତି ଓ ସପରିବାର ରସଲକୋଣ୍ଡାକୁ ସ୍ଥାନାନ୍ତର । |
| ୨୫.୧.୫୧ | – | ନବମ ସନ୍ତାନ ମନସ୍ୱିନୀର ଜନ୍ମ । |
| ଜୁନ୍ ୫୧ରୁ ଜୁନ୍ ୫୪ | – | ଭଞ୍ଜନଗରରେ ଘର ନିର୍ମାଣ ଏବଂ ଘୋର ଆର୍ଥିକ ଦୁର୍ଗତି ଭିତରେ ପରିବାର ଭରଣପୋଷଣ । |
| ଏପ୍ରିଲ୍, ୧୯୫୪ | – | Sales Organiser ଭାବରେ ନିଯୁକ୍ତି । (କମ୍ୟୁନିଟୀ ପ୍ରୋଜେକ୍ଟ) । |
| ୧୯୫୬ ଓ ପରେ | – | Sales Organiser ଚାକିରି ସମାପନ ଓ ସପରିବାର କଟକକୁ ସ୍ଥାନାନ୍ତର । |
| ୨୨.୯.୫୯ | – | ଜବଲପୁରରେ ପଞ୍ଚାୟତ ତାଲିମ୍ କେନ୍ଦ୍ରରେ ଯୋଗଦାନ । |
| ୨୮.୨.୬୦ | – | ପ୍ରଫୁଲ୍ଲ ଓ ପ୍ରମୋଦର ବିବାହ । (କଟକ) |
| ୧୯୫୩ ରୁ ୧୯୬୦ | – | ସମ୍ବଲପୁରରେ ପଞ୍ଚାୟତ ତାଲିମ କେନ୍ଦ୍ରରେ ନିଯୁକ୍ତି । |
| ୧୯୬୦ରୁ ୧୯୬୪ | – | ପଞ୍ଚାୟତ ତାଲିମ କେନ୍ଦ୍ର ପରିଚାଳନା (ଢେଙ୍କାନାଳ, ସମ୍ବଲପୁର ଓ ସୁନ୍ଦରଗଡ) |
| ୧୩.୫.୧୯୬୩ | – | ମୃଣାଳିନୀର ବିବାହ (କଟକ) |
| ୧୩.୩.୬୫ | – | ପୁରୀ ଯୋଗଦାଶ୍ରମ ଦର୍ଶନ । |
| ୨୮.୩.୬୫ | – | ଭୁବନେଶ୍ୱର । |
| ୧୭.୪.୬୫ | – | କେନ୍ଦ୍ରାପଡ଼ା । |
| ୨୭.୫.୬୫ | – | କଟକ । |
| ୧.୬.୬୫ | – | ଶ୍ରୀରାମଚନ୍ଦ୍ର ଭବନରେ ଶ୍ରୀବସ ଶ୍ରାଦ୍ଧ ଦିବସ ପାଳନ |
| ୧୩.୭.୬୫ | – | ପୁରୀ ଯୋଗଦାଶ୍ରମରେ ସ୍ୱାମୀ ହରିହରାନନ୍ଦ ଗିରିଙ୍କଠାରୁ ଦୀକ୍ଷା ଗ୍ରହଣ । |
| ୧୯୬୬-୧୯୭୦ | – | ଗୋଶାଳାରେ ଅବସ୍ଥାନ । |
| ୨.୩.୧୯୬୭ | - | କେନ୍ଦ୍ରାପଡ଼ାରେ ପ୍ରସନ୍ନର ବିବାହ । |

